# ଉତ୍କଳ ପ୍ରସଙ୍ଗ

**The Utkal Prasanga**
**January 2012**

୬୮ ଭାଗ | ୬ଷ୍ଠ ସଂଖ୍ୟା | ପୌଷ–ମାଘ | ଜାନୁଆରୀ – ୨୦୧୨

**ନିକୁଞ୍ଜ କିଶୋର ସୁନ୍ଦରାୟ**
କମିଶନର ତଥା ଶାସନ ସଚିବ

**ଡକ୍ଟର ହୁସେନ ରବିଗାନ୍ଧୀ**
ସମ୍ପାଦକ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

ସମ୍ପାଦନା ସହଯୋଗୀ
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**
**ସଚିଦାନନ୍ଦ ବାରିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ :
**ରାଜୁ ସିଂ ଓ ମନୋରଂଜନ ମହାନ୍ତି**

**ପ୍ରତିଖଣ୍ଡ : ଟ.୫.୦୦**





ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ – ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର – ୭୫୧୦୦୧

ଇ–ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in
ଫୋନ : ୦୬୭୪–୨୫୩୦୨୧୧

# ସୂଚୀ





# ଜାତୀୟ ସଙ୍ଗୀତ



ଜନ–ଗଣ–ମନ–ଅଧିନାୟକ ଜୟ ହେ
ଭାରତ–ଭାଗ୍ୟ–ବିଧାତା
ପଞ୍ଜାବ–ସିନ୍ଧୁ–ଗୁଜରାଟ–ମରାଠା
ଦ୍ରାବିଡ଼–ଉତ୍କଳ–ବଙ୍ଗ
ବିନ୍ଧ୍ୟ–ହିମାଚଳ–ଯମୁନା–ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ–ମଙ୍ଗଳଦାୟକ ଜୟ ହେ,
ଭାରତ–ଭାଗ୍ୟ–ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

– ରବୀନ୍ଦ୍ରନାଥ ଠାକୁର

# ବନ୍ଦେ ମାତରମ୍

ସୁଜଳାମ୍, ସୁଫଳାମ୍, ମଳୟଜ ଶୀତଳାମ୍
ଶସ୍ୟ ଶ୍ୟାମଳାମ୍ ମାତରମ୍ ।
ଶୁଭ୍ରଜ୍ୟୋତ୍ସ୍ନାଂ ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ।।
ବନ୍ଦେ ମାତରମ୍ ।।।

x x x x

– ବଙ୍କିମଚନ୍ଦ୍ର ଚାଟାର୍ଜୀ

# ସାଧାରଣତନ୍ତ୍ର ଦିବସ -୨୦୧୨ ଅବସରରେ

# HÝÉæÀÿ þÜÿæþæœÿ¿ Àÿæf¿¨¨æÁÿ

# ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ

# ବାର୍ତ୍ତା

ପ୍ରିୟ ଭଉଣୀ ଓ ଭାଇମାନେ,

ସାଧାରଣତନ୍ତ୍ର ଦିବସ–୨୦୧୨ ପାଳନର ଶୁଭ ଅବସରରେ ମୁଁ ଓଡ଼ିଶାର ଜନସାଧାରଣଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

୧୯୫୦ ମସିହାର ଏହି ଐତିହାସିକ ଦିନରେ ଭାରତବର୍ଷ ଏକ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ରରେ ପରିଗଣିତ ହେଲା । ଏହା ପ୍ରତ୍ୟେକ ଭାରତୀୟଙ୍କ ପାଇଁ ଗର୍ବ ଏବଂ ଆନନ୍ଦର ଦିବସ ଅଟେ । ସ୍ୱାଧୀନତା ଆନ୍ଦୋଳନକାଳରେ ପ୍ରାଣ ଉତ୍ସର୍ଗ କରିଥିବା ଶହୀଦମାନଙ୍କ ଆତ୍ମ ବଳିଦାନ ଗାଥାର ପବିତ୍ର ସ୍ମରଣ ନିମନ୍ତେ ଆମ ନିକଟରେ ଏହା ଏକ ଅବସର । ଯେଉଁମାନଙ୍କର ତ୍ୟାଗ ଯୋଗୁଁ ଆମେ ସ୍ୱାଧୀନତାର ଲକ୍ଷ୍ୟ ହାସଲ କରିପାରିଲେ, ସେହି ଅମର ଆତ୍ମା, ସ୍ୱାଧୀନତା ସଂଗ୍ରାମୀ ଏବଂ ଶହୀଦମାନଙ୍କୁ ଆମେ ଶ୍ରଦ୍ଧାର ସହ ଏହି ପବିତ୍ର ଦିବସରେ ମନେ ପକାଉଛୁ ।

ଏହି ପବିତ୍ର ଅବସରରେ ବିଶ୍ୱର ବୃହତ୍ତମ ଗଣତନ୍ତ୍ରର ଗଣତାନ୍ତ୍ରିକ ଶାସନ ରୀତିର ଢାଞ୍ଚା ଆମ ପାଇଁ ବ୍ୟବସ୍ଥା କରି ବ୍ୟବସ୍ଥାର ମୂଳଦୁଆ ଯୋଗାଇ ପାରିଥିବା ଆମର ସମ୍ବିଧାନର ପ୍ରଣେତାଙ୍କ ମହାନ ଅବଦାନକୁ ଆମେ ମଧ୍ୟ କୃତଜ୍ଞତାର ସହ ସ୍ମରଣ କରୁଛୁ ।

ଆମ ସମ୍ବିଧାନ କେବଳ ଆମଦେଶର ଶାସନପଦ୍ଧତି ପ୍ରସ୍ତୁତ କରୁଥିବା ମୌଳିକ ନିୟମାବଳୀର ଏକ ଦସ୍ତାବିଜ ନୁହେଁ, ଅଧିକନ୍ତୁ ଏହା ବଳିଷ୍ଠ ଗଣତାନ୍ତ୍ରିକ ମୂଲ୍ୟବୋଧ, ଦର୍ଶନ ଏବଂ ଲକ୍ଷ୍ୟଗୁଡ଼ିକୁ ସନ୍ନିବିଷ୍ଟିତ ଓ ପ୍ରତିବିମ୍ବିତ କରିଅଛି। ସମ୍ବିଧାନର ପ୍ରଣେତାମାନେ ଦେଶର ପ୍ରତ୍ୟେକ ଜାତି, ବର୍ଗ ଓ ଗୋଷ୍ଠୀର ଆଶା, ଅଭିଳାଷ ଓ ସ୍ୱପ୍ନକୁ ଭାରତୀୟ ସମ୍ବିଧାନରେ ପ୍ରତିଫଳିତ କରିଛନ୍ତି ।

ଏଠାରେ ସମ୍ବିଧାନ ସଭାରେ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଦେଇଥିବା ଏକ ବକ୍ତବ୍ୟ ଉଲ୍ଲେଖ କରିବା ପ୍ରାସଙ୍ଗିକ ହେବ ଯେ ‘‘ଯଦି ଏକ ସମ୍ବିଧାନ ଲୋକଙ୍କର ଜୀବନଶୈଳୀ, ଲକ୍ଷ୍ୟ ଏବଂ ମନୋଭାବ ସହ ଜଡ଼ିତ ହୁଏ ନାହିଁ, ତେବେ ତାହା ଅସାର ବୋଲି ବିବେଚିତ ହୁଏ’’ ।

ସମ୍ବିଧାନ ପ୍ରଣୟନରେ ଡିଠା କମିଟି ଦ୍ୱାରା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରାଯାଇଥିଲା । ଡ଼କ୍ଟର ବି.ଆର୍.ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ଏହି କମିଟି ୧୯୪୭ ମସିହା ଅଗଷ୍ଟ ୨୯ ତାରିଖରେ ଗଠିତ ହୋଇଥିଲା । କମିଟିର ସଦସ୍ୟମାନେ ଥିଲେ

ବି.ଏଲ୍.ମିତ୍ତର, ଏନ୍. ଗୋପାଳସ୍ୱାମୀ ଆୟାଙ୍ଗାର, ଆଲ୍ଲାଦି କ୍ରିଷ୍ଣାସ୍ୱାମୀ ଆୟାର, କେ.ଏମ୍. ମୁନ୍‌ସୀ, ଏସ୍.ଏମ୍.ସାଦୁଲ୍ଲା, ଏନ୍.ମାଧବ ରାଓ ଏବଂ ଡ଼ି.ପି. ଖୈତାନ । ଏହି ସମୟରେ ଡ଼ି.ପି.ଖୈତାନଙ୍କ ଦେହାନ୍ତ ଘଟିବାରୁ ତାଙ୍କ ସ୍ଥାନରେ ଟି. ଟି. କ୍ରିଷ୍ଣାମାଚାରୀ ଏହାର ସଦସ୍ୟ ହୋଇଥିଲେ । ଏହି କମିଟି ଦ୍ୱାରା ୨ ବର୍ଷ, ୧୧ମାସ ଓ ୧୮ଦିନ ସମୟ ମଧ୍ୟରେ ଚିଠା ସମ୍ବିଧାନଟି ପ୍ରସ୍ତୁତ ହୋଇଥିଲା। ଅନେକ ଆଲୋଚନା, ପର୍ଯ୍ୟାଲୋଚନା ଓ କେତେକ ସଂଶୋଧନ ପରେ ଭାରତର ସମ୍ବିଧାନ ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ କାର୍ଯ୍ୟକାରୀ ହୋଇଥିଲା ।

ଜନସାଧାରଣଙ୍କ ସାର୍ବଭୌମତ୍ୱର ଦୃଢ଼ୋକ୍ତି ସାଧାରଣତନ୍ତ୍ର ଦିବସର ତାତ୍ପର୍ଯ୍ୟରେ ନିହିତ । ଏହି ଦିନରେ ଜନସାଧାରଣ ସେମାନଙ୍କର ସାର୍ବଭୌମ କ୍ଷମତା ଲାଭ କଲେ । ଆମେ ଆମ ନିଜର ଭାଗ୍ୟ ନିୟନ୍ତା ସାଜିଲୁ । ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ପଦବୀ ଓ କ୍ଷମତା ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି ଆଇନ୍ ଆଖିରେ ସମାନ ସାବ୍ୟସ୍ତ ହେବା ସହ ଆଇନ୍ ଦ୍ୱାରା ସମାନ ସୁରକ୍ଷା ପାଇବାର ଆଶ୍ୱାସନା ଲାଭ କଲେ ।

ଆମେ କ'ଣ ଲାଭ କରିଛୁ ଏବଂ ଆଗକୁ କ'ଣ ହାସଲ କରିବାକୁ ଅଛି, ଏ ସମ୍ପର୍କରେ ଆକଳନ କରିବା ପାଇଁ ସାଧାରଣତନ୍ତ୍ର ଦିବସ ଦେଶବାସୀଙ୍କୁ ସୁଯୋଗ ପ୍ରଦାନ କରିଥାଏ। କୌଣସି ରାଷ୍ଟ୍ର ସହଜ ବାଟରେ ସମୃଦ୍ଧି ଲାଭ କରେନା । କେବଳ ଶୃଙ୍ଖଳା ଓ କଠୋର ପରିଶ୍ରମ ମାଧ୍ୟମରେ ଆମ ଆଗରେ ଥିବା ଆହ୍ୱାନଗୁଡ଼ିକୁ ଆମେ ସଫଳତାର ସହିତ ମୁକାବିଲା କରିପାରିବା । ଆଜି, ଆପଣ ସମସ୍ତଙ୍କୁ ମୋର ଏହା ନିବେଦନ, ସମସ୍ତ ପ୍ରକାର କ୍ଷୁଦ୍ର ବିଚାରଧାରାର ଉପରକୁ ଉଠି ଓଡ଼ିଶାକୁ ଆମ ଦେଶର ଏକ ଅଗ୍ରଣୀ ରାଜ୍ୟ ରୂପେ ଗଢିତୋଳିବା ପାଇଁ ରହିଥିବା ଲକ୍ଷ୍ୟ ହାସଲ ନିମନ୍ତେ ଦୃଢ ସଂକଳ୍ପର ସହ ମିଳିତ ଭାବେ କାର୍ଯ୍ୟ କରିବା ।

ଜୟ ହିନ୍ଦ୍

# ସାଧାରଣତନ୍ତ୍ର ଦିବସ -୨୦୧୨ ଅବସରରେ

# HÝÉæÀÿ þæ¿ÿ¿ ¯ÿÀÿ þQ¿þ¦ê

# ଶ୍ରୀ ନବୀନ ପଟ୍ଟନାୟକଙ୍କ

# ବାର୍ତ୍ତା

ଆଜି ପବିତ୍ର ସାଧାରଣତନ୍ତ୍ର ଦିବସ । ଏହି ଅବସରରେ ଓଡ଼ିଶାବାସୀ ପ୍ରିୟ ଭାଇ ଓ ଭଉଣୀମାନଙ୍କୁ ମୋର ଶୁଭେଚ୍ଛା ଜଣାଉଛି ।

ଆଜିର ଏହି ପବିତ୍ର ଦିବସ ଅବସରରେ ଜାତିର ଜନକ ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ବୀର ସୁରେନ୍ଦ୍ର ସାଏ, ସହିଦ୍ ଲକ୍ଷ୍ମଣ ନାୟକ, ଗୋପବନ୍ଧୁ ଚୌଧୁରୀ ଓ ମା ରମା ଦେବୀଙ୍କ ପରି ମହାନ୍ ଦେଶଭକ୍ତ ଓ ସଂଗ୍ରାମୀମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଦେଶର ସୁରକ୍ଷା ଓ ଶାନ୍ତି ପାଇଁ ସଂଗ୍ରାମ କରି ସହିଦ୍ ହୋଇଥିବା ବୀର ଜବାନ୍‌ମାନଙ୍କ ପ୍ରତି ମଧ୍ୟ ଏହି ଅବସରରେ ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଦିନ ଆମ ସମ୍ବିଧାନ କାର୍ଯ୍ୟକାରୀ ହୋଇଥିଲା । ଡଃ ବାବା ସାହେବ ଭୀମରାଓ ଆମ୍ବେଦକର ଆମ ସମ୍ବିଧାନ ରଚନା କରିଥିଲେ । ଏହି ଅବସରରେ ମୁଁ ତାଙ୍କ ପ୍ରତି ଏବଂ ଆମର Constituent assemblyର ସଭ୍ୟମାନଙ୍କ ପ୍ରତି ମୋର ଗଭୀର ସମ୍ମାନ ଜଣାଉଛି ।

ଆମ ସମ୍ବିଧାନ ଏକ ଆଦର୍ଶ ସମ୍ବିଧାନ । ନ୍ୟାୟ, ସମତା ଓ ସ୍ୱାଧୀନତା ଏହାର ଭିତ୍ତି । ସବୁ ନାଗରିକଙ୍କ ଅଧିକାରର ସୁରକ୍ଷା ସହିତ ସବୁ ଅଞ୍ଚଳର ବିକାଶ ଉପରେ ଏଥିରେ ଗୁରୁତ୍ୱ ଦିଆଯାଇଛି । ଏକ ଶୋଷଣମୁକ୍ତ ଓ ପ୍ରଗତିଶୀଳ ସମାଜ ଗଠନ ଏହାର ଲକ୍ଷ୍ୟ । ଭାରତପରି ଏକ ବହୁ ଭାଷା, ଧର୍ମ ଓ ଜାତିକୁ ନେଇ ଗଠିତ ମହାନ୍ ଦେଶକୁ ଏକତା ସୂତ୍ରରେ ଏହା ବାନ୍ଧି ରଖିଛି । ଆମ ସମ୍ବିଧାନର ଏହି ମହାନତା ଓ ଗାରିମାକୁ ବଜାୟ ରଖିବା ଆମ ସମସ୍ତଙ୍କର ପବିତ୍ର ଦାୟିତ୍ୱ ।

ଭାରତର ସ୍ୱାଧୀନତା ସଂଗ୍ରାମ ବିଶ୍ୱ ଇତିହାସକୁ ସଂଗ୍ରାମର ନୂଆ ମାର୍ଗ ଦେଖାଇଛି । ସତ୍ୟ ଓ ଅହିଂସା ଆଧାରରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଶକ୍ତିଶାଳୀ ବ୍ରିଟିଶ ସରକାର ବିରୁଦ୍ଧରେ ଭାରତବାସୀଙ୍କ ସଂଗ୍ରାମର ତୁଳନା ନାହିଁ ।ଏହି ସଂଗ୍ରାମରେ ଓଡ଼ିଶାର ଗୁରୁତ୍ୱପୂର୍ଣ୍ଣ ଅବଦାନ ଥିଲା । ୧୮୧୭ ଠାରୁ ଆରମ୍ଭ କରି ୧୯୪୨ ପର୍ଯ୍ୟନ୍ତ ସ୍ୱାଧୀନତାର ବିଭିନ୍ନ Phaseରେ ଓଡ଼ିଶାର ସଂଗ୍ରାମୀମାନେ ଯୋଗଦେଇ ଏହି ଆନ୍ଦୋଳନକୁ ଅଧିକ ଶକ୍ତିଶାଳୀ କରିଥିଲେ । ଦେଶର ସ୍ୱାଧୀନତା ପାଇଁ ଆମର ସଂଗ୍ରାମୀମାନଙ୍କର ତ୍ୟାଗ, ସାହସ ଓ ବଳିଦାନ ଆମକୁ ସବୁବେଳେ ପ୍ରେରଣା ଯୋଗାଇ ଚାଲିଥିବ ।

ଆମର ଜାତୀୟ ଜୀବନରେ ସାଧାରଣତନ୍ତ୍ର ଦିବସର ସ୍ୱତନ୍ତ୍ର ଗୁରୁତ୍ୱ ରହିଛି । ଏହା ଆମକୁ ଦେଶ ପ୍ରତି ଆମର ଦାୟିତ୍ୱ ସମ୍ପର୍କରେ ସଚେତନ କରିଥାଏ । ଗଣତନ୍ତ୍ରର ନୀତି ଓ ଆଦର୍ଶ ହେଉଛି ଆମ ଶାସନ ବ୍ୟବସ୍ଥାର ଭିତ୍ତି । ଏଥିରେ ଅଧିକାର ଓ ଦାୟିତ୍ୱ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଏହି ଅଧିକାର ସହିତ ଆମକୁ ଆମର ଦାୟିତ୍ୱ ପ୍ରତି ମଧ୍ୟ ସଜାଗ ରହିବାକୁ ହେବ ।

ଦୁର୍ନୀତି ଗଣତନ୍ତ୍ରର ସବୁଠାରୁ ବଡ଼ ଶତ୍ରୁ । ଦୁର୍ନୀତି ଗଣତନ୍ତ୍ର ବ୍ୟବସ୍ଥାର ସୁଫଳକୁ ନଷ୍ଟ କରି ଦେଇଥାଏ । ତେଣୁ ପ୍ରତି ସ୍ତରରେ ଦୁର୍ନୀତିକୁ ରୋକିବା ପାଇଁ ଜନସାଧାରଣ ସଜାଗ ରହିବା ଦରକାର । ନିଷ୍ଠା, ସାଧୁତା, ସଚେତନତା ଓ ଅନ୍ୟ ମତ ପ୍ରତି ସମ୍ମାନ ଆଦି ଗୁଣର ବିକାଶ ଦ୍ୱାରା ଗଣତନ୍ତ୍ର ଆହୁରି ଶକ୍ତିଶାଳୀ ହୋଇପାରିବ ।

ଭାରତ ସାରା ବିଶ୍ୱକୁ ଶାନ୍ତି, ସତ୍ୟ ଓ ଅହିଂସାର ମହାନ୍ ମାର୍ଗ ଦେଖାଇଛି । ଏହି ଓଡ଼ିଶା ଭୂମିରୁ ସମ୍ରାଟ ଆଶୋକ ସାରା ବିଶ୍ୱକୁ ଶାନ୍ତି ଓ ଅହିଂସାର ବାର୍ତ୍ତା ଦେଇଥିଲେ । ଆମର ସଂସ୍କୃତି ଓ ପରମ୍ପରା ବିଶ୍ୱପ୍ରେମ ଓ ମାନବବାଦର ଜୟଗାନ କରିଆସିଛି । ଆମ କଳା ଦେଶ ବିଦେଶରେ ଆମର ଗୌରବ ବଢାଇଛି । ସଫଳ ଗଣତନ୍ତ୍ର ଭାବରେ ବିଶ୍ୱ ଦରବାରରେ ଭାରତର ସମ୍ମାନ ବଢିଛି। ସ୍ୱାଧୀନ ଭାରତର ନାଗରିକ ଭାବରେ ଆଜି ଆମେ ସମସ୍ତେ ଗର୍ବ କରୁ ।

ସ୍ୱାଧୀନତା ପରେ ଦେଶ ତଥା ଆମ ରାଜ୍ୟ ବିଭିନ୍ନ କ୍ଷେତ୍ରରେ ବିକାଶ ହାସଲ କରିଛି । ଗଣତନ୍ତ୍ର ପ୍ରତି ଲୋକଙ୍କ ଆସ୍ଥା ବଢିଛି । ଲୋକଙ୍କ ଭିତରେ ସଚେତନତା ଆସିଛି । Science ଓ Technology ର ପ୍ରସାର ଦ୍ୱାରା ଲୋକଙ୍କ ଜୀବନଧାରଣ ମାନରେ ଉନ୍ନତି ଆସିଛି । ଅର୍ଥନୀତି, ବିଜ୍ଞାନ ଓ ଗବେଷଣା କ୍ଷେତ୍ରରେ ଆମର ସୁନାମ ବଢିଛି। ସ୍ୱାଧୀନତା ପରେ ଦେଶ ତଥା ରାଜ୍ୟରେ ବିଭିନ୍ନ କ୍ଷେତ୍ରରେ ପ୍ରଗତି ହାସଲ ହୋଇଥିଲେ ମଧ୍ୟ ସ୍ୱାଧୀନତାର ମହାନ୍ ଲକ୍ଷ୍ୟ ହାସଲ ପାଇଁ ଆହୁରି ଅନେକ କାମ କରିବାକୁ ରହିଛି ।

ମହାତ୍ମା ଗାନ୍ଧୀ ସ୍ୱାଧୀନତା ସହିତ ଗାଁର ବିକାଶ ଉପରେ ସବୁବେଳେ ଗୁରୁତ୍ୱ ଦେଉଥିଲେ । ଗାନ୍ଧିଜୀଙ୍କ ଭାଷାରେ ଗାଁରେ ରହିଛି ଭାରତର ଆତ୍ମା । ଗାଁର ଅର୍ଥନୀତି କିପରି ଅଧିକ ମଜବୁତ ହେବ, ସେଥିପ୍ରତି ସେ ଅଧିକ ଧ୍ୟାନ ଦେଉଥିଲେ । ତାଙ୍କର ଖଦୀ କାର୍ଯ୍ୟକ୍ରମ ସାରା ଦେଶରେ ଏକ ନୂଆ ଜାଗରଣ ସୃଷ୍ଟି କରିଥିଲା । ଖଦୀ ଜରିଆରେ ସେ ସ୍ୱାଭିମାନର ବାର୍ତ୍ତା ଗାଁ ଗାଁରେ ପହଞ୍ଚାଇ ପାରିଥିଲେ ।

ଆସନ୍ତୁ, ସମସ୍ତେ ମିଶି ଗାନ୍ଧିଜୀଙ୍କ ସ୍ୱାବଲମ୍ବୀ ଏବଂ ସ୍ୱାଭିମାନୀ ଭାରତ ଗଠନର ସ୍ୱପ୍ନକୁ ସାକାର କରିବା ପାଇଁ ଆମର ଉଦ୍ୟମକୁ ଆହୁରି ଶକ୍ତିଶାଳୀ କରିବା ।

ଜୟହିନ୍ଦ୍

# ସାଧାରଣତନ୍ତ୍ର ଦିବସ -୨୦୧୨ ଅବସରରେ

HÝÉæÀÿ þææÿ¿ ¯ÿÀÿ Àÿæ fÓ H ¯ÿ¨¾¿ß ¨Àÿ`ÿæÁÿçœÿæ F¯ÿó Ó`ÿçÿæ H {àÿæLÿ Óó¨Lÿ þ¦ê

## ଶ୍ରୀ ସୂର୍ଯ୍ୟ ନାରାୟଣ ପାତ୍ରଙ୍କ

## ବାର୍ତ୍ତା

ଓଡ଼ିଶାବାସୀ ଭାଇ ଭଉଣୀଙ୍କୁ ମୁଁ ଭାରତବର୍ଷର ସାଧାରଣତନ୍ତ୍ର ଦିବସ ଅବସରରେ ଶୁଭେଚ୍ଛା ତଥା ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

ଆମର ଜାତୀୟ ଜୀବନରେ ସାଧାରଣତନ୍ତ୍ର ଦିବସ ଏକ ସ୍ମରଣୀୟ ମୁହୂର୍ତ୍ତ ଅଟେ । ୧୯୫୦ ମସିହାର ଏହି ଦିନ ଭାରତବର୍ଷ ସମ୍ବିଧାନ ଅନୁଯାୟୀ କାର୍ଯ୍ୟ କରିବା ଆରମ୍ଭ କରିଥିଲା ଏବଂ ସାମ୍ବିଧାନିକ ଭାବେ ଏକ ସାର୍ବଭୌମ, ଗଣତାନ୍ତ୍ରିକ, ଧର୍ମ ନିରପେକ୍ଷ ଏବଂ ସମାଜବାଦ ସାଧାରଣତନ୍ତ୍ର ରାଷ୍ଟ୍ରଭାବେ ପରିଗଣିତ ହୋଇଥିଲା । ସେହିଦିନଠାରୁ ସମ୍ବିଧାନର ଘୋଷିତ ଉଦ୍ଦେଶ୍ୟ ଅନୁଯାୟୀ ଆମେ ମିଳିତ ଭାବେ କାର୍ଯ୍ୟ କରି ଆସୁଛୁ ଏବଂ ଏହି ସମ୍ବିଧାନ ଭାରତବର୍ଷର ଭାବମୂର୍ତ୍ତିକୁ ଏକ ପ୍ରମୁଖ ଗଣତାନ୍ତ୍ରିକ ରାଷ୍ଟ୍ରଭାବେ ସମଗ୍ର ପୃଥିବୀରେ ପ୍ରତିଷ୍ଠିତ କରିପାରିଛି ।

ଏହି ଶୁଭ ଅବସରରେ, ଆମେ ଆମର ସମ୍ବିଧାନ ଗଠନ କରିଥିବା ମନୀଷୀମାନଙ୍କୁ ଆମର ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଉଛୁ । ଯେଉଁ ବୀର ସ୍ୱାଧୀନତା ସଂଗ୍ରାମୀମାନଙ୍କର ତ୍ୟାଗ, ବଳିଦାନ ଯୋଗୁଁ ଆମେ ସ୍ୱାଧୀନତାର ଆଲୋକ ପାଇପାରିଛୁ, ସେମାନଙ୍କୁ ମଧ୍ୟ ଆମେ ଆମର ସଶ୍ରଦ୍ଧ ଶ୍ରଦ୍ଧାଞ୍ଜଳି ଜଣାଉଛୁ ।

ଏହି ସ୍ମରଣୀୟ ଦିବସରେ, ମୁଁ ଓଡ଼ିଶାର ସମସ୍ତ ଭାଇ ଓ ଭଉଣୀଙ୍କୁ ଆହ୍ୱାନ କରୁଛି "ଆସନ୍ତୁ, ନୂଆ ଉତ୍ସାହ ଓ ଉଦ୍ଦୀପନାର ସହ ଆମ ରାଜ୍ୟର ଗଣତାନ୍ତ୍ରିକ ପଦ୍ଧତିକୁ ଆହୁରି ସୁଦୃଢ କରିବା ପାଇଁ ନିଜକୁ ଉତ୍ସର୍ଗ କରିବା ।"

ଜୟହିନ୍ଦ୍

## ସମ୍ପାଦକୀୟ

# ଆମେ ଓ ଆମର ସାଧାରଣତନ୍ତ୍ର

ଇଂରାଜୀ ଶବ୍ଦ Republicର ଓଡ଼ିଆ ଅନୁବାଦ ହେଉଛି ସାଧାରଣତନ୍ତ୍ର ଏବଂ Republic Dayର ଓଡ଼ିଆ ପ୍ରତିଶବ୍ଦ ହେଉଛି ସାଧାରଣତନ୍ତ୍ର ଦିବସ ।

୧୫ ଅଗଷ୍ଟ ୧୯୪୭ ସାଲ୍‌ରେ ଭାରତ ସ୍ୱାଧୀନତା ଲାଭ କଲା । ମାତ୍ର ବିଲାତର ରାଜା (ସେତେବେଳର ରାଜା ଜର୍ଜ ୫ମ) ଭାରତର ମଧ୍ୟ ନାମମାତ୍ର ରାଜା ହୋଇ ରହିଲେ ଏବଂ ବଡ଼ଲାଟ (ଗଭର୍ଣ୍ଣର ଜେନେରାଲ) ମଧ୍ୟ ଭାରତର ଭାଇସ୍‌ରାୟ (ବା ରାଜପ୍ରତିନିଧି) ବୋଲାଇଲେ । ତେଣୁ ବିଲାତ ରାଜାଙ୍କ ପ୍ରତିନିଧି ରୂପେ ଲର୍ଡ଼ ମାଉଣ୍ଟବ୍ୟାଟେନ୍ ଭାରତର ରାଷ୍ଟ୍ରମୁଖ୍ୟ ଭାବେ କିଛିଦିନ କାର୍ଯ୍ୟ କଲେ । ଅଳ୍ପଦିନ ପରେ ସେ ଭାରତରୁ ବିଦାୟ ନେଲେ ଓ ପରେ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଭାରତବର୍ଷର ପ୍ରଥମ ଭାରତୀୟ ବଡ଼ଲାଟ ହୋଇଥିଲେ, କିନ୍ତୁ ଭାଇସ୍‌ରାୟ ନୁହଁ । ଲର୍ଡ଼ ମାଉଣ୍ଟବ୍ୟାଟେନ୍ ଭାରତର ଶେଷ ଭାଇସରାୟ ବା ବିଲାତ ରାଜାଙ୍କର ରାଜପ୍ରତିନିଧି ଥିଲେ ।

ଏପରି ବ୍ୟବସ୍ଥାର କାରଣ ମଧ୍ୟ ଥିଲା । ନୂତନଭାବେ ସ୍ୱାଧୀନତା ଲାଭ କରିଥିବା ଭାରତବର୍ଷର କୌଣସି ସମ୍ବିଧାନ ନ ଥିଲା । ତେଣୁ ସ୍ୱାଧୀନତା ପରେ ସମ୍ବିଧାନ ପ୍ରଣୟନ ସଭା ଯେଉଁ ସମ୍ବିଧାନ ପ୍ରଣୟନ କଲେ, ତାହା ୨୬ ଜାନୁୟାରୀ ୧୯୫୦ ସାଲ୍‌ରେ ପ୍ରଚଳନ ହେଲା ଅର୍ଥାତ୍ ତଦନୁଯାୟୀ ସ୍ୱାଧୀନ ଭାରତ ଏକ ସାର୍ବଭୌମ ରାଷ୍ଟ୍ର ଭାବେ ନିଜକୁ ଘୋଷଣା କରି ନୂତନ ସମ୍ବିଧାନ ଅନୁସାରେ ଏ ନବସ୍ୱାଧୀନ ଦେଶ ପରିଚାଳିତ ହେବ ବୋଲି ସଂକଳ୍ପ ନେଲେ । ନୂଆ ସମ୍ବିଧାନ ଏ ଦେଶକୁ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ର ଭାବେ ଘୋଷଣା କଲା । ପରେ ୧୯୭୫ରେ ସମ୍ବିଧାନ ସଂଶୋଧିତ ହୋଇ ଆମ ଦେଶର ସରକାରୀ ନାମ ହେଲା ''ସମାଜବାଦୀ ଧର୍ମନିରପେକ୍ଷ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ।''

ସାଧାରଣତନ୍ତ୍ରରେ ରାଷ୍ଟ୍ରମୁଖ୍ୟ ଜନସାଧାରଣଙ୍କ ଦ୍ୱାରା ପ୍ରତ୍ୟକ୍ଷ (ଯେପରି ଯୁକ୍ତରାଷ୍ଟ୍ର ଆମେରିକା) ଅଥବା ପରୋକ୍ଷ (ଯେପରି ଭାରତବର୍ଷ) ଭାବେ ନିର୍ବାଚିତ ହୋଇଥାନ୍ତି । ତେଣୁ ଏଇ ୨୬ ଜାନୁୟାରୀ ଆମ ଜାତୀୟ ଜୀବନରେ ଏକ ସ୍ମରଣୀୟ ଦିବସ ।

ଆଜିର ଦିବସ ମଧ୍ୟ ଏ ରାଷ୍ଟ୍ରର ନାଗରିକମାନଙ୍କଠାରୁ କିଛି ପ୍ରତ୍ୟାଶା ରଖେ, ସେ ପ୍ରତ୍ୟାଶା ହେଉଛି, ଏହାର ସ୍ୱାଧୀନତା ଓ ସାର୍ବଭୌମତ୍ୱକୁ ଅକ୍ଷୁଣ୍ଣ ରଖିବା । ଗଣତନ୍ତ୍ରର ଜାଗ୍ରତ ପ୍ରହରୀ ଭାବେ ପ୍ରତ୍ୟେକ ନାଗରିକ ଏହାର ମହାନତାକୁ ରକ୍ଷା କରିବା ତଥା ଏଇ ସାଧାରଣତନ୍ତ୍ର ରାଷ୍ଟ୍ରରେ ସମାଜବାଦକୁ ଭିତ୍ତିକରି ଆର୍ଥିକ ଓ ସାମାଜିକ ବିକାଶ ପ୍ରକ୍ରିୟାକୁ ଆଗେଇ ନେବା ଏବଂ ସର୍ବୋପରି ବହୁଜାତି ଓ ବହୁଧର୍ମର ଏହି ଦେଶର ସମସ୍ତ ଧାର୍ମିକ ସଂପ୍ରଦାୟଙ୍କୁ ରାଷ୍ଟ୍ର ତରଫରୁ ସୁରକ୍ଷା ପ୍ରଦାନ କରି ସେମାନଙ୍କର ସର୍ବବିଧ ଉତ୍ଥାନ ପାଇଁ ସଚେଷ୍ଟ ହେବା ପାଇଁ ଆଜିର ଦିବସ ପ୍ରତ୍ୟେକ ନାଗରିକ ମନେ ପକାଇ ଦେଇଥାଏ ।

ଦୁଃଖର କଥା ଏହି ବିଶାଳ ରାଷ୍ଟ୍ରକୁ ପରିଚାଳନା କରିବା ପାଇଁ କେନ୍ଦ୍ରରେ ଯେଉଁମାନେ ଆଜି ଦାୟିତ୍ୱ ଗ୍ରହଣ କରିଛନ୍ତି, ସେମାନେ ସଂମ୍ବିଧାନର ଏହି ମହାନ୍ ଉଦ୍ଦେଶ୍ୟକୁ ପୂରା ଭୁଲି ଯାଇଛନ୍ତି ଏବଂ ସେମାନଙ୍କର ସମ୍ବିଧାନ ପ୍ରତି ଆନୁଗତ୍ୟ ଖୁବ୍ କମ୍ ବା ଆଦୌ ନାହିଁ କହିଲେ ସତ୍ୟର ଅପଳାପ ହେବ ନାହିଁ । କେନ୍ଦ୍ର ସରକାର ବିଦେଶୀମାନଙ୍କ ଇଙ୍ଗିତରେ ପରିଚାଳିତ । ଆଜିର କେନ୍ଦ୍ର ସରକାରଙ୍କ ଦୟାରୁ ଆମ ଦେଶର ଡାଲି, ଚାଉଳ, ତେଲ, ଲୁଣ ଓ ପନିପରିବା ବିକ୍ରୟ କରିବା ପାଇଁ ଯୁକ୍ତରାଷ୍ଟ୍ର ଆମେରିକାର ଧନ କୁବେର ବ୍ୟବସାୟୀମାନଙ୍କ ହାତକୁ ଟେକିଦେବାର ବ୍ୟବସ୍ଥା ପ୍ରାୟ ଚୂଡ଼ାନ୍ତ । ଶହଶହ ୟୁରୋ-ଆମେରିକୀୟ କମ୍ପାନୀର ନାଗଫାଶରେ ଭାରତ ଆବଦ୍ଧ ।

ଦିନେ ଗୋଟିଏ 'ଇଷ୍ଟ ଇଣ୍ଡିଆ କମ୍ପାନୀ' ପାଖାପାଖି ଆମକୁ ଦୁଇଶହ ବର୍ଷ ଧରି ଗୋଲାମ କରି ରଖିଥିଲା । ଅନେକ ସଂଘର୍ଷ, ମହନୀୟ ତ୍ୟାଗ ବଳରେ ଓ ଆତ୍ମବଳିଦାନ ଫଳରେ ଆମେ ନିଜର ସ୍ୱାଧୀନତା ଫେରି ପାଇଛୁଁ । ଆଶା କରାଯାଉଥିଲା, ଭବିଷ୍ୟତରେ ସବୁଦିନ ପାଇଁ ଏହି ଶୋଷକମାନଙ୍କ କବଳରୁ ଈଶ୍ୱର ଆମକୁ ଛୁଟି ଦେଇଛନ୍ତି । ମାତ୍ର ଏବର କେନ୍ଦ୍ର ସରକାରରେ ଥିବା କିଛି ଅପରିଣାମଦର୍ଶୀ ନେତୃମଣ୍ଡଳୀଦ୍ୱାରା ଆମର ଏହି କଷ୍ଟଲବ୍ଧ ସ୍ୱାଧୀନତା ଆଜି ବିପଦର ଦ୍ୱାର ଦେଶରେ । ମୁକ୍ତ ଅର୍ଥନୀତିର ଧ୍ୱନୀ ଦେଇ ଆମ ଦେଶର ଅର୍ଥନୀତିକୁ ବିଦେଶୀ ବଣିକଙ୍କ ଦ୍ୱାରା ଲୁଣ୍ଠନ କରାଇବା ଆମର ଏକମାତ୍ର ଉଦ୍ଦେଶ୍ୟ ହୋଇଯାଇଛି । ଆମର ଖଣି, ପାଣି, ବଣ ଏବଂ ସେହି ବଣରେ ରହୁଥିବା ମଣିଷଙ୍କୁ ଖୋଳି, ତାଡ଼ି, ଲୁଟି, ଉଚ୍ଛେଦ କରି ବିଦେଶୀ ବଣିକଙ୍କ ଲାଭକୁ ଚକ୍ରବୃଦ୍ଧି ହାରରେ ବୃଦ୍ଧି କରିବା ପାଇଁ ଆମର ରାଷ୍ଟ୍ରନାୟକମାନେ ବଡ଼ ତତ୍ପର । ତା'ର କାରଣ ହେଉଛି, ଦୁର୍ଭାଗ୍ୟକୁ ଏ ରାଷ୍ଟ୍ରର ସରକାରଙ୍କ ମୁଖ୍ୟ ଜଣେ ରାଜନେତା ବା ଲୋକ ପ୍ରତିନିଧି ନୁହନ୍ତି । ସେ ନିଜ ଘରଠାରୁ ହଜାର ହଜାର କିଲୋମିଟର ଦୂର ଏକ ଅନଗ୍ରସର ଅଞ୍ଚଳରୁ ରାଜ୍ୟସଭାକୁ ମନୋନୀତ ହୋଇ ଆସନ୍ତି । ସାଧାରଣ ଲୋକଙ୍କ ସହିତ ତାଙ୍କର ଆଦୌ ସମ୍ପର୍କ ନାହିଁ କହିଲେ ଚଳେ ଏବଂ ମାତ୍ର ଜଣେ ବିଦେଶୀ ମୂଳର ମହିଳାଙ୍କ ଆଶୀର୍ବାଦ ଲାଭ କରି ସେ ଶାସନର ପ୍ରଧାନବ୍ୟକ୍ତି । ବିଦେଶୀମାନଙ୍କ ଲାଭ ପାଇଁ ଭାରତର ଆତ୍ମସମ୍ମାନ ଓ ଜନଜୀବନର ଆର୍ଥିକ ତଥା ସାମାଜିକ ବିକାଶକୁ ବଳି ଦେଇ ସେ ବିନାଶ ଅଭିମୁଖୀ କରାଇବାରେ ବ୍ୟସ୍ତ । ଏତଦ୍‌ଭିନ୍ନ ସେଇ ପ୍ରଧାନବ୍ୟକ୍ତିଟି ମଧ୍ୟ ନିଜ ଜୀବନର ଅର୍ଦ୍ଧାଧିକ କାଳ ବିଶ୍ୱବ୍ୟାଙ୍କ୍ ପରି ସାମ୍ରାଜ୍ୟବାଦୀଙ୍କ ସଖିକଣ୍ଢେଇ ଅନୁଷ୍ଠାନର ବେତନଭୋଗୀ କର୍ମଚାରୀ ଥିଲେ ।

ଏବେ ସେ ନିଜ ମୁନିବଙ୍କ ସ୍ୱାର୍ଥ ପାଇଁ ଭାରତର ସ୍ୱାର୍ଥକୁ, ଏ ଦେଶର ଅଗଣିତ ବନବାସୀ, ପଛୁଆ, ଦଳିତ ଓ ଅଳ୍ପସଂଖ୍ୟକ ଲୋକଙ୍କ ପେଟ ପାଟଣା ପ୍ରତି ଉଦାସୀନ ରହି ବହୁଦେଶୀୟ ପୁଞ୍ଜି ଐରାବତମାନଙ୍କ ତୋଷଣରେ ଦିନରାତି ଲାଗି ପଡ଼ିଛନ୍ତି ।

ସର୍ବଶିକ୍ଷାର ନାରା ଦିଆଯାଉଛି ସତ । ହେଲେ ଏବେ ବି ଶତକଡ଼ା ୪୦ ଭାଗରୁ ଊର୍ଦ୍ଧ୍ୱ ପିଲା ବିଦ୍ୟାଳୟର ମୁଖ ଦେଖିବାରୁ ବଞ୍ଚିତ ।

କିନ୍ତୁ ଆଶା ଓ ଆଶ୍ୱାସନାର କଥା, ସାଂପ୍ରତିକ ଓଡ଼ିଶାର ସର୍ବାଧିକ ଜନପ୍ରିୟ ନେତା ଶ୍ରୀ ନବୀନ ପଟ୍ଟନାୟକ ଓ ତାଙ୍କ ପରି ଭାରତବର୍ଷର ଆହୁରି କିଛି ସ୍ୱଦେଶପ୍ରେମୀ ଜନନେତା କେନ୍ଦ୍ର ସରକାରଙ୍କର ବିଭିନ୍ନ ଜନବିରୋଧୀ ନୀତିକୁ ଦୃଢ଼ ଭାବେ ପ୍ରତିରୋଧ କରି ଜନ୍ମମାଟି ପ୍ରତି ନିଜର ଦାୟବଦ୍ଧତାକୁ ସିଦ୍ଧ କରିବା ପାଇଁ ପ୍ରଚେଷ୍ଟାରତ ।

ଦୁର୍ନୀତି ରୂପକ ମହାମାରିଟି ମଧ୍ୟ ଆମ ଜାତୀୟ ଜୀବନକୁ କାଠକୁ ଘୁଣ ଖାଇଯିବା ପରି ଅହରହ ଖାଇ ଚାଲିଛି । ତା' ବିରୁଦ୍ଧରେ ଭାରତର ଜନସାଧାରଣଙ୍କ ସ୍ୱର ସହିତ ସ୍ୱର ମିଳାଇ ଆମର ପ୍ରିୟ ନେତା ନବୀନ ବାବୁ ଯେଉଁ ଦମ୍ଭର ସହିତ ମୁକାବିଲା କରୁଛନ୍ତି, ତାହା ମଧ୍ୟ ପ୍ରଶଂସନୀୟ । କେବଳ ସେତିକି ନୁହେଁ, ଭାରତବର୍ଷର ସଂବିଧାନ ପ୍ରଦତ୍ତ ସଂଘୀୟ ବ୍ୟବସ୍ଥାକୁ ମଧ୍ୟ ଦୁର୍ବଳ କରିଦେବାକୁ କେନ୍ଦ୍ରର ଚକ୍ରାନ୍ତ ବିରୁଦ୍ଧରେ ଭାରତର ଯେଉଁ କିଛି ନେତୃମଣ୍ଡଳୀ ଆଗଭର ହୋଇଛନ୍ତି, ଆମର ପ୍ରିୟନେତା ନବୀନବାବୁ ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ।

ଆଜି ଏହି ସ୍ମରଣୀୟ ଦିବସ-ଅର୍ଥାତ୍ ସାଧାରଣତନ୍ତ୍ର ଦିବସରେ ଆମେ ଓଡ଼ିଶାବାସୀ ଐକ୍ୟବଦ୍ଧ ଭାବେ ଏକ ଜନକଲ୍ୟାଣକାରୀ, ସମତାପୂର୍ଣ୍ଣ ସମାଜବ୍ୟବସ୍ଥା ତିଆରି କରିବାରେ ଭାରତର ଅନ୍ୟାନ୍ୟ ପ୍ରାନ୍ତରର ଲଢୁଆ ଜନଗଣଙ୍କ ସହ ଆମର ସଂହତି ପ୍ରକାଶ କରିବା ଏବଂ ଆକୁମାରୀ ହିମାଳୟ ଚାଲିଥିବା ଦୁର୍ନୀତି, ସ୍ୱେଚ୍ଛାଚାର, ଜନବିରୋଧୀ ନୀତିମାନଙ୍କୁ ବିରୋଧ କରିବା ହିଁ ହେବ ପବିତ୍ର ଦିବସ ପାଳନ କରିବାର ଉପଯୁକ୍ତ ଅବସର । ଏହା ହିଁ ହେବ ଆଜିର ସାଧାରଣତନ୍ତ୍ର ଦିବସ ପ୍ରତି ଆମର ଉପଯୁକ୍ତ ସମ୍ମାନ ପ୍ରଦର୍ଶନ ।

ବନ୍ଦେ ଉତ୍କଳ ଜନନୀ

ଜୟହିନ୍ଦ୍

# ବନ୍ଦେ ମାତରମ୍

ନିର୍ମଳା କୁମାରୀ ମହାପାତ୍ର

ବର୍ତ୍ତମାନ ଗଣମାଧ୍ୟମରେ ଶକ୍ତିଶାଳୀ ଅଭିକର୍ତ୍ତା ବା ଏଜେଣ୍ଟ (Agent) ହେଲା ଦୂରଦର୍ଶନ । ତା ପାଖକୁ ଆକାଶବାଣୀ ଦୂରଦର୍ଶନ ବା ଆକାଶବାଣୀର କାର୍ଯ୍ୟକ୍ରମ ଆମ ଦେଶରେ ଆରମ୍ଭ ହୁଏ **''ବନ୍ଦେ ମାତରମ୍....''** ଗାନରୁ । ଏହି ଗାନ ବନ୍ଦେ ମାତରମ୍.... ସୁଖଦାଂ ବରଦାଂ ମାତରମ୍.... ହେଲା ଆମ ଦେଶ ଭାରତବର୍ଷର ରାଷ୍ଟ୍ରୀୟ ଗାନ । ଏହାକୁ ରଚନା କରିଛନ୍ତି ବଙ୍କିମଚନ୍ଦ୍ର ଚାଟାର୍ଜୀ । ଏହା ତାଙ୍କର ପ୍ରସିଦ୍ଧ ଉପନ୍ୟାସ ଆନନ୍ଦମଠ (ସନ ୧୮୮୨ ଖ୍ରୀ.ଅ.ରେ ପ୍ରକାଶିତ)ରେ ସନ୍ନିହିତ । ଆନନ୍ଦମଠର ପ୍ରକାଶନ କାଳ ୧୮୮୨ ଖ୍ରୀ. ହେଲେ ହେଁ ବନ୍ଦେ ମାତରମ୍ ଗୀତର ରଚନାକାଳ ବହୁପୂର୍ବରୁ । ଯେତେଦୂର ବିଶ୍ୱାସ କରାଯାଏ, ଏହା ହେଲା ବଙ୍କିମଚନ୍ଦ୍ରଙ୍କର ୧୮୭୦ ମସିହାରେ ରଚନା । ଏଇ ଗୀତର ସାଙ୍ଗୀତିକ ସ୍ୱର ତିଆରି କରିଥିଲେ ରବୀନ୍ଦ୍ରନାଥ ଠାକୁର ।

ବନ୍ଦେ ମାତରମ୍ ଗୀତଟି ୧୮୯୬ ମସିହାର ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ବୋଲାଯାଇଥିଲା ପ୍ରାରମ୍ଭିକ ସଂଗୀତ ଭାବେ । ସନ ୧୯୦୫, ବଂଗଭଂଗ ଭଳି ଐତିହାସିକ ଘଟଣାର ସମୟ । ବଂଗପ୍ରଦେଶକୁ ପୂର୍ବବଂଗ ଓ ପଶ୍ଚିମ ବଂଗ ଏହିପରି ଦୁଇଭାଗରେ ବିଭକ୍ତ କରିବାର ମସୁଧା କରୁଥାନ୍ତି ଇଂରେଜ ସରକାର । ଏହାକୁ ପ୍ରତିରୋଧ କରନ୍ତି ସମଗ୍ର ବଂଗବାସୀ । ଜାତୀୟ ଚେତନା ଜଗାଇବା ପାଇଁ ସେତେବେଳର ଆନ୍ଦୋଳନରେ ମୁଖ୍ୟତଃ ଏଇ ଗୀତ ବନ୍ଦେ ମାତରମ୍ ବୋଲାଯାଉଥିଲା । ସନ ୧୯୦୬ ମସିହାରେ ବରିସାଲଠାରେ ବଂଗପ୍ରାଦେଶିକ ସମ୍ମେଳନ ଅନୁଷ୍ଠିତ ହୋଇଥିଲା । ସେଇଠି ମଧ୍ୟ ଏଇ ଗୀତ ବୋଲାଯାଇଥିଲା । ବଂଗଭଂଗ ବିରୋଧକାରୀମାନେ ଏଇ ଗୀତକୁ ଗାଇ ଗାଇ ଆନ୍ଦୋଳନର ଉଷ୍ମତା ବଜାୟ ରଖିଥିଲେ । ସ୍ୱୟଂ ଗୁରୁଦେବ ଏଇ ବନ୍ଦେ ମାତରଂକୁ କଂଗ୍ରେସ ଅଧିବେଶନରେ ବୋଲିଥିଲେ । ମାଡାମ୍ କାମା ୧୯୦୭ ମସିହାରେ ଏକ ଜାତୀୟ ପତାକାର ପରିକଳ୍ପନା କରିଥିଲେ । ତାହାର ଉପରେ ଥିଲା ସବୁଜ ରଙ୍ଗର ପଟି ଉପରେ ଆଠଗୋଟି ଫୁଟନ୍ତା ପଦ୍ମ । ମଝିରେ ହଳଦିଆ ପଟିରେ ଦେବନାଗରୀ ଲିପିରେ ବନ୍ଦେ ମାତରମ୍

**''वन्दे मातरम्''**

ଲେଖାଥିଲା । ସବାତଳେ ଲାଲପଟିରେ ଥିଲା ଚନ୍ଦ୍ର ଓ ସୂର୍ଯ୍ୟର ପ୍ରତୀକ ଚିହ୍ନ । ସେକାଳରେ ବନ୍ଦେ ମାତରମ୍ ଗୀତର ପ୍ରୟୋଗ ଓ ପତାକାର ଚିତ୍ରଣରେ ବ୍ରିଟିଶ ସରକାରଙ୍କର ସୁଖନିଦ୍ରା ହଜିଗଲା । ଏଣୁ ତତ୍କାଳୀନ ଭିତ୍ତିରେ ସରକାର ''ଉଚ୍ଚ ସ୍ୱରରେ ବନ୍ଦେ ମାତରମ୍'' ଗୀତ ବୋଲାଯିବ ନାହିଁ ବୋଲି ଆଦେଶପତ୍ର ପ୍ରଖ୍ୟାପନ କଲେ । କିନ୍ତୁ ସରକାରଙ୍କୁ କିଛି ସୁଫଳ ମିଳିଲା ନାହିଁ । ଗୀତଟିର ପ୍ରାରମ୍ଭ 'ବନ୍ଦେ ମାରତମ୍' ପ୍ରତି ତୁଣ୍ଡରୁ ଗୀତର ପ୍ରତୀକ ଭାବେ ଶୁଣା ଯାଉଥିଲା । ଜାତୀୟ ଆନ୍ଦୋଳନକୁ ତେଜୀୟାନ୍ କରି ରଖିବା ପାଇଁ ସେଇ ଥିଲା ଯଥେଷ୍ଟ ।

ଜନ୍ମଭୂମିର ସେବା ପାଇଁ ବନ୍ଦେ ମାତରମ୍ ଥିଲା ମନ୍ତ୍ରପରି । ସ୍ୱାଧୀନତା ପାଇଁ ଲଢ଼େଇ କରିବାରେ ଏଇ ଗାନଟି ଯେପରି ସଂଗ୍ରାମୀଗଣଙ୍କୁ ଶାରୀରିକ, ମାନସିକ ଓ ବୌଦ୍ଧିକ ଶକ୍ତି ପ୍ରଦାନ କରୁଥିଲା । ଏହାର ଲୋକପ୍ରିୟତାରୁ ଶେଷକୁ କଂଗେସ କମିଟି ଏହା ସପକ୍ଷରେ ମନ୍ତବ୍ୟ ଦେଇଥିଲେ ନିମ୍ନମତେ ।

".... Taking all things into consideration, therefore this committe recommends that wherever this **Vande Mataram** is sung at national gatherings, only the first two stanzas should be sung with perfect freedom to the organizers to sing any other song of an unobjectionable character, in addition to or in place of the Vande Mataram song.

National Symbols - Vande Mataram
CCRT Publication, P-07

ସନ ୧୯୩୭ ମସିହାରେ ରବୀନ୍ଦ୍ରନାଥଙ୍କ ସମେତ ମୌଲାନା ଅବଦୁଲ କାଲାମ, ଜବାହରଲାଲ ନେହେରୁ, ସୁଭାଷଚନ୍ଦ୍ର ବୋଷ ଏବଂ ଆଚାର୍ଯ୍ୟଦେବଙ୍କୁ ନେଇ ଏକ ସବ୍‌କମିଟି ଗଠିତ ହୋଇଥିଲା । ତାର ଉଦ୍ଦେଶ୍ୟ ଥିଲା ଜାତୀୟ ସଂଗୀତ ପାଇଁ ଗୀତଟିଏ ସ୍ଥିର କରିବା । ମହାତ୍ମାଗାନ୍ଧୀ ବନ୍ଦେ ମାତରମ୍ ସପକ୍ଷରେ ନିଜର ମତ ସାବ୍ୟସ୍ତ କରିଥିଲେ । ଗାନ୍ଧୀଙ୍କର ମତ **ହରିଜନ** ପତ୍ରିକାରେ ଜୁଲାଇ ୦୧, ୧୯୩୯ରେ ପ୍ରକାଶିତ ହୋଇଥିଲା ।

ବଙ୍କିମଚନ୍ଦ୍ରଙ୍କର ରଚନାବଳୀରୁ ବନ୍ଦେ ମାତରମ୍ ଗାନଟିର ପୂର୍ଣ୍ଣ ରୂପ ନିମ୍ନରେ ପ୍ରଦତ୍ତ । ଯଥା–

ବନ୍ଦେ ମାତରମ୍
ସୁଜଳାଂ ସୁଫଳାଂ ମଳୟଜ ଶୀତଳାଂ
ଶସ୍ୟଶ୍ୟାମଳାଂ ମାତରମ୍
ଶୁଭ୍ରଜ୍ୟୋତ୍ସ୍ନା ପୁଲକିତ ଜାମିନୀମ୍
ଫୁଲ୍ଲକୁସୁମିତ ଦ୍ରୁମଦଳ ଶୋଭିନିମ୍
ସୁଭାଷିନିମ୍ ସୁମଧୁର ଭାଷିନୀମ୍
ସୁଖଦାଂ ବରଦାଂ ମାତରମ୍ ।

ସପ୍ତକୋଟି କଣ୍ଠ– କଳକଳ ନିନାଦ କରାଳେ
ଦ୍ୱି–ସପ୍ତକୋଟି ଭୁଜୈର୍ଧୃତ ଖର କରବାଳେ
ଅବଳା କେନ ମା ଏତ ବଲେ
ବହୁ ବଳ ଧାରିଣୀମ୍ ନମାମି ତାରିଣୀମ୍
ରିପୁଦଳ ବାରିଣୀମ୍ ମାତରମ୍

ତୁମି ବିଦ୍ୟା ତୁମି ଧର୍ମ
ତୁମି ହୃଦି ତୁମି ମର୍ମ
ତ୍ୱଂ ହି ପ୍ରାଣାଃ ଶରୀରେ
ବାହୁତେ ତୁମି ମା ଶକ୍ତି
ହୃଦୟେ ତୁମି ମା ଭକ୍ତି
ତୋମାର ଇ ପ୍ରତିମା ଗଢ଼ି ମନ୍ଦିରେ ମନ୍ଦିରେ
ତ୍ୱଂ ହି ଦୁର୍ଗା ଦଶପ୍ରହରଣଧାରିଣୀଂ
କମଳା–କମଳଦଳ ବିହାରିଣୀଂ
ବାଣୀ ବିଦ୍ୟାଦାୟିନୀ ନମାମି ତ୍ୱାଂ
ନମାମି କମଳାଂ ଅମଳାଂ ଅତୁଳାମ୍
ସୁଜଳାଂ ସୁଫଳାଂ ମାତରମ୍
ବନ୍ଦେ ମାତରମ୍
ଶ୍ୟାମଳାଂ ସରଳାଂ ସୁସ୍ମିତାଂ ଭୂଷିତାଂ
ଧରଣୀଂ ଭରଣୀମ୍ ମାତରମ୍

ସନ ୧୯୭୬ ମସିହାରେ ଭାରତ ସରକାର ଏଇ ଗାନର ପ୍ରଥମ ଦୁଇପଦକୁ (ବନ୍ଦେ ମାତରମ୍ .... ସୁଖଦାଂ ବରଦାଂ ମାତରମ୍ ପର୍ଯ୍ୟନ୍ତ) ସମ୍ମାନ ଦେଇ ଏକ ସ୍ୱତନ୍ତ୍ର ଡାକଟିକଟ ପ୍ରଚଳନ କରିଛନ୍ତି ।

ଏବେ ଚିନ୍ତା କରିବା ବନ୍ଦେ ମାତରମ୍ ଗାନଟିର ରଚୟିତା ବଙ୍କିମଚନ୍ଦ୍ର ଚାଟାର୍ଜୀଙ୍କ ସଂପର୍କରେ ଅତି ସଂକ୍ଷେପରେ ।

ସାହିତ୍ୟ ସମ୍ରାଟ୍ ବଙ୍କିମଚନ୍ଦ୍ର ଥିଲେ ଊନବିଂଶ ଶତାବ୍ଦୀର ଜଣେ ଶ୍ରେଷ୍ଠ ବ୍ୟକ୍ତିତ୍ୱ । ତାଙ୍କର ସମଗ୍ର ଜୀବନ ଥିଲା ସଂଗ୍ରାମର ଗାଥା । ଦେଶକୁ ଉନ୍ନତ ବିକଶିତ ତଥା ମୁକ୍ତ କରିବା ପାଇଁ ତାଙ୍କର ପ୍ରୟାସ ବା ପ୍ରଚେଷ୍ଟା ଥିଲା ଅବିରତ । ତାଙ୍କୁ ସାହିତ୍ୟ ସମ୍ରାଟ୍ କୁହାଯାଏ ମାତ୍ର ସେ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । ଶିକ୍ଷା ସଂସ୍କୃତି , ଇତିହାସ, ସମାଜ ସଂସ୍କାର, ପ୍ରତ୍ୟକ୍ଷ ରାଜନୀତି ତଥା ବିଜ୍ଞାନ କ୍ଷେତ୍ର ପ୍ରତି ତାଙ୍କର ଯଥେଷ୍ଟ ଅବଦାନ ଥିଲା । ସନ ୧୮୩୮, ଜୁନ୍ ୨୬ ତାରିଖରେ ବଙ୍ଗ ପ୍ରଦେଶର କଣ୍ଠଲପଡ଼ାରେ ବଙ୍କିମଚନ୍ଦ୍ରଙ୍କର ଜନ୍ମ । ସଂଯୋଗ ବଶତଃ ସେ ଜନ୍ମ ହୋଇଥିଲେ ସଂସ୍କାରକ ରାଜା ରାମମୋହନ ରାୟଙ୍କ ଦେହାନ୍ତର ପ୍ରାୟ ୫ ବର୍ଷ ପରେ । ପ୍ରୋକ୍ତ ରାଜା ରାମମୋହନଙ୍କୁ ଭାରତର ସର୍ବପ୍ରଥମ ଆଧୁନିକ ବ୍ୟକ୍ତିତ୍ୱର ସମ୍ମାନ ଦିଆଯାଏ । ଅତଏବ ବଙ୍କିମଚନ୍ଦ୍ରଙ୍କ ଜନ୍ମ ବେଳକୁ ଦେଶରେ କିଛି ମାତ୍ରାରେ ଆଧୁନିକତାର ସ୍ରୋତ ପ୍ରବାହିତ ହେଲାଣି । ବିଶେଷତଃ ବଂଗପ୍ରଦେଶରେ ରାଜା ରାମମୋହନଙ୍କ ସମେତ ଦେବେନ୍ଦ୍ର ନାଥ ଠାକୁର, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଆଦିଙ୍କର ପ୍ରୟାସ– ପ୍ରଚେଷ୍ଟା ବଳରେ ଅନ୍ଧବିଶ୍ୱାସର ଅନ୍ଧକାର କିଛି ମାତ୍ରାରେ କଟିଥିଲା । ଶିକ୍ଷା ସଂସ୍କାରର ହାୱା କ୍ରମେ ପ୍ରବେଶ କରୁଥିଲା । ବ୍ରାହ୍ମ ଚିନ୍ତାଧାରାର ପ୍ରକଟ ପ୍ରଚାର ଫଳରେ ଲୋକସଚେତନତା କିଛି ବଢ଼ିଥିଲା । ଏପରି ଏକ ଘଡ଼ିସନ୍ଧି କାଳରେ ବଙ୍କିମଚନ୍ଦ୍ରଙ୍କର ଜନ୍ମ । ତାଙ୍କର ପିତା ରାଖାଲଚନ୍ଦ୍ର ଥିଲେ ଜଣେ ଅଭିଜାତ ବ୍ରାହ୍ମଣ । କେବଳ ସେତିକି ନୁହେଁ ବ୍ରିଟିଶ ସରକାରଙ୍କ ଅଧୀନରେ ସେ ଏକ ଆକର୍ଷଣୀୟ ପଦବୀର ଅଧିକାରୀ ମଧ୍ୟ

ଥିଲେ । ସେ ଥିଲେ ଜଣେ ଉପଜିଲ୍ଲାପାଳ (Deputy Collector) । ବଙ୍କିମଚନ୍ଦ୍ରଙ୍କ ଉପରେ ଦୁଇ ଭାଇ ଓ ତଳେ ମଧ୍ୟ ଜଣେ ଭାଇ ଥିଲେ । ତାଙ୍କର ବଡ଼ଭାଇ ସଂଜୀବଚନ୍ଦ୍ର ଥିଲେ ବେଶ୍ ସାହିତ୍ୟପ୍ରେମୀ, ତତ୍କାଳୀନ ଯୁଗରେ ବଂଗଦର୍ଶନ ପତ୍ରିକାର ସୁଯୋଗ୍ୟ ସଂପାଦକ ।

ବାପାଙ୍କର ବଦଳି ଯୋଗୁଁ କିଶୋର ବଂକିମଚନ୍ଦ୍ରଙ୍କୁ ବିଦ୍ୟାଳୟ ଶିକ୍ଷାପାଇଁ ଭିନ୍ନ ଭିନ୍ନ ସ୍କୁଲରେ ପଢ଼ିବାକୁ ପଡ଼ିଥିଲା । ଯଥା– ସେ କଣ୍ଟଲପଡ଼ା, ମେଦିନାପୁର ପୁଣି କଣ୍ଟଲପଡ଼ାରେ ପଢ଼ି ସ୍କୁଲ ଶିକ୍ଷା ସମାପ୍ତ କରିଥିଲେ । ଛାତ୍ର ଭାବେ ସେ ଥିଲେ ମେଧାବୀ । ବଂଗଳା ଇଂରାଜୀ ଓ ସଂସ୍କୃତ ଭାଷାରେ ତାଂକର ଯଥେଷ୍ଟ ପ୍ରବେଶ ଥିଲା । ସେ ୧୮୪୯ ମସିହାରେ ହୁଗୁଳୀ କଲେଜରେ ପାଠ ପଢ଼ିଲେ । ଛାତ୍ରାବସ୍ଥାରେ ଶିକ୍ଷାନୁଷ୍ଠାନମାନଙ୍କରେ ସେ ଥିଲେ ସର୍ବପରିଚିତ ବ୍ୟକ୍ତିତ୍ୱ । କଲିକତା ପ୍ରେସିଡେନ୍ସି କଲେଜରେ ସେ ଆଇନ୍ ପାଠ ପଢ଼ିଲେ । ସନ ୧୮୫୮ରେ କଲିକତା ବିଶ୍ୱବିଦ୍ୟାଳୟରେ ଆଇନ୍ ସ୍ନାତକ ଉପାଧି ପାଇଲେ ସେ । କିଛି ଦିନ ସରକାରୀ ଚାକିରି ମଧ୍ୟ କଲେ ।

ବିଜ୍ଞାନକ୍ଷେତ୍ରରେ ବଂକିମଚନ୍ଦ୍ରଙ୍କର ଯଥେଷ୍ଟ ପ୍ରବେଶ ଥିଲା । ବିଜ୍ଞାନ କ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ଡଃ ମହେନ୍ଦ୍ର ଲାଲ ସରକାରଙ୍କର ଥିଲେ ସେ ଉତ୍ତମ ବନ୍ଧୁ । ବିଜ୍ଞାନ ଗବେଷଣାଗାର ପ୍ରତିଷ୍ଠା ପାଇଁ ଡଃ ସରକାର ଯଥେଷ୍ଟ ପାଣ୍ଠି ସଂଗ୍ରହ କରି ନ ପାରି ବିମର୍ଷ ଥିବାବେଳେ ବଂକିମଚନ୍ଦ୍ର ତାଂକୁ ସହଯୋଗର ହାତ ବଢ଼ାଇ ଦେଇଥିଲେ । ଆଗରୁ ସୂଚନା ଦିଆଯାଇଛି ଯେ ବଂକିମଚନ୍ଦ୍ରଙ୍କର ବଡ଼ଭାଇ ସଂଜୀବଚନ୍ଦ୍ର ଥିଲେ ବଂଗ ଦର୍ଶନ ପତ୍ରିକାର ସଂପାଦକ । ସେହି ପତ୍ରିକା ଜରିଆରେ ବିଜ୍ଞାନ ଗବେଷଣାଗାର କରି ଏକ ମହନୀୟ କାର୍ଯ୍ୟପାଇଁ ନିବେଦନ ପତ୍ର ଛପାଇଲେ ବଂକିମଚନ୍ଦ୍ର । ସେହି ପ୍ରଚେଷ୍ଟାର ସୁଫଳରୁ ଗବେଷଣା ପରିଷଦ ଚଳିବା ଭଳି ଯଥେଷ୍ଟ ପାଣ୍ଠି ସଂଗ୍ରହ ହୋଇପାରିଥିଲା । ପ୍ରକାଶ ଥାଉ କି ଡଃ ସି.ଭି. ରମଣ ପରବର୍ତ୍ତୀ ଏଇ ଗବେଷଣାଗାର ଉପଯୋଗ କରିଥିଲେ । କହିବା ବାହୁଲ୍ୟ ଯେ ଡଃ ରମଣ ପଦାର୍ଥ ବିଜ୍ଞାନ କ୍ଷେତ୍ରରେ ନୋବେଲ ପୁରସ୍କାର ଲାଭ କରିଥିଲେ ।

ବଂକିମଚନ୍ଦ୍ରଙ୍କର ପ୍ରଥମ କଥା ସାହିତ୍ୟ ପୁସ୍ତକ ହେଲା 'ରାଜମୋହନର ପତ୍ନୀ' (ପ୍ରକାଶନ, ଖ୍ରୀ.୧୮୬୪) ପରବର୍ତ୍ତୀ ବିଶେଷ ଜଣାଶୁଣା ଉପନ୍ୟାସ ଥିଲା– ଦୁର୍ଗେଶନନ୍ଦିନୀ (୧୮୬୫ ଖ୍ରୀ.) କପାଳ କୁଣ୍ଡଳ (ଖ୍ରୀ.୧୮୬୬) ଏହାପରେ ଅନେକ ଲେଖା । ସନ ୧୮୮୨ ମସିହାରେ ପ୍ରକାଶିତ ହେଲା ଆନନ୍ଦ ମଠ । ଯେଉଁଥିରେ ସନ୍ନିହିତ ହୋଇଥିଲା ଆମର ଆଲୋଚ୍ୟଗାନ (ଗୀତିକବିତା)– ବନ୍ଦେ ମାତରଂ । ଏହା ଥିଲା ଏକ ରାଜନୈତିକ ଉପନ୍ୟାସ ।

ସନ୍ନ୍ୟାସୀ ସତ୍ୟାନନ୍ଦଜୀଙ୍କ ଦ୍ୱାରା ପ୍ରଭାବିତ ହୋଇ ଦଳେ ଦେଶପ୍ରେମୀ ଯୁବକ ସ୍ୱାଧୀନତା ପାଇଁ ଲଢୁଥିଲେ । ବିଦେଶୀ ଶାସନରୁ ଦେଶକୁ ମୁକ୍ତ କରିବା ଥିଲା ସେମାନଙ୍କର ନିଶା । ସେମାନେ ନିଜକୁ ଦେଶର ସନ୍ତାନ ବୋଲି ପରିଚୟ ଦେଉଥିଲେ । ଜଙ୍ଗଲ ଭିତରେ ଥିଲା ଏକ ମଠ । ତାହାର ନାମ ହେଲା ଆନନ୍ଦ ମଠ । ତାହା ଥିଲା ସନ୍ତାନଗଣଙ୍କର ମୁଖ୍ୟ କାର୍ଯ୍ୟାଳୟ । ଏହା ଏକ ଗୁପ୍ତ ସଂଗଠନର ପରିଚାଳନା କରୁଥିଲା । ସନ୍ତାନଗଣ ଥିଲେ ସେ ଗୁପ୍ତ ସଂଗଠନ ସଭ୍ୟ ।

ଅଷ୍ଟାଦଶ ଶତାବ୍ଦୀରେ ବଂଗଳାରେ ଦୁର୍ଭିକ୍ଷ ପଡ଼ିଥିଲା । ଖାଦ୍ୟ ଅନାଟନରୁ ଲୋକେ ଭୋକରେ ଆଉଟୁ ପାଉଟୁ ହେଉଥିଲେ । କ୍ଷୁଧାରେ ଆତୁରତାର କରୁଣ ଚିତ୍ର ଆନନ୍ଦ ମଠ ଉପନ୍ୟାସରେ ସୁସ୍ପଷ୍ଟ ଅଟେ । ଏଥିରେ ସଂତାନଗଣଂକର ସଶସ୍ତ୍ର ବିପ୍ଲବର ପ୍ରତିଫଳନ ହୋଇଅଛି । ଏହି ଉପନ୍ୟାସରେ ଜାତୀୟତା ଦେଶପ୍ରେମ, ଧର୍ମ ତଥା ସମାଜର ତତ୍କାଳୀନ ଚିତ୍ରର ଗଭୀର ଅନୁଶୀଳନ କରି ବଂକିମଚନ୍ଦ୍ର ଯୁଗଜୟୀ ଅଟନ୍ତି । କଥାସାହିତ୍ୟ ତଥା ଉପନ୍ୟାସ ରଚନା କ୍ଷେତ୍ରରେ ବଂକିମଚନ୍ଦ୍ରଙ୍କୁ ଟପିଗଲାଭଳି ବ୍ୟକ୍ତିତ୍ୱ ଦିଶନ୍ତି ନାହିଁ । ଏହି ସାହିତ୍ୟ ସମ୍ରାଟ୍ ତଥା ବହୁମୁଖୀ ପ୍ରତିଭାଧାରୀ ବଂକିମଚନ୍ଦ୍ର ଚାଟାର୍ଜୀଙ୍କର ଦେହାବସାନ ଘଟେ ମାତ୍ର ୫୬ ବର୍ଷ ବୟସରେ ସନ ୧୮୯୪ ମସିହାରେ । ତାଂକର ରଚିତ ବଂଦେ ମାତରମ୍ ... ରାଷ୍ଟ୍ରଗାନ ଭାବେ ବହୁମାନିତ । ଅତଏବ ବଂକିମ ଚନ୍ଦ୍ର ଅମର ଅଟନ୍ତି ।

**ସହାୟକ ପୁସ୍ତକ :**

1. National Symbols- Vande Mataram, CCRT Publication, New Delhi-110075



ସେକ୍ଟର – ୨/୪୨୬
ନୀଳାଦ୍ରୀ ବିହାର, ଭୁବନେଶ୍ୱର–୨୧

# ଭାରତୀୟ ସମ୍ବିଧାନର ସୌଗନ୍ଧ ଓ ସୌଷ୍ଠବ : ଏକ ବିଦଗ୍ଧ ଅନୁଭବ

ଜେନାମଣି ଲକ୍ଷ୍ମୀକାନ୍ତ

ଏକ ସ୍ୱାଧୀନ ଓ ସାର୍ବଭୌମ ରାଷ୍ଟ୍ରର ରାଷ୍ଟ୍ରସଞ୍ଚାଳନା ପରିପ୍ରେକ୍ଷୀରେ ରାଜନୈତିକ ପ୍ରକ୍ରିୟାର ମୌଳିକ ଢାଞ୍ଚା ତଥା ଲୋକାନୁଶାସନର ପଦ୍ଧତି କଣ ହେବ ତାହା ଲିପିବଦ୍ଧ ହୋଇଥାଏ । ରାଷ୍ଟ୍ରର ପ୍ରମୁଖ ଅଙ୍ଗ ଓ ବିଭବ ଯଥା ରାଜ୍ୟ ବିଧାୟିକା, କାର୍ଯ୍ୟପାଳିକା ଏବଂ ନ୍ୟାୟପାଳିକା, କ୍ଷମତା କର୍ତ୍ତବ୍ୟ, କ୍ଷମତା ପରିସର ଓ ଉତ୍ତରଦାୟ ଏବଂ ପାରସ୍ପରିକ ସମ୍ପର୍କ କଣ ହେବ ତା'ର ସବିଶେଷ ବିଧିବିଧାନ ସମ୍ପର୍କରେ ବ୍ୟବସ୍ଥାର ଉଲ୍ଲେଖ ଥାଏ । ଏକ ସାର୍ବଭୌମ ଗଣତନ୍ତ୍ରରେ ଲୋକଶକ୍ତି ହିଁ ହେଉଛି ମୂଳାଧାର । ଏଣୁ ରାଜନୀତି ବିଜ୍ଞାନୀ ଲାସ୍କିଙ୍କ ନିର୍ଣ୍ଣୟ ହେଉଛି– ''ଗଣତନ୍ତ୍ର ଲୋକଙ୍କ ପାଇଁ, ଲୋକଙ୍କ ଦ୍ୱାରା ଏବଂ ଲୋକ କର୍ତ୍ତୃକ : ଅର୍ଥାତ୍ ଲୋକେ ହିଁ ନିଜର ଶାସକ ।''

୧୯୪୭ ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନତା ଲାଭର ଠିକ୍ ୩ ବର୍ଷ ପରେ ୧୯୫୦ ଜାନୁଆରୀ ୨୬ ରେ ଆମେ ଆମର ନିଜସ୍ୱ ସମ୍ବିଧାନରେ ନିଜ ନିଜକୁ ପ୍ରତ୍ୟର୍ପିତ ଓ ଅଙ୍ଗୀକୃତ କଲୁ । ଅଗଷ୍ଟ ୧୫ ସ୍ୱାଧୀନତା ଦିବସ ରୂପେ ପାଳିତ ହେଉଥିବା ବେଳେ ଏହା ସମ୍ବିଧାନ ପ୍ରଚଳନର ସ୍ୱନକ୍ଷତ୍ର ତଥା ଗଣରାଜ୍ୟ ଦିବସ ରୂପେ ପାଳିତ ହେଉଛି । ଆମେ କେବଳ ସ୍ୱାଧୀନ ରାଷ୍ଟ୍ର ବା ଏକ ଉତ୍ତରଣଶୀଳ ବୃହତ୍ତର ପ୍ରଜାତନ୍ତ୍ରର ଗୌରବାନ୍ୱିତ ଉତ୍ତରଦାୟାଦ ନୁହେଁ, ପରନ୍ତୁ ବିଶ୍ୱର ସବୁଠାରୁ ସୁଦୀର୍ଘ ଲିପିବଦ୍ଧ ସମ୍ବିଧାନର ସୁଯୋଗ୍ୟ ନାଗରିକ ରୂପେ ବିଶ୍ୱ ଦରବାରରେ ସୁପରିଚିତ । ଏହା ଆମ ପାଇଁ ମୁକ୍ତିବେଦ ଏବଂ ୬୨ ତମ ସ୍ୱାଧୀନତା ଦିବସର ଏହି ମହାର୍ଘ ତିଥିରେ ସେହି ମହାନ୍ ମୁକ୍ତିବେଦ ସମ୍ପର୍କରେ କିଛି ମନ୍ଥନ ଓ ଆତ୍ମନିରୀକ୍ଷଣ କରିବା ପାଇଁ ଏକ ପ୍ରକୃଷ୍ଟ ଅବକାଶ । ଏଥିରେ ଦ୍ୱିମତ ନ ଥାଇପାରେ ।

ଭାରତୀୟ ସମ୍ବିଧାନ ଯେଭଳି ବିଶାଳକାୟ ଏହାର ପ୍ରଣୟନ ବା ନିର୍ମାଣ ପ୍ରକ୍ରିୟା ସେଭଳି ସୁଦୀର୍ଘ ସ୍ୱୀକୃତ । ସମ୍ବିଧାନ ପ୍ରଣୟନ ସଭାକୁ ଏହି ସମ୍ବିଧାନର ରୂପରେଖ ଦେବା ପାଇଁ ପ୍ରାୟ ୨ ବର୍ଷ ୧୧ ମାସ ୧୮ ଦିନ ଲାଗିଥିଲା । ଏଥିପାଇଁ ଗଠିତ କ୍ୟାବିନେଟ୍ ମିସନ ଯୋଜନାନୁଯାୟୀ ୧୯୪୬ରେ ଅପ୍ରତ୍ୟକ୍ଷ ରୂପେ ରାଜ୍ୟ ବିଧାନ ପରିଷଦର ଅଙ୍ଗୀକାର ଆହ୍ୱାନ କରାଯାଇଥିଲା । ଏହି ସମ୍ବିଧାନ ସଭାରେ ମୋଟ ୩୮୯ ଜଣ ସଦସ୍ୟ ଥିଲେ । ଇତ୍ୟବସରରେ ପାକିସ୍ଥାନ ବିଭାଜନ ହେତୁ ୧୯୪୭ ଅକ୍ଟୋବର ୩୧ ତାରିଖରେ ନିର୍ବାଚିତ ସଦସ୍ୟଙ୍କ ସଂଖ୍ୟା ୨୯୯ ରେ ସୀମିତ ରହିଥିଲା । ୧୯୪୯ ନଭେମ୍ବର ୨୬ ରେ ଅନୁଷ୍ଠିତ ସାମ୍ବିଧାନିକ ସଭାରେ ଉପସ୍ଥିତ ୨୪୮ ସଦସ୍ୟ ସମ୍ବିଧାନରେ ନିଜ ନିଜର ସ୍ୱାକ୍ଷର ଲିପିବଦ୍ଧ କରିଥିଲେ ।

ସ୍ୱାଧୀନତା ପ୍ରାପ୍ତିର ବର୍ଷକ ପୂର୍ବରୁ, ୧୯୪୬ ଡିସେମ୍ବର ୧୧ ତାରିଖ ଦିନ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କୁ ସମ୍ବିଧାନ ସଭାର ସ୍ଥାୟୀ ଅଧ୍ୟକ୍ଷ ରୂପେ ନିର୍ବାଚିତ କରାଯାଇଥିଲା । ୧୯୪୬ ଡିସେମ୍ବର ୧୩ ତାରିଖରେ ପଣ୍ଡିତ ଜବାହରଲାଲ ନେହେରୁ ସମ୍ବିଧାନ ସଭାରେ ଉଦ୍ଦେଶିକା ପ୍ରସ୍ତାବ ଆଗତ କରି ସମ୍ବିଧାନ ପ୍ରଣୟନର ବିଧିବଦ୍ଧ ପ୍ରକ୍ରିୟାର ମହୁରତ କରିଥିଲେ । ଏହା ୧୯୪୭ ଜାନୁଆରୀ ୨୨ରେ ସର୍ବସମ୍ମତକ୍ରମେ ଗୃହୀତ ହୋଇଥିଲା । ସମ୍ବିଧାନ ପ୍ରଣୟନର ଜଟିଳ ଓ ବିରାଟ ପ୍ରକ୍ରିୟାକୁ ଶୃଙ୍ଖଳିତ ଏବଂ ସମୟାନୁବର୍ତ୍ତୀ କରିବାର୍ଥେ ପ୍ରକ୍ରିୟା ସମିତି, ବାର୍ତ୍ତା ସମିତି, ସଞ୍ଚାଳକ ସମିତି, କାର୍ଯ୍ୟ ସମିତି ଆଦି ବିଭିନ୍ନ ସ୍ୱତନ୍ତ୍ର ସମିତିମାନ ଗଠିତ ହୋଇ ଦାୟ ନିଷ୍ପାଦନରେ ବ୍ରତୀ ହୋଇ ରହିଥିଲେ ।

ବିଭିନ୍ନ ସମିତିର ପ୍ରମୁଖଙ୍କୁ ନେଇ ସମ୍ବିଧାନ ଚିଠା, ଖସଡ଼ା ବା ପାଣ୍ଡୁଲିପି ସମିତି (Drafting committee) ୧୯୪୭ ଅଗଷ୍ଟ ୧୯ ତାରିଖରେ ଗଠିତ ହୋଇଥିଲା । ଡକ୍ଟର ଭୀମରାଓ ଆମ୍ବେଦକର ଏହାର ଅଧ୍ୟକ୍ଷ ରୂପେ ମନୋନୀତ ହୋଇଥିଲେ ଏବଂ ନିର୍ବାଚିତ ସଦସ୍ୟମାନେ ଥିଲେ ଏନ୍ ଗୋପାଲ୍ ସ୍ୱାମୀ, କେ. ଏମ୍. ମୁନ୍‌ସୀ, ବି. ଏଲ୍.ମୋରେ, ଡି.ପି. ଖୈତାନ୍‌ଙ୍କ ସ୍ୱର୍ଗବାସ ଉତ୍ତାରୁ ତାଙ୍କ ସ୍ଥାନରେ କୃଷ୍ଣମାଚାରୀଙ୍କୁ ସମ୍ବିଧାନ ଚିଠା ସମିତିର ଅନ୍ୟତମ ସଦସ୍ୟ ରୂପେ ନିର୍ବାଚିତ କରାଯାଇଥିଲା ।

ସମ୍ବିଧାନ ସଭାର ୩ୟ ପର୍ଯ୍ୟାୟ ବୈଠକ ୧୯୪୯ ନଭେମ୍ବର ୧୪ ତାରିଖଠାରୁ ୨୬ ତାରିଖ ଯାଏଁ ବସିଥିଲା । ୧୯୪୯ ନଭେମ୍ବର ୨୬ରେ ସର୍ବସମ୍ମତିକ୍ରମେ ଗୃହୀତ ସମ୍ବିଧାନ ପ୍ରସ୍ଥରେ ସଭାପତି ଓ ଉପସ୍ଥିତ ସଦସ୍ୟବୃନ୍ଦ ନିଜ ନିଜର ସ୍ୱାକ୍ଷର ଦରଜ କରିଥିଲେ ଓ ବସ୍ତୁତଃ ଏହି ଦିନ ହିଁ ସମ୍ବିଧାନ ସଭା ଏହା ନବପ୍ରଣୀତ ସମ୍ବିଧାନକୁ ସ୍ୱୀକୃତି ପ୍ରଦାନ କରିଥିଲା । ନାଗରିକତା, ନିର୍ବାଚନ ଏବଂ ମଧ୍ୟବର୍ତ୍ତୀକାଳୀନ ସଂସଦ ସମ୍ବନ୍ଧିତ ଉପବନ୍ଧ ୨୬ ନଭେମ୍ବର ୧୯୪୯ରେ ଆମ ସମ୍ବିଧାନ ସହ ସଂଯୋଜିତ କରାଗଲା ।

ବହୁ ପ୍ରତୀକ୍ଷିତ ସ୍ୱପ୍ନ ଓ ସ୍ୱପ୍ନଦ୍ରଷ୍ଟାଙ୍କୁ ସାକାର କରି ପୂର୍ଣ୍ଣାଙ୍ଗ ସମ୍ବିଧାନ ପରିଶେଷରେ ୧୯୫୦ ଜାନୁୟାରୀ ୨୬ ରେ ଲାଗୁ କରାଯିବା ସଙ୍ଗେ ସଙ୍ଗେ ସ୍ୱାଧୀନ ଭାରତକୁ ସାର୍ବଭୌମ ସାଧାରଣତନ୍ତ୍ର ରୂପେ ବିଧିବଦ୍ଧ ଘୋଷଣାରୂପେ ପାଳନ କରାଯାଇଥିଲା । ପ୍ରଥମ ରାଷ୍ଟ୍ରପତି ରୂପେ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କୁ ବିଧିବଦ୍ଧ ଭାବେ ନିଯୁକ୍ତ କରାଗଲା । ଆଗାମୀ ସଂସଦୀୟ ନିର୍ବାଚନ ଯାଏଁ ଏହି ସମ୍ବିଧାନ ସଭାକୁ ଭାରତୀୟ ସଂସଦର ମାନ୍ୟତା ପ୍ରଦାନ କରାଯାଇଥିଲା, ସାମ୍ବିଧାନିକ ଶୂନ୍ୟତା ଅନ୍ତରାୟକୁ ଅତିକ୍ରମଣ କରିବା ପାଇଁ ।

ଭାରତୀୟ ପ୍ରଜାତନ୍ତ୍ରର ମୁକ୍ତିବେଦର ମହାନ୍ ସମ୍ବିଧାନ ପ୍ରଣୟନ ପଛରେ ଯେଉଁମାନଙ୍କର ପ୍ରମୁଖ ଓ ସକ୍ରିୟ ଅବଦାନ ଚିରସ୍ମରଣୀୟ ଏବଂ ଉଲ୍ଲେଖନୀୟ ସେମାନେ ହେଲେ– ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ମୌଲାନା ଅବୁଲ କାଲାମ ଆଜାଦ, ଆଚାର୍ଯ୍ୟ ଜେ.ବି. କୃପାଳିନୀ,, ଟି.ଟି. କୃଷ୍ଣମାଚାରୀ, ଡକ୍ଟର ଭୀମରାଓ ଆମ୍ବେଦକର । ବାବା ସାହେବ ସମ୍ବିଧାନର ପ୍ରମୁଖ ସ୍ଥପତି ଓ ସୂତ୍ରଧର ରୂପେ ସୁବିଦିତ । ଏହି ସମ୍ବିଧାନର ବିଶେଷତ୍ୱ ହେଉଛି ଯେ ନ୍ୟାୟପାଳିକା ଏହାର ଉଦ୍ଦେଶିକା (preamble) ପ୍ରବର୍ତ୍ତିତ କରିପାରିବ ନାହିଁ । କେବଳ ଯେଉଁଠାରେ ଭାଷାର କ୍ଲିଷ୍ଟତା ଉପଲବ୍ଧ ହେବ ସେ କ୍ଷେତ୍ରରେ ଉଦ୍ଦେଶିକାର ସହାୟତା ନିଆଯାଇପାରେ । ଏହି ଉଦ୍ଦେଶିକାର ସମାଜବାଦୀ ଧର୍ମନିରପେକ୍ଷ ଏବଂ ଅଖଣ୍ଡତା ଶବ୍ଦ ୧୯୭୬ରେ ୪୨ତମ ସମ୍ବିଧାନ ସଂଶୋଧନ ବଳରେ ଯୋଡ଼ାଯାଇଅଛି । ଏକ ବିରାଟ କାରୁକାର୍ଯ୍ୟର ସୂଚାରୁ ମୁଖଶାଳା ରୂପେ ପ୍ରତୀୟମାନ ଉଦ୍ଦେଶିକାରେ ପରିଭାଷିତ, ସମ୍ପୂର୍ଣ୍ଣ ପ୍ରଭୁତ ସମ୍ପନ୍ନ, ସମାଜବାଦୀ, ଧର୍ମନିରପେକ୍ଷ, ଲୋକତନ୍ତ୍ରାତ୍ମକ ଗଣରାଜ୍ୟ, ସାମାଜିକ, ଆର୍ଥିକ ଓ ରାଜନୈତିକ ନ୍ୟାୟ ଅଭିବ୍ୟକ୍ତ, ଧର୍ମ ଉପାସନାର ସ୍ୱାତନ୍ତ୍ରତା ପ୍ରତିଷ୍ଠା ତଥା ଅବସରପାଇଁ ସମତା, ବ୍ୟକ୍ତିର ଗାରିମା, ରାଷ୍ଟ୍ରୀୟ ଏକତା ଏବଂ ଅଖଣ୍ଡବାଦୀ ପ୍ରମୁଖ ଶବ୍ଦର ପ୍ରୟୋଗ ଯେଭଳି ନାନ୍ଦନିକ ସେଭଳି ଅର୍ଥପୂର୍ଣ୍ଣ ମଧ୍ୟ ।

ଆମ ସମ୍ବିଧାନରେ ଏହି ଉଦ୍ଦେଶିକା ବ୍ୟତୀତ ମୋଟ ୩୯୫ଟି ଅନୁଚ୍ଛେଦ ଓ ୮ଟି ଅନୁସୂଚୀ ସ୍ଥାନିତ । ଉଦ୍ଦେଶିକାରେ ସାମ୍ବିଧାନିକ ଧ୍ୟେୟ, ଗାରିମା ଓ ଆଦର୍ଶର ସଂକ୍ଷିପ୍ତ ଉଲ୍ଲେଖ ରହିଛି । ବ୍ୟକ୍ତି ସ୍ୱାଧୀନତା ଓ ବିକାଶକୁ ସୁନିଶ୍ଚିତ କରିବା ପାଇଁ ୩ୟ ଭାଗରେ ମୌଳିକ ଅଧିକାର, ୪ର୍ଥ ଭାଗରେ ନୀତି ନିର୍ଦ୍ଦେଶକ ତତ୍ତ୍ୱ, ସଂଘୀୟ କାର୍ଯ୍ୟପାଳିକା, ସଂସଦ, ରାଜ୍ୟ କାର୍ଯ୍ୟପାଳିକା, ବ୍ୟବସ୍ଥାପନା ନ୍ୟାୟପାଳିକା, ଜରୁରିକାଳୀନ ପରିସ୍ଥିତି, ପଞ୍ଚାୟତିରାଜ, ବିବିଧ ଆୟୋଗାଦି ସମ୍ପର୍କିତ ସବିଶେଷ ଉଲ୍ଲେଖ ରହିଛି ।

ଆମ ସମ୍ବିଧାନର ବିଶେଷତ୍ୱ ହେଉଛି ଏହା କେବଳ ରାଜନୈତିକ ନୁହେଁ, ପରନ୍ତୁ ସାମାଜିକ ପ୍ରଜାତନ୍ତ୍ରର ସାମୂହିକ କଲ୍ୟାଣରେ ପ୍ରତିଷ୍ଠିତ ଲୋକହିତରେ ଏହାର ସମାଜବାଦୀ ସମାଜ ଢାଞ୍ଚା, ନୀତିନିୟାମକ ନିର୍ଦ୍ଧାରିତ । ସ୍ୱାଧୀନ ଓ ନିରପେକ୍ଷ ନ୍ୟାୟ ପ୍ରଦାନ କ୍ଷେତ୍ରରେ ନ୍ୟାୟପାଳିକାର ବରିଷ୍ଠତା (Superiority) ଆଦି ଯେଭଳି ହିତକାରୀ, ସେଭଳି ଆଶାସଂଚାରୀ । ସମ୍ବିଧାନକୁ ଗୁଣାତ୍ମକ ଓ ସମୟୋପଯୋଗୀ କରିବା ଉଦ୍ଦେଶ୍ୟରେ ପ୍ରଥମ ସଂଶୋଧନ ୧୯୫୧ରେ କରାଯାଇଥିଲା ଓ ୪୨, ୪୩ ତମ ସଂଶୋଧନ ମହତ୍ତ୍ୱପୂର୍ଣ୍ଣ ସଂଶୋଧନ ରୂପେ ସୁବିଦିତ । ଅଦ୍ୟାବଧି ୯୪ ଥର ଆମ ସମ୍ବିଧାନ ସଂଶୋଧନ, ସମାହିତ ହୋଇଥିବା ପ୍ରକାଶ ।

ଆମ ସମ୍ବିଧାନ ସ୍ଥାପତ୍ୟର ଏକ ବିଶାଳ କାରୁକାର୍ଯ୍ୟ ଓ ତା'ର ..... ଉଦ୍ଦେଶିକା .... ଏକ ଭାସ୍କର୍ଯ୍ୟ ମନୋଜ୍ଞ ମୁକ୍ତୁର ବା ମୁଖଶାଳା ସଦୃଶ । ଉଦ୍ଦେଶିକାରେ ସୂଚୀତ ମୌଳିକ ଅଧିକାର ଏବଂ ନିର୍ଦ୍ଦେଶ ତତ୍ତ୍ୱ ସମଗ୍ର ସମ୍ବିଧାନର ମୂଳାଧାର ରୂପେ ପ୍ରବର୍ତ୍ତିତ । ସଂସଦୀୟ ଗଣତନ୍ତ୍ର ଗଣଭୋଟ ସ୍ୱାଧୀନ ନ୍ୟାୟପାଳିକା, ଏକ ନାଗରିକତ୍ୱ କ୍ଷମତାର ସନ୍ତୁଳନ ବଣ୍ଟନ ବ୍ୟବସ୍ଥା ମଧ୍ୟରେ ରାଜନୈତିକ ପ୍ରଜାତନ୍ତ୍ର ପ୍ରକ୍ରିୟାରେ ନାଗରିକ ନାଗରିକତ୍ୱ ସାମ୍ବିଧାନିକ ମୌଳିକ ମୂଲ୍ୟବୋଧର ବିକାଶରେ ଅଙ୍ଗୀକୃତ ଆମ ସମ୍ବିଧାନ । ଭାରତର ନାଗରିକତ୍ୱ ସାମ୍ବିଧାନିକ ମୌଳିକ ମୂଲ୍ୟବୋଧ ଓ ଗଣତାନ୍ତ୍ରିକ ପ୍ରକ୍ରିୟାରେ ସ୍ୱକୀୟ ଅଂଶ ଗ୍ରହଣ ଏବଂ ସମସ୍ତ ଶକ୍ତି ବିନିମୟରେ ରାଷ୍ଟ୍ରର ସାର୍ବଭୌମତ୍ୱ ବଜାୟ ରଖିବା ପ୍ରତି ଏଥିରେ ସମୁଚିତ ପ୍ରାଧାନ୍ୟ ଆରୋପିତ । ସମ୍ବିଧାନ ଅଙ୍ଗୀକୃତ ସମାଜବାଦର ରୂପାୟନାର୍ଥେ ସମାନ ସୁଯୋଗ ପାତର ଅନ୍ତର ଓ ଶୋଷଣର ନିବାରଣ ଏବଂ ଅର୍ଥନୈତିକ ନ୍ୟାୟପ୍ରଦାନ ଆମ ସମ୍ବିଧାନର ଅନ୍ୟ ଏକ ବଳିଷ୍ଠ ପ୍ରଭାବ । ଆମ ସମ୍ବିଧାନ ଯେଭଳି ଅତୁଳ୍ୟ, ସେଭଳି ମହାନ । ଏହା ଏକ ବିଶାଳ ସେତୁ ସମ୍ପର୍କର ନାଗରିକତ୍ୱ ଓ ରାଷ୍ଟ୍ର ନିର୍ମାଣ ପ୍ରକ୍ରିୟାର ଧର୍ମନିରପେକ୍ଷତା ତଥା ଧର୍ମାଚରଣରେ ସ୍ୱାଧୀନତା ପରିପ୍ରେକ୍ଷୀରେ ନାଗରିକଙ୍କ ଦାୟ ନିଷ୍ପାଦନ ବରଜିତ ନାଗରିକଙ୍କର ମୌଳିକ ଅଧିକାର ଯଥା- ସମାନତା ଅଧିକାର, ବୈଷମ୍ୟର ନିଷିଦ୍ଧକରଣ, ନିଯୁକ୍ତି କ୍ଷେତ୍ରରେ ସମାନ ସୁଯୋଗ ଅଧିକାର, ବାକ୍ ସ୍ୱାଧୀନତାଦି ସ୍ୱାଧିକାର, ଜୀବନ ଓ ବ୍ୟକ୍ତିତ୍ୱ, ସ୍ୱାଧୀନତା ଅଧିକାର, ଶୋଷଣ ବିରୋଧରେ ଅଧିକାର, ଧର୍ମଗତ ଅଧିକାର, ସାଂସ୍କୃତିକ ଓ ଶିକ୍ଷା ଅଧିକାର ସମେତ ନାଗରିକର ସାମ୍ବିଧାନିକ ପ୍ରତିକାର ଅଧିକାରର ସୁରକ୍ଷା କବଚ ଆମ ସମ୍ବିଧାନରେ ସୁନିରୂପିତ ଓ ଅଙ୍ଗୀକୃତ ।

ସମ୍ବିଧାନକୁ ଏକ ମୁଦ୍ରାରୂପେ ବିଚାରିଲେ ଏହାର ଗୋଟିଏ ପାର୍ଶ୍ୱ ସ୍ୱାଧିକାର ହୋଇଥିବା ବେଳେ ଅପର ପାର୍ଶ୍ୱ ଦାୟ ନିଷ୍ପାଦନ ବା କର୍ତ୍ତବ୍ୟ ଅଟେ । ଗୋଟିଏ ଘଷରା ପାର୍ଶ୍ୱକୁ ବାଦ୍‌ଦେଇ, ମୁଦ୍ରା ତାହାର ବ୍ୟବହାରିକ ମୂଲ୍ୟ ଯେ ହରାଇ ବସିଥାଏ । ଏହା ଆମର ଭୁଲିବା ଅନୁଚିତ । ଭାରତୀୟ ସମ୍ବିଧାନର ୫୧(କ) ଅନୁଚ୍ଛେଦରେ ଉଲ୍ଲିଖିତ ମୌଳିକ କର୍ତ୍ତବ୍ୟକୁ ଭାରତର ପ୍ରତ୍ୟେକ ଦାୟିତ୍ୱବାନ ନାଗରିକ ସଂବିଧାନକୁ ମାନି ଚଳିବା ଏବଂ ଏହାର ଆଦର୍ଶ ଓ ଅନୁଷ୍ଠାନଗୁଡ଼ିକ ପ୍ରତି ତଥା ରାଷ୍ଟ୍ରୀୟ ପତାକା, ରାଷ୍ଟ୍ରୀୟ ସଂଗୀତ, ରାଷ୍ଟ୍ରୀୟ ପ୍ରତିବାଦୀ ପ୍ରତି ସମୁଚିତ ସମ୍ମାନ ପ୍ରଦର୍ଶନ କରିବା ବିଧେୟ । ଆମର ସ୍ୱାଧୀନତା ସଂଗ୍ରାମକୁ ଅନୁପ୍ରାଣିତ କରିଥିବା ମହାନ୍ ଆଦର୍ଶଗୁଡ଼ିକ କାୟମନୋବାକ୍ୟର ସ୍ମରଣ ଓ ଅନୁସରଣ କରିବାରେ ବିମୁଖ ହେବା ଅସ୍ପୃହଣୀୟ । ଏକରାଷ୍ଟ୍ର ଏକପ୍ରାଣ ଚେତନାରେ ଅନୁବନ୍ଧିତ ରାଷ୍ଟ୍ରର ସାର୍ବଭୌମତ୍ୱ ଏକତା ଓ ଅଖଣ୍ଡତା ବିଦାୟ ସୁରକ୍ଷା ଏବଂ ପୃଷ୍ଠପୋଷକତାରେ ସହାୟତା ସମେତ ଦେଶରକ୍ଷା ତଥା ଆହ୍ୱାନ ପାଇବା କ୍ଷଣି ଦେଶ ସେବାରେ ଯୋଗ ଦେବା ସହ, ଜନଗଣଙ୍କ ମଧ୍ୟରେ ଧର୍ମଗତ, ଭାଷାଗତ ଏବଂ ଆଞ୍ଚଳିକ ବା ବିଭାଗଗତ ବୈଚିତ୍ର୍ୟ ନିର୍ବିଶେଷରେ ମିଳାମିଶା ଓ ସାର୍ବଜନିକ ଭ୍ରାତୃତ୍ୱ ବୋଧ ଜାଗ୍ରତ କରିବା, ମହିଳା ବିରୋଧୀ ଅମର୍ଯ୍ୟାଦାଜନକ ପ୍ରଥା ପରିହାର କରିବା ପ୍ରତ୍ୟେକ ନାଗରିକର ମୌଳିକ କର୍ତ୍ତବ୍ୟ ଏବଂ ଗୁରୁଦାୟ ରୂପେ ଅଂଗୀକୃତ । ହିଂସା ପରିହାର ବ୍ୟତୀତ ସର୍ବସାଧାରଣ (ରାଷ୍ଟ୍ରୀୟ) ସମ୍ପତ୍ତିକୁ ସୁରକ୍ଷିତ ରଖିବା ସଂଗେ ସଂବିଧାନ ନିରୂପିତ ମୌଳିକ କର୍ତ୍ତବ୍ୟ ନିଷ୍ପାଦନ ପରିପ୍ରେକ୍ଷୀରେ ଦେଶ ଯେପରି ଅବିରତ ଭାବରେ ପ୍ରଚେଷ୍ଟା ଓ କୃତିତ୍ୱର ଉଚତର ଶିଖରକୁ ଉଠିପାରିବ ସେଥି ନିମନ୍ତେ ପ୍ରତ୍ୟେକ ନାଗରିକ, ବ୍ୟକ୍ତିର ଓ ସାମୂହିକ କାର୍ଯ୍ୟକଳାପର ସକଳ ଦିଗରେ ସମୁଚିତ ଉତ୍କର୍ଷ ସାଧନରେ ବ୍ରତୀ ହେବା ଚାହି ।

ସ୍ୱାଧୀନତା ସମତା ଓ ନାଗରିକ ମର୍ଯ୍ୟାଦା ସମେତ ସାମାଜିକ, ଆର୍ଥିକ ଓ ରାଜନୈତିକ ନ୍ୟାୟପ୍ରଦାନରେ ଆମ ସମ୍ବିଧାନ ଅଂଗୀକୃତ ଏବଂ ଅନୁବନ୍ଧିତ । ପ୍ରସଂଗକ୍ରମେ ଆମେ ଆମ ସଂବିଧାନରେ ପ୍ରମୁଖ ସ୍ଥପତି ଡକ୍ଟର ଆମ୍ବେଦକରଙ୍କ ସେହି କାଳଜୟୀ ଚେତାବନୀଟିକୁ ଭୁଲିଯିବା ଅନୁଚିତ ହେବା ଯେ- ''Justice as a value : Social, Economic and political, as enshrined in our constitution, is based on the basic citizenship values and recognition of the fact that unless justice in all situation is assured, exploitation of man by man, which has been the curse of society, shall not cease'' ।

ପ୍ରସଙ୍ଗକ୍ରମେ ଏହା ଉଲ୍ଲେଖନୀୟ ଯେ ଆମ ନାଗରିକତ୍ୱର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଉତ୍ତରଦାୟ ହେଉଛି, କେବଳ ସମ୍ବିଧାନ ଆମକୁ କଣ ଦେଇଛି ନ ଦେଇଛି ତାକୁ ନେଇ ଚିଲାଇବା ନୁହେଁ । ପରନ୍ତୁ ସମ୍ବିଧାନ ପ୍ରଣୀତ ମୌଳିକ ଅଧିକାର ହାସଲ ପରିପ୍ରେକ୍ଷୀରେ ସନ୍ନିହିତ ପ୍ରତିଦାୟ ଓ କର୍ତ୍ତବ୍ୟ

ଆମେ କେତେ ନିଷ୍ପାଦନ କରିଛେ ସେ ପ୍ରଶ୍ନ ଆମେ ନିଜ ନିଜକୁ ପୁଚ୍ଛିବା ଚାହି ଦେଇଥିଲେ ପାଇ, ନୋହିଲେ ପଡ଼ିଆ ବାଡ଼ିରେ ଯଥା ଗୋଧନ ଚରାଇ । ଗଣତାନ୍ତ୍ରିକ ପ୍ରକ୍ରିୟାରେ ସକ୍ରିୟ ଅଂଶ ଗ୍ରହଣ ବା ଯୋଗଦାନକୁ ପରିହାସ କରି ଦୂରେଇ ରହିବାକୁ ପସନ୍ଦ କରୁଥିବା ଏବଂ ଉତ୍ତରଦାୟ ନିଷ୍ପାଦନ ବିମୁଖ ନାଗରିକଙ୍କ ଉଦାସୀନତା ତଥା ନିରଙ୍କୁଶ ଆବେଦନ ଯୋଗୁଁ ଲୋକତନ୍ତ୍ର ଅର୍ଥହୀନ ବା ନିରର୍ଥକ ହୋଇପଡ଼େ । ନାଗରିକ ସ୍ୱାଧୀକାର ଏବଂ କର୍ତ୍ତବ୍ୟ କେବଳ ବ୍ୟକ୍ତିବିଶେଷ ନାଗରିକ ନୁହନ୍ତି, ଗୋଷ୍ଠୀ ଏବଂ ନାଗରିକ ବୃନ୍ଦଙ୍କ ପାଇଁ ସର୍ବତୋଭାବେ ଅପରିହାର୍ଯ୍ୟ । ଯେଉଁ ସମାଜରେ ନାଗରିକ ନିଜ ସହ ଅନ୍ୟର ସୁରକ୍ଷା ଏବଂ କଲ୍ୟାଣ ସାଧନର ବିକାଶ ପାଇଁ ତ୍ୟାଗ ଓ ବଳିଦାନ ପାଇଁ ପ୍ରସ୍ତୁତ ନୁହନ୍ତି । ସେଠାରେ ନାଗରିକତ୍ୱର ମୂଲ୍ୟ ସ୍ୱତଃ ନିରର୍ଥକ ହୋଇପଡ଼େ । ଉତ୍କଳ ଗୌରବ ମଧୁସୂଦନ ଏଇଥିପାଇଁ ଯଥାର୍ଥରେ କହିଥିଲେ– ଜାତି ନନ୍ଦିଘୋଷ ଚଳିବକି ଭାଇ ସ୍ୱାର୍ଥକୁ ସାରଥି କଲେ – ଟାଣେ କିରେ ଗାଡ଼ି ଦାନାର ତୋବଡ଼ା ଘୋଡ଼ା ମୁହେଁ ବନ୍ଧା ଥିଲେ ।''

ଏହା ସୂଚନାଯୋଗ୍ୟ ଯେ– ୧୯୮୨ରେ ମାନ୍ୟବର ସର୍ବୋଚ୍ଚ ନ୍ୟାୟାଳୟର ଏହି ମର୍ମରେ ଏସ୍.ପି. ଗୁପ୍ତା ଏବଂ ଅନ୍ୟମାନେ ବନାମ ୟୁନିୟନ୍ ଅଫ୍ ଇଣ୍ଡିଆ ମାମଲା (AIR 1982 SC 0 149) ରେ ସମ୍ବିଧାନ ବିପୃତ୍ତି, ତର୍ଜମା ଓ ଗରିମା ସମ୍ପର୍କରେ ଏକ କ୍ରାନ୍ତିକାରୀ ରାୟରେ ଏହା ଚେତାଇ ଦେଇଛନ୍ତି– ''ଏକ ରାଷ୍ଟ୍ରର ସମ୍ବିଧାନ ନିଷ୍ପ୍ରାଣ ଗ୍ରନ୍ଥ ନୁହେଁ । ଏହା ଜୀବନ୍ତ ଦଲିଲ୍ ବା ଦସ୍ତାବିଜ୍ । ଭାରତର ମହାନ ସମ୍ବିଧାନ କେବଳ ଏକ ରାଜନୈତିକ ଅଥବା ବୈଧିକ ଦଲିଲ୍ (Document) ନୁହେଁ, ଏହା ବସ୍ତୁତଃ ନାଗରିକତ୍ୱ ମୂଲବୋଧର ଏକ ଅତୁଲ୍ୟ ଓ ଅମୂଲ୍ୟ ସମ୍ପଦ । (Incredible Document) ବୋଧହୁଏ ଏଇଥିପାଇଁ ରାଷ୍ଟ୍ରପିତା ଗାନ୍ଧିଜୀଙ୍କ ବକ୍ତବ୍ୟ ଓ ପରାମର୍ଶ ଥିଲା ।

ପ୍ରଜାତନ୍ତ୍ରର ସଫଳ ରୂପାୟନ ରାଷ୍ଟ୍ରନିର୍ମାଣ ଏବଂ ଯୋଗଦାନକାରୀ ନାଗରିକଙ୍କ ସକ୍ରିୟ ଅଂଶଗ୍ରହଣ ଉପରେ ପର୍ଯ୍ୟବସିତ ।'' ପ୍ରସଙ୍ଗକ୍ରମେ ଏହା ସୂଚନାଯୋଗ୍ୟ ଯେ ୭୩ ତମ ୭୪ ତମ ସମ୍ବିଧାନ ସଂଶୋଧନ ଓ ସଂଶୋଧିତ ବ୍ୟବସ୍ଥାନୁଯାୟୀ ସାଧାରଣ ନାଗରିକଙ୍କୁ ତୃଣମୂଳ ସ୍ତରରେ ସଶକ୍ତିକରଣ କରିବାର ପଥ ଏକ ଉନ୍ମୁକ୍ତ ପଥ । ଏହା ସେମାନଙ୍କୁ ପ୍ରଶାସନ ପ୍ରକ୍ରିୟାରେ ଯୋଗଦାନ ସମେତ ଆମ ପ୍ରଜାତନ୍ତ୍ରକୁ ଏକ ବାସ୍ତବ ଅଂଶ ଗ୍ରାହୀ ଗଣତନ୍ତ୍ରରେ ପୁନର୍ବିନ୍ୟାସ କରିବା ନିମିତ୍ତ ଏକ ମିଳିତ ଗୁରୁଦାୟ ଆମ ସମସ୍ତଙ୍କ କାନ୍ଧରେ ପ୍ରତ୍ୟାର୍ପିତ । ଏହା ବସ୍ତୁତଃ ସକଳ ନାଗରିକଙ୍କୁ ସାମାଜିକ, ଆର୍ଥିକ ଓ ରାଜନୈତିକ ନ୍ୟାୟ, ଚିନ୍ତା ସହ ଅଭିବ୍ୟକ୍ତିର ସ୍ୱାଧୀନତା, ଉପାସନାରେ ପ୍ରତ୍ୟୟ, ବିକାଶ ପାଇଁ ସମାନ ସୁଯୋଗ ଓ ମର୍ଯ୍ୟାଦା (Statute) ପ୍ରଦାନ ମାଧ୍ୟମରେ ଭ୍ରାତୃତ୍ୱଭାବ, ବ୍ୟକ୍ତି ଗାରିମା ତଥା ଜାତୀୟ ଏକତା ଓ ସଂହତିକୁ ସୁଦୃଢ଼ କରିବା ନିମିତ୍ତ ଅଭିପ୍ରେତ । ଏ ଦାୟ ଆପଣଙ୍କର ମୋର ଓ ସେମାନେ ଏବଂ ଆମ ସମଷ୍ଟିଙ୍କର । ଏଣୁ ଏଇଥିପାଇଁ ମିଳିତ ସହୋଦ୍ୟମ, ସକ୍ରିୟ ସହଯୋଗ, ସନ୍ତୁଳନ, ପାରସ୍ପରିକ ସହୃଦୟତା, ବୁଝାମଣା ଆମ ପ୍ରଜାତନ୍ତ୍ରର ସକଳ ଅଙ୍ଗ (organ) ମଧ୍ୟରେ ଯେପରି ଅପରିହାର୍ଯ୍ୟ ସେଭଳି ସର୍ବାଦୌ କରଣୀୟ । ସେମାନଙ୍କ ମଧ୍ୟରେ ସମୁଚିତ ସନ୍ତୁଳନ, ଗଭୀର ଆସ୍ଥା ରହିବା ବିଧେୟ, ଯେଉଁଠି ସନ୍ଦେହର ଅବକାଶ ନ ଥିବ । ଏଭଳି ଅବିଶ୍ୱାସ ଓ ସନ୍ଦେହର କାୟା ବିସ୍ତାର କେବଳ ବାଦବିସମ୍ବାଦ ସୃଷ୍ଟି ନୁହେଁ, ପରନ୍ତୁ ଏକ ରାଷ୍ଟ୍ରୀୟ ବିପର୍ଯ୍ୟୟକୁ ବାରାଂତରରେ ପ୍ରୋତ୍ସାହିତ କରିଥାଏ । ଆମେ ସ୍ୱାଧୀନ ଭାରତର ସକଳ ନାଗରିକଗଣ ଭାରତରେ ପ୍ରଜାତନ୍ତ୍ରର ପ୍ରୟୋଗ ଓ ପରୀକ୍ଷାଜନିତ ନିହିତ ମୂଲ୍ୟବୋଧ ସଂରକ୍ଷଣରେ ବିଶ୍ୱସ୍ତ ଭାବେ ସୁପର୍ଦ୍ଦ ଓ ଅଙ୍ଗୀକୃତ ହେବା ଏକାନ୍ତ ଅପରିହାର୍ଯ୍ୟ । ଏହାହିଁ ଉତ୍ତରୋତ୍ତର ଗଣତାନ୍ତ୍ରିକ ସଫଳତାର ପଥ ଓ ପାଥେୟ । ଆମ ସମ୍ବିଧାନର ଅନ୍ୟତମ ପ୍ରମୁଖ ବିଦ୍ଧାଣୀ ଓ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲଙ୍କର ଏହି ମର୍ମରେ ଆଜି ୬୨ ବର୍ଷ ପୂର୍ବେ ସମ୍ବିଧାନ ସଭାରେ ଦେଇଥିବା ଅଭିଭାଷଣର ସେଇ କାଳଜୟୀ ଚେତାବନୀଟିକୁ ଆମେ ଭୁଲିଯିବା ଅନୁଚିତ ।

ପ୍ରସଙ୍ଗକ୍ରମେ ୬୨ ତମ ଗଣରାଜ୍ୟ ଦିବସର ଏହି ମହାର୍ଘ୍ୟ ଅବସରରେ ଆମେ ଭୁଲିଯିବା ଅନୁଚିତ । ପୁଣ୍ୟଶ୍ଳୋକ ଗୋପବନ୍ଧୁଙ୍କର ସ୍ୱାରାଜ୍ୟ ଓ ସ୍ୱାଧୀନତା ସଂପର୍କିତ ସେହି ଲୋକପ୍ରିୟ ସୁଭଳକ୍ଷିତ କାବ୍ୟୋକ୍ତିକୁ । ସ୍ୱରାଜ୍ୟ ମାନବ ଜନ୍ମ ଅଧିକାର । ଏହା ବିନେ ଦେଶ ହୁଏ ଛାରଖାର । ସ୍ୱାଧୀନତା ମାନବର ଜନ୍ମଅଧିକାର । ସ୍ୱାଧୀନଭାଷଣ ଆଉ ସ୍ୱାଧୀନ ବିହାର । ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି । ଚାରି ସ୍ତମ୍ଭେ ମାନବର ସମାଜ ସଂସ୍ଥିତ ।''



୧୯୦, ସୋନାଲିକା ଏନ୍‌କ୍ଲେଭ,
ଲୁଇସ୍ ରୋଡ଼, ଭୁବନେଶ୍ୱର–୧୪

# ବାଞ୍ଛାନିଧି ଦାସଙ୍କ କବିତାରେ ସ୍ୱଦେଶପ୍ରେମ

ଡକ୍ଟର ନାରାୟଣ ପଣ୍ଡା

ଓଡ଼ିଆ ଭାଷା ଓ ସାହିତ୍ୟକୁ ଯେଉଁ କେତେଜଣ ସ୍ରଷ୍ଟା ଲେଖନୀ ଚାଳନା କରି ସମୃଦ୍ଧ କରିଛନ୍ତି ସେମାନଙ୍କ ମଧ୍ୟରେ ବାଞ୍ଛାନିଧି ଦାସ ଅନ୍ୟତମ । କଟକ ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ (ଭକ୍ତମଧୁ ବିଦ୍ୟାପୀଠ)ରେ ଅଧ୍ୟୟନ କରୁଥିବା ସମୟରେ ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନ ତଥା ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ କାରାବରଣ କରିଥିଲେ । ସେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ପ୍ରତିଷ୍ଠିତ ଦୈନିକ ସମ୍ବାଦପତ୍ର ସମାଜର ସହ ସମ୍ପାଦକ ଭାବରେ କାର୍ଯ୍ୟ କରି ଅବସର ଗ୍ରହଣ କରିଥିଲେ । ସାଧନା ଥିଲା ତାଙ୍କର ଜୀବନ, ଶିକ୍ଷକତା ଥିଲା ତାଙ୍କର ବୃତ୍ତି । ସାଧନା ଓ ବୃତ୍ତିର ପରିଧି ଭିତରେ ପ୍ରତ୍ୟୟର ପୃଥକ ପୃଥିବୀ ସୃଜନର ସ୍ୱପ୍ନ ଦେଖୁଥିଲେ । ଯନ୍ତ୍ରଣାର କୃମିତନ୍ତ୍ର ଜାଲରେ ପଡ଼ି ସାରସ୍ୱତ ସାଧନାରୁ ବିଚ୍ୟୁତ ନ ଥିଲେ । ସ୍ୱାଧୀନତା ଆନ୍ଦୋଳନ ସମୟରେ ସେ ଦେଶାତ୍ମବୋଧ ସଂଗୀତ ରଚନା କରି ଜନତାକୁ ଉଦ୍‌ବୁଦ୍ଧ କରୁଥିଲେ ।

ସତ୍ୟବାଦୀ ଯୁଗର ସାଧକ ପଣ୍ଡିତ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ପ୍ରମୁଖଙ୍କ ପରବର୍ତ୍ତୀ ପର୍ଯ୍ୟାୟରେ ଜାତୀୟକବି ବାଞ୍ଛାନିଧି ଦାସଙ୍କ କବିତା ଭାରତୀୟ ଜାତୀୟ ସଂଗ୍ରାମକୁ ବହୁ ଭାବରେ ଇନ୍ଧନ ଯୋଗାଇଥିଲା । କେବଳ ଜଣେ ସଫଳ କବି ନ ଥିଲେ, ସେ ହେଉଛନ୍ତି ଭାରତୀୟ ମୁକ୍ତି ସଂଗ୍ରାମର ଅଗ୍ରସାରଥି, ଜାତୀୟ ଚେତନାର ବାର୍ତ୍ତାବହ । ୧୯୨୧ ମସିହାର ସର୍ବଭାରତୀୟ ଅସହଯୋଗ ଆନ୍ଦୋଳନ, ୧୯୩୦ ମସିହାର ଲବଣ ସତ୍ୟାଗ୍ରହ, ୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନ ପ୍ରଭୃତି ବାଞ୍ଛାନିଧି ଦାସଙ୍କ ମନୋଭୂମିକୁ ବହୁଭାବରେ ଚହଲାଇ ଦେଇଥିଲା ।

ଦୁଇଟି ବିଶ୍ୱଯୁଦ୍ଧ, ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଭାରତର ସତ୍ୟାଗ୍ରହ ଆନ୍ଦୋଳନ, ସୋଭିଏତ୍ ରୁଷର ସମାଜବାଦୀ ଆନ୍ଦୋଳନ ପ୍ରଭୃତିର ପ୍ରଭାବ ସାହିତ୍ୟିକମାନଙ୍କୁ ଜୀବନଧର୍ମୀ ସାହିତ୍ୟ ରଚନା ନିମନ୍ତେ ଅନୁପ୍ରାଣିତ କରିଥିଲା । ଏହାଦ୍ୱାରା ଭାରତରେ ଏକ ପ୍ରଗତିଶୀଳ ଜୀବନ୍ତ ସାହିତ୍ୟ ସୃଷ୍ଟିର ଭିତ୍ତି ପ୍ରସ୍ତୁତ ହୋଇପାରିଥିଲା ।୧।

ଉତ୍କଳୀୟ ସମାଜର ପୁରୁଣା ପ୍ରଥା ଉପରେ ନୂତନ ସ୍ତର ଫିଟାଇ ଜାତୀୟ ଜୀବନରେ ଚଞ୍ଚଳତା ଓ ନୂତନ ସଂସ୍କୃତିର ସ୍ରୋତ ଖେଳାଇଦେବା ଉଦ୍ଦେଶ୍ୟରେ ଓଡ଼ିଶାରେ ଯେଉଁ ସାହିତ୍ୟ ସଂସ୍ଥା ଗଠିତ ହୋଇଥିଲା ତାହା ହେଉଛି ନବଯୁଗ ସାହିତ୍ୟ ସଂସଦ । ଏହି ଅନୁଷ୍ଠାନ ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ପ୍ରାଣନାଥ ପଟ୍ଟନାୟକ, ରାମକୃଷ୍ଣ ପତି, ସଚ୍ଚିଦାନନ୍ଦ ରାଉତରାୟ, ମନମୋହନ ମିଶ୍ର, ରାମପ୍ରସାଦ ସିଂହ ପ୍ରଭୃତି ସାହିତ୍ୟରଥୀଙ୍କ ପୃଷ୍ଠପୋଷକତା ଲାଭ କରିଥିଲା ।୨।

ଜାତୀୟ ଭାବନା ସହ ମହାମାନବୀୟ ଚିନ୍ତା ଓ ଚେତନାର ହେଲା ମଧୁର ସମନ୍ୱୟ । ଏହା ନବଯୁଗ ସାହିତ୍ୟ ସଂସଦର ପ୍ରଥମ ଉଦ୍‌ବୋଧନ ସଙ୍ଗୀତରୁ ସୁସ୍ପଷ୍ଟ । କବି ଅନନ୍ତ ପଟ୍ଟନାୟକଙ୍କଦ୍ୱାରା ନବଯୁଗ ସାହିତ୍ୟ ସମ୍ମିଳନୀରେ ପଠିତ କବିତା ଯଥାର୍ଥରେ ବେଶ୍ ମାର୍ମିକ । କବିଙ୍କ ଭାଷାରେ–

ନବୀନ ଯୁଗର ତରୁଣ ଜାଗରେ ଜାଗ ବନ୍ଧନହରା
ବକ୍ଷ ଶୋଣିତ ଲକ୍ଷ ଜୀବନେ ଖେଳାଅ ଆଲୋକଧାରା
ଛିନ୍ନ କରରେ ବନ୍ଧନରାଜି କ୍ରନ୍ଦନ ହେଉ ଶେଷ
ଲୁପ୍ତ ହେଉରେ ଜାତି ଉପଜାତି ଖଣ୍ଡିତ ଶତଦେଶ
ମହାମାନବର ଶଙ୍ଖ ଶବଦେ ଶମୁରେ ଦୁଃଖ ଜ୍ୱାଳା
ଜାଗ ବନ୍ଧନ–ହରା ।୩।

ଜାତିଗଠନ ଉଦ୍ଦେଶ୍ୟରେ ଏମାନଙ୍କର ମୁଖ୍ୟ ପଦକ୍ଷେପ ଥିଲା ଏକ ନିର୍ଦ୍ଦିଷ୍ଟ ଆଦର୍ଶକୁ ଜନସାଧାରଣଙ୍କର ନିକଟତର କରାଇବା, ସମାଜର ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର

ଅହଙ୍କାର ତଳେ ଲୁଚିଯାଇଥିବା ଗଣଜୀବନର ସମସ୍ୟାକୁ ଉପସ୍ଥାପିତ କରାଇବା । ଗତାନୁଗତିକ ଆଚରଣ ବିରୋଧରେ ଏହି ସାହିତ୍ୟିକଗୋଷ୍ଠୀ ଏତାଦୃଶ ପ୍ରତିକ୍ରିୟା ପ୍ରକାଶ କରିବା ସ୍ୱାଭାବିକ ।

ବିବିଧ ରାଜନୈତିକ ଆନ୍ଦୋଳନ ତଥା ଦର୍ଶନ, ସଂସ୍କାର ଚେତନା ଚଳିତ ଶତକର ତୃତୀୟ ଦଶକ ବେଳକୁ ଓଡ଼ିଆ ସାହିତ୍ୟକୁ ଜୀବନଧର୍ମୀ ତଥା ବାସ୍ତବଧର୍ମୀ ଭାବନାରେ ଅନୁପ୍ରାଣିତ କରିଥିଲା । ଦେଶବାସୀଙ୍କ ପ୍ରାଣରେ ଅତୀତ ଐତିହ୍ୟପ୍ରତି ସ୍ୱାଭିମାନ ଜନ୍ମାଇବା ଏବଂ ଏହାରି ମାଧ୍ୟମରେ ଜାତିପ୍ରୀତି ଗଭୀରତର କରାଇବା, ବହୁକାଳର ବିଦେଶୀ ଶାସନଜନିତ ଅତ୍ୟାଚାରଦ୍ୱାରା ଯେଉଁ ହୀନମନ୍ୟତା ଏ ଜାତି ପ୍ରାଣରେ ସୃଷ୍ଟି ହୋଇଥିଲା ତା'ର ବିଲୋପକରି ସ୍ୱଦେଶ ଓ ମାତୃଭୂମି ପ୍ରତି ଆବେଗ ଜନ୍ମାଇବା ଲକ୍ଷ୍ୟରେ ଦେଶର ଅତୀତ ଇତିହାସ ଓ ସମୃଦ୍ଧ ଅତୀତର ଜୟଗାନ କରାଯାଇଥିଲା ।୪।

ଜାତୀୟତାବୋଧକୁ ଏକ ମହାଭାରତୀୟ ପଟ୍ଟଭୂମିରେ ଗୋପବନ୍ଧୁ ବିଚାର କରିଥିଲେ ଏବଂ ବିଶ୍ୱପ୍ରେମ ଓ ମାନବିକତାବୋଧ ସହ ଏହାକୁ ସମ୍ପୃକ୍ତ କରିଦେଇଥିଲେ । ପରବର୍ତ୍ତୀ ସମୟରେ ୧୯୩୫ ମସିହାବେଳକୁ ଜାତୀୟ ଚେତନା ସହିତ ସର୍ବହରାର ଶ୍ରେଣୀଦର୍ଶନ ଉପରେ ଆଧାରିତ ମାର୍କସବାଦୀ ଦର୍ଶନ ସାହିତ୍ୟରେ ରୂପନେବାକୁ ଆରମ୍ଭ କଲା । ସାହିତ୍ୟର ଏହି ନବୀନ ମୂଲ୍ୟବୋଧକୁ ଆବାହନ କରି ଗଢ଼ାହେଲା ନବଯୁଗ ସାହିତ୍ୟ ସଂସଦ ଏବଂ ତା'ର ମୁଖପତ୍ରରୂପେ ପ୍ରକାଶ ପାଇଲା ଆଧୁନିକ ପତ୍ରିକା । ଆଧୁନିକ ପତ୍ରିକା ହିଁ ଥିଲା ଓଡ଼ିଶାରେ ଆଧୁନିକତାର ବାର୍ତ୍ତାବହ । ଜାତୀୟ ମୁକ୍ତି ଆନ୍ଦୋଳନକୁ ନେଇ କବିତା ଲେଖିବା ସଙ୍ଗେ ସଙ୍ଗେ ସର୍ବହରାର ଏକ ନାୟକତ୍ୱ ଓ ସାମ୍ରାଜ୍ୟବାଦର ବିଲୋପପାଇଁ ମାର୍କସବାଦୀ କବିମାନେ ଆହ୍ୱାନ ଦେଲେ ।୫।

(Nationalistic apirit ..... had crept into Orissa in the second half of the 19th Century and this resulted the rise of the pan-Orissa idea which got a fillip through the press, the activities of various societies and the moshrooming of education institutions." ।୬।

ଦେଶ ଓ ଜାତିର ଗ୍ଲାନିକର ମୁହୂର୍ତ୍ତ ଗୁଡ଼ିକରେ ପରାଧୀନତାର ଅନ୍ଧକାରରେ ଦେଶବାସୀ ଅଣନିଃଶ୍ୱାସୀ ହୋଇପଡୁଥିବାବେଳେ ଏହି ଜାତୀୟ ଚେତନାର ବିକାଶ ଘଟେ । ଏହା ଗୋଷ୍ଠୀ ଜୀବନର ଶିଥିଳତାକୁ ଦୂରେଇ ନେଇ ମଣିଷମାନଙ୍କୁ ସଂହତି ଓ ଏକତା ସୂତ୍ରରେ ବାନ୍ଧିରଖେ । ଫଳରେ ସମାଜ ଜୀବନ ଓ ଚରିତ୍ର ଏହାଦ୍ୱାରା ବିପ୍ଲବ ଭାବରେ ପ୍ରଭାବିତ ହୁଏ । ଉଗ୍ର ଜାତୀୟତାବୋଧର ସ୍ଫୁରଣ ସମାଜ ଜୀବନରେ ଜଣେ ଜଣେ ଜାତୀୟ ବୀରଙ୍କୁ ଜନ୍ମ ଦିଏ । ତାଙ୍କର ପ୍ରତିଭା ଓ ପ୍ରତିଷ୍ଠାକୁ ଦେଶବାସୀ ପୂଜା କରନ୍ତି । ଭାରତ ବର୍ଷରେ ଜାତୀୟତାବାଦର ଜଣେ ଅଗ୍ରଦୂତ ଯୋଗୀ ଅରବିନ୍ଦ କହନ୍ତି ଯେ, ଏହା ହେଉଛି ଈଶ୍ୱରଙ୍କ ନିକଟରେ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସାଧନ ନିମନ୍ତେ ଅଭିପ୍ରେତ ।୭।

ଦେଶବାସୀଙ୍କ ମନରେ କବିତା ମାଧ୍ୟମରେ ସ୍ୱଦେଶପ୍ରେମ ଜାଗ୍ରତ କରିବା, ସ୍ୱରଚିତ କବିତା ସଭାସମିତିରେ ଆବୃତ୍ତିକରି ଗଣ ମାନସରେ ବିଶ୍ୱଭ୍ରାତୃତ୍ୱ ସୃଷ୍ଟି କରିବା କବି ବାଞ୍ଛାନିଧି ଦାସଙ୍କ ସୃଜନର ସାରସ୍ୱତ ସନ୍ଦେଶ । ଇଙ୍ଗିତିକା (୧୯୪୭), ସଂଜୀବନୀ (୧୯୫୧), ଜୟଭେରୀ (୧୯୫୪), ବାଳପ୍ରଭାତୀ (୧୯୫୮), ବିପ୍ଳବୀ ବାଣୀ (୧୯୬୦), ଏଇ ପତାକା ତଳେ (୧୯୬୧), ଜୟହିନ୍ଦ୍ (୧୯୬୪), ଫରଫର ଉଡ଼େ ନିଶାଣ (୧୯୬୮) ପ୍ରଭୃତି କବିତା ସଂକଳନ କବିଙ୍କ ଦେଶପ୍ରେମର ସଫଳ ଦୃଷ୍ଟାନ୍ତ ।

ଜନନୀ ଜନ୍ମଭୂମି ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ । ଗୋଟିକୁ ବାଦ୍‌ଦେଲେ ଅନ୍ୟର ସ୍ଥିତି ନାହିଁ । ଜୀବନ ବିଦ୍ୟାଳୟରେ ଜନନୀ ଓ ଜନ୍ମଭୂମିର ଆବଶ୍ୟକତା ଏକାନ୍ତ ଅପରିହାର୍ଯ୍ୟ । ମାଟିର ମଲାଟ ଉପରେ ହସକାନ୍ଦ ମିଳନ ବିଚ୍ଛେଦ । ମିଳନ ଯେତିକି ସୁଖଦ, ବିଚ୍ଛେଦ ସେତିକି କରୁଣ । ମାଟିମାଆ ଆଲୋକପରି ପବିତ୍ର, ଅନ୍ଧାକର ପରି ଅନାବୃତ । କବି ବାଞ୍ଛାନିଧି ଦାସ ଏଇ ଆମ ମାଟି ମାଆ କବିତାରେ ପ୍ରକାଶ କରିଛନ୍ତି–

ନାହିଁ ନ ଥିବରେ ମହୀମଣ୍ଡଳରେ
ମୋ ଜନମ ଭୂଇଁ ସରି
ସାରା ଦୁନିଆରେ ସାର ମୋ ଭାରତ
ସେଇ ସିନା ତାର ପରି ।୮।

କବିତା ଓ ସଙ୍ଗୀତ ଜାତୀୟକବି ବାଞ୍ଛାନିଧି ଦାସଙ୍କ ଭାବ ସ୍ରୋତସ୍ୱିନୀର ଦୁଇଟି ଧାରା– ସହଜ ସ୍ୱଚ୍ଛ ଓ ସାବଲୀଳ । ତାଙ୍କ ଜୀବନ ବୃନ୍ତରେ ଦୁଇଟି ପୁଷ୍ପ ସରସ ସୁନ୍ଦର ଓ

ସୁଗନ୍ଧଯୁକ୍ତ । କବିତା ତଥା ସଙ୍ଗୀତ ସାଧକର କାୟ ମନୋବାକ୍ୟରେ ଦେଶରେ ଅରାଜକତା ସମୟରେ ଜାତୀୟଜୀବନର ଘଡ଼ିସନ୍ଧି ମୁହୂର୍ତ୍ତରେ ସୁପ୍ତ ଜାତିମନରେ ଉତ୍ସାହ ଓ ଧୈର୍ଯ୍ୟ ଭରିଦେବା ନିମନ୍ତେ କବି ବାଞ୍ଛାନିଧି ଦାସଙ୍କ ଲେଖନୀ ଥିଲା ଚଳଚଞ୍ଚଳ । ଜୀବନ ଗୋଲାପର ଶେଯ ନୁହେଁ ଅନେକ କର୍ମର କ୍ରୀଡାସ୍ଥଳି । ଓଡ଼ିଆଜାତି ଜୀବନର ଆକାଶରେ ଯେତେବେଳେ ପରାଧୀନତାର କଳାମେଘ ଘୋଟି ଆସିଛି ସେତେବେଳେ ବୀରପୁରୁଷମାନଙ୍କର ଆବିର୍ଭାବ ଘଟିଛି । ନିଃସ୍ୱାର୍ଥପର ସେବା, ତ୍ୟାଗ ବଳରେ ସେମାନେ ଯୁଗଯୁଗ ଧରି ଜାତିର ମାନସପଟରେ ଅମରହୋଇ ରହିଛନ୍ତି । କୋଟି କୋଟି ସନ୍ତାନ ଗୋଟିଏ ଭାରତ ଜନନୀର ସନ୍ତାନ । ସନ୍ତାନର ସୁଖ ଜନନୀର ସୁଖ । ଜନନୀର ଦୁଃଖ ସନ୍ତାନର ଦୁଃଖ । ଗୋଟିଏ ସୂତାରେ ଆମେ ସଭିଏଁ ଗୋଟିଏ ଗୋଟିଏ ଫୁଲ, ଉତ୍କଳ ଜନନୀର ଗଳାରେ ଚିରଶୋଭିତ । ଏଇ ମାଟିର ପାଣି ପବନ ଜୀବନର ନିଃଶ୍ୱାସ ପ୍ରଶ୍ୱାସରେ ଆତଯାତ । ଧୂଳି ଖେଳଠାରୁ ଶେଷ ଚିତା ଯାଏ ମାଟି ଆମର ସାକ୍ଷୀ । କବି ବାଞ୍ଛାନିଧି ଦାସ ଯଥାର୍ଥରେ ପ୍ରକାଶ କରିଛନ୍ତି–

ଏଇ ମାଟି କୋଳେ ଜନମ ଆମରି
ଏଇ ମାଟି କୋଳେ ଖେଳ
କୋଟି କୋଟି ଆମେ ତା ପୂଜା ମାଳାରେ
ଗୋଟିଏ ସୂତାରେ ମେଳ ।୯।

କାଳ ଅନନ୍ତ । କଳା ଚିରଶାଶ୍ୱତ । କାଳର ପ୍ରବାହରେ କଳା ଚିରଭାସ୍ୱର ଦେଦୀପ୍ୟମାନ । ଆପଦ ବିପଦର ପଶାଖେଳ ଭିତରେ କବିତାର ସର୍ଜନ ସଂସାର ନିର୍ମାଣ କରେ । ସମଷ୍ଟିରେ ତା'ର ଜୀବନ, ବ୍ୟଷ୍ଟିରେ ତା'ର ମରଣ । ଜୀବନ ମରଣର ଲୁଚକାଳି ଖେଳ ଭିତରେ ପାର୍ଥିବ ବିଳାସ ପରିହାର କରି ଅପାର୍ଥିବର ଆକର୍ଷଣରେ ଆକୃଷ୍ଟ ହୁଏ କବି । ନାନ୍ଦନିକ ସୁଷମା ତା'ର ଚେତନାରେ ସପ୍ତରଙ୍ଗ ଇନ୍ଦ୍ରଧନୁ ସୃଷ୍ଟି କରେ । କଳ୍ପଲୋକରେ ବିଚରଣ କରି ନବନବ ସୌନ୍ଦର୍ଯ୍ୟକୁ ଆବିଷ୍କାର କରେ । ସେତେବେଳେ ବିପ୍ଳବର ଆବାହନୀ କରେ କବିତାରେ ତ ଆଉ କେତେବେଳେ ସତ୍ୟ ଶିବ ସୁନ୍ଦରର ଆରାଧନାରେ ନିବିଷ୍ଟ ରହେ । ଧୂଳିର ସିଂହାସନରେ ବସି ପ୍ରକୃତିର ବର୍ଣ୍ଣବିଭାରେ ଆମୋଦିତ ହୁଏ । ସଂସାର ଭିତରେ ଥାଇ ଅନାସକ୍ତ, ଭୋଗ ଭିତରେ ଥାଇ ବୈରାଗ୍ୟ ସ୍ରଷ୍ଟାର ବୈଶିଷ୍ଟ୍ୟ ।

ଦେଶପ୍ରେମ କଳାନୁମୋଦିତ । କବିତାଗୁଡ଼ିକ ଶାନ୍ତକାନ୍ତ କମନୀୟ । କବିତାର ସ୍ୱତଃସ୍ଫୁର୍ତ୍ତ ପ୍ରବାହ ବାସ୍ତବିକ ଅନନ୍ୟ ଓ ଅନୁପମ । କାରଣ କବିର ଆସନ ଅଳଂକୃତ କରିଥିଲେ ମଧ୍ୟ ପଦଲାଳିତ୍ୟ ଓ ସଙ୍ଗୀତମୟ ମୂର୍ଚ୍ଛନା ତାଙ୍କ ସୃଷ୍ଟିର ସୌଷ୍ଠବ । କବିତାରେ ଦଳିତ ଜୀବନପ୍ରତି ଅଛି ମମତା ଓ ଗଭୀର ସମବେଦନା । ଉନ୍ମାଦନା ଓ ସମ୍ମୋହନ କବି ବାଞ୍ଛାନିଧି ଦାସଙ୍କ କବିତାର ପ୍ରାଣସ୍ପନ୍ଦନ । ଆର୍ଥିକ ଅନଟନ ଓ ଦୁରବସ୍ଥା ଭିତରେ କବି ସାହିତ୍ୟ ସାଧନାରୁ ବିରତ ହୋଇ ନାହାନ୍ତି ବରଂ ଦଗ୍ଧ କାଞ୍ଚନର କାନ୍ତି ପରି ଅଭାବ ଅସୁବିଧା ଭିତରେ ପ୍ରତିଭା ବିକଶିତ ହୋଇଚି । ଯେତେବେଳେ ଯେଉଁଭାବ ହୃଦୟକୁ ଗଭୀର ସ୍ପର୍ଶ କରିଛି ସେସବୁକୁ ନୂତନ ଛନ୍ଦରେ ଓ ସାବଲୀଳ ଭାଷାରେ କବି କବିତାରେ ପ୍ରକାଶ କରିଛନ୍ତି । ସଂସ୍କାରଜଗତ କବିପ୍ରତିଭା ଓ ନିରଳସବାଣୀ ସାଧନା ତାଙ୍କ କବିତ୍ୱର ନିଦର୍ଶନ ।

କବି ଜଣର ନୁହେଁ ଗଣର । ଗଣଚେତନାକୁ କବି ପ୍ରକାଶ କରେ କବିତାରେ । ସାଧନା ଓ ସାଧକର ଦେଶ ଭାରତବର୍ଷ । ପବିତ୍ର ପୁରାଣପୋଥି ପ୍ରଜ୍ଞା ଓ ମନୀଷାର ମୂକସାକ୍ଷୀ । ଶିଳ୍ପୀର ସ୍ଥାପତ୍ୟ ଓ ଭାବୁକର କଳ୍ପନା କଳାର କୋଣାର୍କ ନିର୍ମାଣ କରିଚି । ପବିତ୍ର ମାଟିରେ ସ୍ୱର୍ଗଧାମର ଦେବତାଗଣ ବାରମ୍ବାର ଜନ୍ମ ନେବାପାଇଁ ଅଳି କରନ୍ତି । ଦେଶର କୃତୀ ଓ କୃତିତ୍ୱକୁ ସ୍ମରଣ କରି କବି ପ୍ରକାଶ କରିଛନ୍ତି–

ତା ପୁତ୍ର କନ୍ୟା କୀରତି ସକଳ ପୁରାଣ ପୋଥି
ତା କୋଳେ ଜନମ ପାଇଁ ଦେବତା ଅଳି
ଆକାଶ ପଛକେ ଖସୁ ବସୁଧା ତଳକୁ ପଶୁ
ପୁଣ୍ୟ ପଶୁ ତା ସନ୍ତାନ ନ ପଡ଼େ ଟଳି
ଶୂରବୀର କବି ମନୀଷୀ
ପ୍ରସବିଛି ଶ୍ରେଷ୍ଠଶିଳ୍ପୀ ସାଧକ ଋଷି ।୯।

ଉତ୍କଳର ଅତୀତ ଗୌରବମୟ । ହସି ହସି ଅମା ଅନ୍ଧାର ନାସି ନୂତନ ସୂର୍ଯ୍ୟ ପୂର୍ବଦିଗରୁ ଉଇଁ ଆସୁଛି । ଯାତ୍ରାପଥରେ ସଫଳତାର ପଦ୍ମ ବିକଶିତ ହେଉଛି । ଭସ୍ମସ୍ତୂପ ଉପରେ ସବୁଜ ସମ୍ପଦ ହସି ଉଠୁଛି । ପୁରାଣପୋଥିର ପୁଣ୍ୟଦେଶ ହସିବ କୋଟି କୋଟି ସନ୍ତାନ ମୁହଁରେ ହସ ଫୁଟିବ । ମମତାମୟୀ ଶକ୍ତିରୂପିଣୀ ଜନନୀ ତାର ଅଭୟ ପଣତରେ କୋଳେଇନେବ ଅଗଣିତ ଦେବଶିଶୁମାନଙ୍କୁ ମମତାର ମନ୍ତ୍ରରେ ଦୀକ୍ଷିତ କରି ।

ସୂର୍ଯ୍ୟନାଦ କବିତାରେ କବି ବାଞ୍ଛାନିଧି ଦାସ ଯଥାର୍ଥରେ ପ୍ରକାଶ କରିଛନ୍ତି–

''ପଛେ ଫେରି ଅନା ଅତୀତକୁ ଥରେ
କେତେ ଜୀବନର ବଳି ଶପଥରେ
ଯାତ୍ରା ପଥେ ତୋ ପଦ୍ମ ଫୁଟିଛି
ସୂର୍ଯ୍ୟ ହସିଛି ତିମିର ଚିରି,
ଧ୍ୱସ୍ତ ବନାନୀ ଭସ୍ମ ଉପରେ
ହସିଉଠେ ପୁଣି ସବୁଜ ଶିରୀ ।''୧୦।

ଦେଶ ପ୍ରାକୃତିକ ସୌନ୍ଦର୍ଯ୍ୟର ଗନ୍ତାଘର । ପଶ୍ଚିମରେ ମୁକୁଟରୂପୀ ପର୍ବତ ଚୂଡାରେ ମତ୍ତଗଜ କ୍ରୀଡ଼ା, ପୂର୍ବରେ ପଦାଭରଣ ରୂପୀ ରତ୍ନଗର୍ଭା ସାଗରର କୋଳାହଳ, ହୃଦୟରେ ସ୍ୱର୍ଣ୍ଣପ୍ରସବିନୀ ନଦୀର ଅସଂଖ୍ୟ ହାର ଜନମନ ହରଣ କରେ । ସୁଜଳାସୁଫଳା ଶସ୍ୟ ଶ୍ୟାମଳା ଧରଣୀ ଶୋଭାର ଅର୍ଘ୍ୟଥାଳି ଧରି ଚିର ଦଣ୍ଡାୟମାନ । କବି କବିତାରେ ପ୍ରକାଶ କରିଛନ୍ତି–

ପାଦ ଧୋଇଦିଏ ମହାସାଗର
ଗଳେ ଶୋହେ ଗଙ୍ଗାଯମୁନା ହାର
ବିନ୍ଧ୍ୟ ପର୍ବତ ତା କଟି ମେଖଳା
ସୁଜଳା ସୁଫଳା ଶସ୍ୟଶ୍ୟାମଳା
ସେ ଶୋଭା ପସରା ଧନଜନ ଗୋପଲକ୍ଷ୍ମୀରେ ଭରା ।୧୧।

ଭୁବନେଶ୍ୱରର ଅଶୋକ ଓ ଖାରବେଳଙ୍କ ଶିଳାଲିପି ଏବଂ ସମୁଦ୍ର ତୀରବର୍ତ୍ତୀ ସମତଳ ପ୍ରଦେଶର ଅଗଣିତ ଦୁର୍ଗ ଓ ମନ୍ଦିରର ଭଗ୍ନାବଶେଷ ମର୍ମଭେଦୀ ନୀରବ ସ୍ୱରରେ ଯେପରି ଓଡ଼ିଶାର ଅତୀତ ଗୌରବଗୀତି ଗାଉଛନ୍ତି, ସେହିପରି ଗଡ଼ଜାତର ଅରଣ୍ୟ ଭିତରେ ବାସକରୁଥିବା ପ୍ରକୃତିପାଳିତ ମାନବଗଣ ପୃଥିବୀ ସଭ୍ୟତାର କ୍ରମ ବିକାଶ ତତ୍ତ୍ୱ ଜଗତକୁ ବୁଝାଇଦେଇଛନ୍ତି ।

ଜନତାର ଜୟଗୀତି ଗାଇ ଶତ ବାଧାବନ୍ଧନ କାଟି ହାତକୁ ହାତ ମିଶାଇ ଆଗେଇଯିବାକୁ ପଡ଼ିବ । ମାଆର ଆଶିଷ ଆଗ୍ନେୟ ଶପଥ ନେଇ ଆବାହନୀ ମନ୍ତ୍ର ଉଚ୍ଚାରଣ କରି, ଭିକ୍ଷାକରି ଜାତିର ସ୍ୱାଗତ ଶଙ୍ଖ ବଜାଇ ଭଙ୍ଗାବୀଣାର ସ୍ୱର ତୋଳିବାକୁ ପଡ଼ିବ । ଓଡ଼ିଆ ଜାତି ଉଦ୍ଦେଶ୍ୟରେ କବିଙ୍କ ଚେତାବନୀ ବେଶ୍ ସ୍ୱାଗତଯୋଗ୍ୟ । କବିଙ୍କ ଭାଷାରେ–

ଜନତାର ଜୟଗୀତି କଣ୍ଠେ ଯେ ଉଚ୍ଚାରି ଆପଣାକୁ
ଦେଇଗଲେ ଆହୂତି ।
ଆପଣା ଶୋଣିତ ହାଡ଼ ମିଶାଇ ଏ ମହୀରେ
ଜାତିର ଜୀବନ ଗଲେ ସାଇତି ।୧୨।

ଜାତିର ଦେଶର ଉନ୍ନତି କରିବାକୁ ହେଲେ ମନରୁ କ୍ଷୁଦ୍ରତା ପରିହାର କରି ଉର୍ଦ୍ଧ୍ୱକୁ ଉଠିବାକୁ ହେବ । ନିଜ ନିଜ ଭିତରେ ସୁସମ୍ପର୍କ, ପାରସ୍ପରିକ ସଦ୍‌ଭାବ ରକ୍ଷାକରି ମର୍ତ୍ତ୍ୟରେ ଦେବତାର ନନ୍ଦନକାନନ ସୃଷ୍ଟି କରିବାକୁ ପଡ଼ିବ । ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଜାତି ଜାତି ମଧ୍ୟରେ ଭ୍ରାତୃଭାବ ଓ ମୈତ୍ରୀ ସ୍ଥାପନ କରି, ସମାଜକୁ ସଂହତି ସୂତ୍ରରେ ବାନ୍ଧି କର୍ମଭୂମିରେ ଅବତୀର୍ଣ୍ଣ ହେବାକୁ କବି କବିତାରେ ଆହ୍ୱାନ ଦେଇଛନ୍ତି । ନିଜଭିତରୁ ବାହାରିଯାଇ ପରିବାରକୁ, ପରିବାରରୁ ଗୋଷ୍ଠୀକୁ, ଗୋଷ୍ଠୀରୁ ସମାଜକୁ ସମାଜରୁ ଜାତିକୁ, ଜାତିରୁ ଅନ୍ୟ ଜାତିକୁ ଆପଣାର ମନେକଲେ ବିଶ୍ୱଭ୍ରାତୃତ୍ୱ ପ୍ରତିଷ୍ଠା ହୁଏ ଜାତିର ଉନ୍ନତି ସାଧିତ ହୁଏ । କବି କବିତାରେ ପ୍ରକାଶ କରିଛନ୍ତି–

କ୍ଷୁଦ୍ରତା ପରିହରି ଉର୍ଦ୍ଧ୍ୱକୁ ଉଠରେ
ମହାମାନବର ତୁହି ଦାୟାଦ
କଳ୍ପନା ତୋର ଆଗେ ଧରାତଳେ ସ୍ୱର୍ଗ
ଘୁଞ୍ଚାଅ ଅବସାଦ ବିଷାଦ ।୧୩।

ଶହୀଦ ପ୍ରତି କବିତା କବି ବାଞ୍ଛାନିଧି ଦାସଙ୍କ ସଂଜୀବନୀ କବିତା ସଂକଳନରେ ସ୍ଥାନିତ ଏକ ସ୍ୱତନ୍ତ୍ର ସ୍ୱଦେଶପ୍ରୀତିମୂଳକ ପ୍ରତିନିଧିସ୍ଥାନୀୟ କବିତା । ଜନନୀର ସୁରକ୍ଷା ପାଇଁ ଯିଏ ଛାତି ପତେଇଲା ଗୁଳି ଆଗରେ ହସି ହସି ମରଣକୁ ବରଣ କଲା, ଅକାତରରେ ଜୀବନ ଦେଲା ସିଏ ଏ ଜାତିର ବୀରସନ୍ତାନ ଶହୀଦ । ଯଥାର୍ଥରେ କବି କବିତାରେ ପ୍ରକାଶ କରିଛନ୍ତି–

ଗୁଳି ମୁହେଁ ଯେହୁ ବଳିଦେଲା ପ୍ରାଣ
ନିର୍ଭୀକ ବୀର ଦମ୍ଭେ
ମରଣର ଯିଏ ବିଜୟ ଲେଖିଲା
ଏ ଜାତି କୀରତି ସ୍ତମ୍ଭେ ।୧୪।

ଆମେ ସବୁ ଭାଗ୍ୟବାନ ସନ୍ତାନ ଏ ପବିତ୍ର ଜନ୍ମଭୂମିରେ ଜନ୍ମଗ୍ରହଣ କରିଛେ, ଯାହାର ଅତୀତ ଗୌରବୋଜ୍ଜ୍ୱଳ ଓ ଐତିହ୍ୟଦୀପ୍ତ । ଅତ୍ୟାଚାରର ଅନ୍ଧକାର

ଚାଲିଯାଇଛି, ଆସିଛି ନବଆଲୋକର ପର୍ବ । ଆର୍ଯ୍ୟଭୂମିର ନବୀନ ସୂର୍ଯ୍ୟ ହସିଉଠିବ ସସାଗରାଧରା, ପ୍ରଗତିର ରଥଚକ ଗଡ଼ିଚାଲିବ ଜନଜାତିର ବଡ଼ଦାଣ୍ଡରେ, ଅନେକ ଆଶା ଓ ସମ୍ଭାବନା ନେଇ ଜୀବନ ପ୍ରଦୀପ ଚତୁର୍ଦ୍ଦିଗକୁ ଉଦ୍‌ଭାସିତ କରିବ । ମୁଖର ହେବ ମୂକ । ଅନ୍ଧ ଦିବ୍ୟଚକ୍ଷୁ ଲାଭ କରିବ । କନକଶସ୍ୟରେ ହସିଉଠିବ ଧରିତ୍ରୀ । କବିଙ୍କ କଳ୍ପନା ମର୍ମିକ ଓ ହୃଦୟସ୍ପର୍ଶୀ । କବିତାରେ କବିଙ୍କ ଭାଷାରେ–

ଲୁପ୍ତ ହୋଇନି ଅତୀତ ଆମର
ଗୌରବ ଗରୀୟାନ୍
ଅତ୍ୟାଚାରର ତୋଷଣେ ଆଜି
ଉଜ୍ଜ୍ୱଳ ତେଜୀୟାନ ।୧୫।

ଦେଶ ଓ ଜାତିର ସମ୍ମାନ ରକ୍ଷା କରିବା ବୀରର କର୍ତ୍ତବ୍ୟ । ମାତୃଭୂମିର ଗରିମା ରକ୍ଷା କରିବା ସଂଗେ ସଂଗେ ଦେଶକୁ ମହାନ୍ କରି ଗଢ଼ିବା ଆମର ଉଦ୍ଦେଶ୍ୟ । ଧର୍ମ ଓ କର୍ମର ଅଧିଷ୍ଠାନ ଭାରତବର୍ଷ । ସ୍ୱାଧୀନ ଦେଶର ସନ୍ତାନ ଆଗେଇବା କାଟି ବନ୍ଧନ । ଜୀବନ ମରଣର ଏ ତୀର୍ଥସ୍ଥାନ । ଦେଶ ପାଇଁ କବିଙ୍କ ସନ୍ଦେଶ ଅନନ୍ୟ । ଲେଖନୀରେ ସ୍ୱଦେଶପ୍ରେମ ଯେପରି ପ୍ରତିକୀତ, ଜାତୀୟ ଉଦ୍‌ବୋଧନ ସେପରି ପ୍ରତିଭାତ ।

**ସହାୟକ ଗ୍ରନ୍ଥ ସଂକେତସୂଚୀ :**


୧. ଓଡ଼ିଆ ସାହିତ୍ୟରେ ଜାତୀୟତାବାଦୀ ଚେତନା– ପୃ.– ୩୫ । ପ୍ରଥମ ପ୍ରକାଶ– ଜୁଲାଇ, ୧୯୮୫, ଡକ୍ଟର ଶକୁନ୍ତଳା ବଳିଆରସିଂହ ।

୨. ତତ୍ରୈବ– ୩୬

୩. ଅନନ୍ତ ପଟ୍ଟନାୟକ ରଚନା ସମଗ୍ର, ପୃ.– ୧୩୪, ପ୍ରଥମ ପ୍ରକାଶ– ୨୦୦୨, ପ୍ରକାଶକ– ଆର୍ଯ୍ୟ ପ୍ରକାଶନ, ବାଦାମବାଡ଼ି, କଟକ–୨ ।

୪. ଓଡ଼ିଆ ସାହିତ୍ୟରେ ଜାତୀୟବାଦୀ ଚେତନା, ପୃ.–୩୭, ପ୍ରଥମ ପ୍ରକାଶ–ଜୁଲାଇ ୧୯୮୫, ଡକ୍ଟର ଶକୁନ୍ତଳା ବଳିଆରସିଂହ ।

୫. ଜାତୀୟ ଚେତନାର ରୂପକାର କବି ବୀରକିଶୋର, ପୃ.– ୧୧, ପ୍ରଥମ ପ୍ରକାଶ– ୧୯୯୦, ପ୍ରକାଶକ– ଓଡ଼ିଶା ବୁକ୍ ଷ୍ଟୋର୍, ବିନୋଦ ବିହାରୀ, କଟକ–୨, ଲେଖିକା– ଡକ୍ଟର କବିତା କୁମାରୀ ମହାପାତ୍ର ।

୬. Oriya Nationalism, P. 30, Nivedita Mohanty.

୭. ଓଡ଼ିଆ ସାହିତ୍ୟରେ ଜାତୀୟବାଦୀ ଚେତନା, ପୃ.–୨, ପ୍ରଥମ ପ୍ରକାଶ–ଜୁଲାଇ ୧୯୮୫, ଡକ୍ଟର ଶକୁନ୍ତଳା ବଳିଆରସିଂହ ।

୮. ଏଇ ଆମ ମାଟିମାଆ, ପୃ.–୧, ପ୍ରଥମ ପ୍ରକାଶ–୧୯୯୮, ଲେଖକ– ବାଞ୍ଛାନିଧି ଦାସ

୯. ତତ୍ରୈବ, ପୃ.–୩

୧୦. ତତ୍ରୈବ, ପୃ.୪

୧୧. ତତ୍ରୈବ, ପୃ.୨

୧୨. ତତ୍ରୈବ, ପୃ.୬

୧୩. ତତ୍ରୈବ, ପୃ.୭

୧୪. ସଂଜୀବନୀ, ପୃ.–୧୭, ପ୍ରଥମ ପ୍ରକାଶ– ୧୯୫୦, ଲେଖକ– ବାଞ୍ଛାନିଧି ଦାସ

୧୫. ତତ୍ରୈବ, ପୃ.୨୧





ପ୍ରମୁଖ ସଚିବ
ସିସୋର ସାହିତ୍ୟ ଏକାଡେମୀ
୪୪୩, ଶହୀଦ ନଗର, ଭୁବନେଶ୍ୱର

# ଭାରତର ଚିରବନ୍ଦନୀୟ ଜ୍ୟୋତିର୍ବିଦ୍ ପଠାଣି ସାମନ୍ତ

ଗିରିଜାଶଙ୍କର ତରାସିଆ

୧୮୩୯ ମସିହା । ମାତ୍ର ଚାରିବର୍ଷର ବାଳକ ଦିନବେଳେ ଖାଲି ଆଖିରେ ଶୁକ୍ର ଗ୍ରହକୁ ଦେଖି ଆନନ୍ଦରେ ନାଚିଉଠିଲେ । କିନ୍ତୁ ଦିନବେଳେ ଗ୍ରହ ଦେଖିଲେ ଅଶୁଭ ହୋଇଥାଏ ବୋଲି ସେତେବେଳକାର ସମାଜରେ ଅନ୍ଧବିଶ୍ୱାସ ଥିବାରୁ ଏହି ଶିଶୁଟିର ପିତା ଗ୍ରହଶାନ୍ତି ଓ ପାପକ୍ଷଳନ ନିମନ୍ତେ ଜଗନ୍ନାଥ ମହାପ୍ରଭୁଙ୍କୁ ପୂଜାର୍ଚ୍ଚନା କରିଥିଲେ । ଏହି ବିଶ୍ୱ ବିଶ୍ରୁତ ବିସ୍ମୟ ବାଳକ ଆଉ କେହି ନଥିଲେ ସେ ଥିଲେ ଓଡ଼ିଆଜାତିର ଘରେ ଘରେ ଅତି ପରିଚିତ ଆମ ଗୌରବ ପଠାଣି ସାମନ୍ତ । ପିତା ଶ୍ୟାମବନ୍ଧୁ ସିଂହ ଏବଂ ମାତା ବିଷ୍ଣୁମାଳୀ ଦେବୀଙ୍କର ସନ୍ତାନ ଭାବେ ସେ ତତ୍କାଳୀନ ଖଣ୍ଡପଡ଼ା ଗଡ଼ଜାତରେ ୧୮୩୫ ମସିହା ପୌଷମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥିରେ ଜନ୍ମଗ୍ରହଣ କରିଥିଲେ । ଖଣ୍ଡପଡ଼ାର ଅନତିଦୂର ଖୁଣ୍ଟୁପଡ଼ା ଗ୍ରାମସ୍ଥିତ ମହାଦେବ ଶ୍ରୀ ଶ୍ରୀ ଚନ୍ଦ୍ରଶେଖରଙ୍କ ପ୍ରସାଦରୁ ଜନ୍ମଲାଭ କରିଥିବା ବିଶ୍ୱାସ କରି ପିତାମାତା ତାଙ୍କର ନାମ ଚନ୍ଦ୍ରଶେଖର ରଖିଥିଲେ । ଶ୍ୟାମବନ୍ଧୁଙ୍କ ଦୁଇଗୋଟି ଝିଅ ଓ ପୁଅଟିଏ ମରିଯିବାରୁ ଚନ୍ଦ୍ରଶେଖରଙ୍କର ଅପର୍ଚ୍ଚ୍ୟାଣି ନାମ ପଠାଣି ରଖାଯାଇଥିଲା ।

ପାଞ୍ଚବର୍ଷ ବୟସରେ ବାଲ୍ୟଗୁରୁ କୃତ୍ତିବାସ ରଥଙ୍କଠାରୁ ବାଲ୍ୟ ଶିକ୍ଷା ଲାଭ କରିବା ପରେ ପିତା ଶ୍ୟାମବନ୍ଧୁଙ୍କ ଠାରୁ ଗ୍ରହ ନକ୍ଷତ୍ରଙ୍କ ଗତିବିଧି ଓ ଜ୍ୟୋତିଷ ଶାସ୍ତ୍ର ସମ୍ବନ୍ଧରେ ଜ୍ଞାନାର୍ଜନ କରିବା ସହିତ ସଂସ୍କୃତ ଗୁରୁ ପଣ୍ଡିତ ଆନନ୍ଦ ଖାଡ଼ଙ୍ଗାଙ୍କଠାରୁ ସଂସ୍କୃତ ବିଦ୍ୟାଶିକ୍ଷା କରିଥିଲେ । ସେ ତିଗିରିଆ ଗଡ଼ଜାତର ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡାଙ୍କ ଠାରୁ ସଂସ୍କୃତ, ବ୍ୟାକରଣ, ଗଣିତ, ଅଳଙ୍କାର, ନ୍ୟାୟ, ମିମାଂସା, ଦର୍ଶନ ଓ ଜ୍ୟୋତିଷ ଶାସ୍ତ୍ର ଅଧ୍ୟୟନ କରିଥିଲେ । ଇଂରାଜୀ ପଢ଼ିନଥିବା ତଥା ଆଧୁନିକ ବୈଜ୍ଞାନିକ ତଥ୍ୟରାଜି ଏବଂ ଯନ୍ତ୍ରପାତି ସଂସ୍ପର୍ଶରେ ଆସିନଥିବା ସାମନ୍ତ ଚନ୍ଦ୍ରଶେଖର ନିଜଦ୍ୱାରା ଉଦ୍ଭାବିତ ଶଙ୍କୁଦଣ୍ଡ, ଗୋଳଯନ୍ତ୍ର, ଉଲମ୍ୱୀ ଚକ୍ର, ମାନଯନ୍ତ୍ର, ସୂର୍ଯ୍ୟଘଟିକା, ଖଗୋଳଯନ୍ତ୍ରର ସଦୁପଯୋଗ କରି ନକ୍ଷତ୍ରମାନଙ୍କ ସମ୍ପର୍କରେ ଟିପ୍ପଣୀ, ଚନ୍ଦ୍ରକଳା, ଗ୍ରହଚଳନ, ସୌରଜଗତ, ଚନ୍ଦ୍ରଗ୍ରହଣ, ସୂର୍ଯ୍ୟୋପରାଗ ଆଦି ନିର୍ଭୁଲ ଗଣନାକରି ଦୀର୍ଘ ୨୩ ବର୍ଷ ଧରି ବିନିଦ୍ର ରଜନୀ ଅକ୍ଳାନ୍ତ ପରିଶ୍ରମ କରି ସିଦ୍ଧାନ୍ତ ଦର୍ପଣ ପରି ମହାର୍ଘ୍ୟ ଗ୍ରନ୍ଥ ରଚନା କରିପାରିଥିଲେ ।

ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ସିଦ୍ଧାନ୍ତୀୟ ଜ୍ୟୋତିଷ୍ଚର୍ଚ୍ଚାର କେବଳ ଉଚ୍ଚକୋଟୀର ଗ୍ରନ୍ଥଟିଏ ନ ଥିଲା । ଏହା ଥିଲା ସଂସ୍କୃତ ସାହିତ୍ୟ କ୍ଷେତ୍ରର ଗୋଟିଏ ଅମୂଲ୍ୟ ସଂପଦ । ଏହି ଉଚ୍ଚାଙ୍ଗ ଗଣିତ ଜ୍ୟୋତିର୍ବିଜ୍ଞାନ ଗ୍ରନ୍ଥ ସିଦ୍ଧାନ୍ତ ଦର୍ପଣର ରଚୟିତା ପଠାଣି ସାମନ୍ତ ଆର୍ଯ୍ୟଭଟ୍ଟୀୟ ସିଦ୍ଧାନ୍ତ ରଚୟିତା ଆର୍ଯ୍ୟଭଟ୍ଟ୧ମ, ପଞ୍ଚସିଦ୍ଧାନ୍ତିକା ରଚୟିତା ବରାହମିହିର, ବ୍ରହ୍ମସ୍ଫୁଟ ସିଦ୍ଧାନ୍ତ ରଚୟିତା ବ୍ରହ୍ମଗୁପ୍ତ ସିଦ୍ଧାନ୍ତ ଶିରୋମଣି ରଚୟିତା ଭାସ୍କର, ଗ୍ରହଲାଘବର ରଚୟିତା ଗଣେଶ, ଗ୍ରୀସ ଦେଶର ମନୀଷୀ ପିଥାଗୋରେସ୍, ପ୍ଲାଟୋ, ଆରିଷ୍ଟଟଲ, ଇଟାଲୀୟ ବୈଜ୍ଞାନିକ ଗାଲିଲିଓ, ଡେନ୍‌ମାର୍କର ଟାଇକୋବ୍ରାହେ ଏବଂ ପୋଲାଣ୍ଡଦେଶୀୟ ଜ୍ୟୋତିର୍ବିଜ୍ଞାନୀ ନିକୋଲସ କୁପରନିକସଙ୍କଠାରୁ କୌଣସି ଗୁଣରେ ଊଣା ନ ଥିଲେ ।

ଅଧ୍ୟାପକ ବୀର ହନୁମାନ ଶାସ୍ତ୍ରୀଙ୍କ ଦ୍ୱାରା ସଂକଳିତ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ମୁଖବନ୍ଧରେ ଉଲ୍ଲେଖ ରହିଛି ଯେ ସାମନ୍ତ ଚନ୍ଦ୍ରଶେଖର ୧୮୬୯ ମସିହା ମେଷ ସଂକ୍ରମଣ ଦିନ ସାମନ୍ତ ଦର୍ପଣ ସାରଣୀ ପ୍ରସ୍ତୁତ କରିବା ସହିତ ଏହି ଦିନ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥର ରଚନା ଆରମ୍ଭ କରିଥିଲେ । ୩୪ ବର୍ଷ ବୟସରୁ ଆରମ୍ଭ କରିଥିବା ଏହି ଗ୍ରନ୍ଥ ମୁକୁନ୍ଦଦେବଙ୍କ ୧୪ ଅଙ୍କ ମାର୍ଗଶିର ମାସ ଶୁକ୍ଳପକ୍ଷ ନବମୀ ଶନିବାର ଅର୍ଥାତ୍ ଇଂରାଜୀ ୧୮୯୨ ମସିହା ନଭେମ୍ବର ମାସ ୧୨ ତାରିଖ ଦିନ ସମାପ୍ତ ହୋଇଥିଲା । ଅତି ସୁନ୍ଦର ପଦ୍ୟାବଳୀ ସହିତ ସଂସ୍କୃତ ଭାଷାରେ ଲିଖିତ ଏହି ବୃହତ୍ ଗ୍ରନ୍ଥରେ ୨୪ଟି ବିଭାଗ ଏବଂ ୨୫୦୦ ଶ୍ଳୋକ ସ୍ଥାନିତ ହୋଇଛି । ତନ୍ମଧ୍ୟରୁ ୨୨୮୪ଟି ଶ୍ଳୋକ ସାମନ୍ତଙ୍କ ଦ୍ୱାରା ରଚିତ ହୋଇଥିବା ବେଳେ ଅବଶିଷ୍ଟ ପୁରାତନ ସିଦ୍ଧାନ୍ତମାନଙ୍କରୁ ଗୃହୀତ । ଏହି ଗ୍ରନ୍ଥ ମଧ୍ୟାଧିକାର,

ସ୍ଫୁଟାଧିକାର, ତ୍ରିପ୍ରଶ୍ନାଧିକାର, ଗୋଳାଧିକାର, କାଳାଧିକାର ପରି ପଞ୍ଚଅଧିକାରରେ ବିଭକ୍ତ ।

ତାଳପତ୍ର ଉପରେ ଲିଖିତ ପଠାଣି ସାମନ୍ତଙ୍କ ହସ୍ତଲିପିକୁ ଘନଶ୍ୟାମ ମିଶ୍ର କାଗଜକୁ ଉତ୍ତାରିଥିଲେ । ତତ୍‌କାଳୀନ କରଦରାଜ୍ୟ ସମୂହର ତଦନାନ୍ତୀନ ସହକାରୀ ସୁପରିନ୍‌ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ସୁଦାମଚରଣ ନାୟକଙ୍କ ଉଦ୍ୟମରେ ଆଠମଲ୍ଲିକ ରାଜା ଶ୍ରୀଯୁକ୍ତ ମହେନ୍ଦ୍ର ଦେଓ ଓ ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ଆର୍ଥିକ ସହାୟତା କ୍ରମେ କଲିକତାସ୍ଥିତ ଗିରୀଶ ବିଦ୍ୟାରତ୍ନ ମୁଦ୍ରଣାଳୟରେ ୧୮୯୪ ମସିହାରେ ଛାପାକାର୍ଯ୍ୟ ଆରମ୍ଭ ହୋଇଥିଲା । ଏହି ଗ୍ରନ୍ଥ ମୁଦ୍ରିତ ହେବାରେ ୧୨୫୦ ଟଙ୍କା ବ୍ୟୟ କରାଯାଇଥିଲା ।

ଆଧୁନିକ ବିଦ୍ୟାଳୟର ବାରଣ୍ଡା ମାଡ଼ିନଥିବା ତଥା ଇଂରାଜୀ ପଢ଼ିନଥିବା ଏପରିକି ଦୂରବୀକ୍ଷଣ ଯନ୍ତ୍ରଟିଏ ଦେଖିନଥିବା ଓଡ଼ିଆ ଜ୍ୟୋତିର୍ବିଜ୍ଞାନୀଙ୍କ ସଂପର୍କରେ ଲଣ୍ଡନର ବିଖ୍ୟାତ ବିଜ୍ଞାନ ପତ୍ରିକା ନେଚର ଏବଂ ନଲେଜ ୧୮୯୯ ମସିହାରେ ଦର୍ଶାଇଥିଲେ କି, ''ଏହି ସାଧକ ବିଜ୍ଞାନୀ ହେଉଛନ୍ତି ୟୁରୋପୀୟ ମହାଦେଶର ପ୍ରସିଦ୍ଧ ଜ୍ୟୋତିର୍ବିଜ୍ଞାନୀ ଟାଇକୋବ୍ରାହେଙ୍କଠାରୁ ଶ୍ରେଷ୍ଠତର ।''

ରେଭେନ୍‌ସା ମହାବିଦ୍ୟାଳୟର ବିଜ୍ଞାନ ଅଧ୍ୟାପକ ଗୁଣଗ୍ରାହୀ ରାୟବାହାଦୁର ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି ତତ୍‌କାଳୀନ ପ୍ରସିଦ୍ଧ ବଙ୍ଗଳା ପତ୍ରିକା 'ନବ୍ୟ ଭାରତ'ରେ ୧୮୯୩ ଖ୍ରୀଷ୍ଟାବ୍ଦରେ ଦୁଇଗୋଟି ପ୍ରବନ୍ଧ ଲେଖି ସାମନ୍ତ ଚନ୍ଦ୍ରଶେଖରଙ୍କୁ ପାଠକମାନଙ୍କ ନିକଟରେ ପରିଚିତ କରାଇଥିଲେ । ସେ ଉଲ୍ଲେଖ କରିଥିଲେ କି, ''ସିଦ୍ଧାନ୍ତ ଦର୍ପଣଗ୍ରନ୍ଥ ହିନ୍ଦୁ ଜ୍ୟୋତିଷଶାସ୍ତ୍ରର କିୟତ୍ ପରିମାଣ ସଂସ୍କାର ସମ୍ପାଦନ କରି ହିନ୍ଦୁ ଜ୍ୟୋତିଷର ମୌଳିକତା ଓ ଶୁଦ୍ଧତା ରକ୍ଷା କରିଛି ।'' ଶୁଣାଯାଏ ଯେ, ମେଦିନୀପୁର ନନ୍ଦୀଗ୍ରାମର ରୁଦ୍ରନାରାୟଣ ଜ୍ୟୋତିର୍ଭୂଷଣ ଭଟ୍ଟାଚାର୍ଯ୍ୟ ନାମକ ଜନୈକ ପଣ୍ଡିତ ସାମନ୍ତ ଚନ୍ଦ୍ରଶେଖରଙ୍କର ଖଣ୍ଡପଡ଼ାସ୍ଥିତ ବାସଗୃହରେ ପ୍ରାୟ ଦୁଇବର୍ଷ ଅବସ୍ଥାନ କରି ସିଦ୍ଧାନ୍ତ ଦର୍ପଣଗ୍ରନ୍ଥ ଅଧ୍ୟୟନ କରିଥିଲେ ଏବଂ ରୁଦ୍ରନାରାୟଣଙ୍କ ସୂତ୍ରରୁ ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ପଠାଣିସାମନ୍ତଙ୍କ ପ୍ରତିଭାର ସନ୍ଧାନ ପାଇଥିଲେ ।

ପଠାଣି ସାମନ୍ତଙ୍କର କେତେଜଣ ପ୍ରଧାନ ଶିଷ୍ୟଙ୍କ ମଧ୍ୟରେ ମଞ୍ଜୁଷା ରାଜସଭାର ପଣ୍ଡିତ ବଲ୍ଲଭ ବିଦ୍ୟାଭୂଷଣ, କୃଷ୍ଣଚନ୍ଦ୍ର ବାଣୀଭୂଷଣ, ଶ୍ରୀଧର ପ୍ରହରାଜ, ତାଳଚେରର ଦାମୋଦର ବାଣୀଭୂଷଣ, ସଦାଶିବ ଖଡ଼ିରତ୍ନ, ଖଣ୍ଡପଡ଼ାର ରାଜବଲ୍ଲଭ ମିଶ୍ର, ଅତଙ୍ଗଶାସନର ଆଦିକନ୍ଦ ତ୍ରିପାଠୀ ପଭୃତି ଥିଲେ ଅନ୍ୟତମ ।

ପଞ୍ଚଦଶ ଶତାବ୍ଦୀରେ ବିଶ୍ୱନାଥ କବିରାଜଙ୍କ ଦ୍ୱାରା ଲିଖିତ ସାହିତ୍ୟ ଦର୍ପଣ ପରି ସାମନ୍ତ ଚନ୍ଦ୍ରଶେଖରଙ୍କର ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ସଂସ୍କୃତ ସାହିତ୍ୟକୁ ଓଡ଼ିଶାର ବିଶିଷ୍ଟ ଅବଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ଏକ ନିରସ ଗାଣିତିକ ବା ତାର୍କିକ ବ୍ୟାଖ୍ୟା ଅଥବା ବିବରଣୀ ସମ୍ବଳିତ ଗ୍ରନ୍ଥ ନୁହେଁ ପରନ୍ତୁ ଏହା ସଂସ୍କୃତ ଭାଷାରେ ଲିଖିତ ଏକ ଅନନ୍ୟ ଉଚ୍ଚାଙ୍ଗ କାବ୍ୟର ଶ୍ରେୟ ବହନ କରେ । ଏହାର ଶବ୍ଦାଳଙ୍କାର ଅର୍ଥଗାରିମା, ଛନ୍ଦୋବଦ୍ଧତା, ଉପମା, ଯମକ, ଅନୁପ୍ରାସ ତଥା ଭାବଗାମ୍ଭୀର୍ଯ୍ୟ ଆଦି ଏହାକୁ ଏକ ମହାନ୍ ଗ୍ରନ୍ଥର ସ୍ୱୀକୃତି ପ୍ରଦାନ କରିଛି । ସିଦ୍ଧାନ୍ତଦର୍ପଣ ଗ୍ରନ୍ଥ ରଚନା ବ୍ୟତିରେକେ ସାମନ୍ତ ସଂସ୍କୃତ ଭାଷାରେ ଦର୍ଶଦୀପିକା ଏବଂ ଓଡ଼ିଆ ଭାଷାରେ ଦର୍ପଣସାର ନାମକ ଦୁଇଗୋଟି କ୍ଷୁଦ୍ର ପୁସ୍ତକ ମଧ୍ୟ ରଚନା କରିଥିଲେ ।

୬୮ ବର୍ଷ ୫ ମାସ ୨୮ ଦିନର ମାନବୀୟ ଲୀଳାଖେଳା ସମାପ୍ତ କରି ଉତ୍କଳର ବରପୁତ୍ର ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ର ସାମନ୍ତ ୧୯୦୪ ମସିହା ଜୁନ୍‌ମାସ ୧୧ ତାରିଖ ଜ୍ୟେଷ୍ଠ ଅଧିମାସ କୃଷ୍ଣ ଦ୍ୱାଦଶୀ ଦିନ ଶ୍ରୀକ୍ଷେତ୍ରରେ ମହାକାଳର ଯାତ୍ରୀ ହେଲେ ।

କୌଣସି ପାର୍ଥିବ ଭୋଗବାସନା ଅଥବା ମାନବ ପ୍ରଦତ୍ତ ସମ୍ମାନ ପ୍ରତି ସାମାନ୍ୟତମ ଅଭିଳାଷ ପୋଷଣ କରି ନ ଥିବା ଏହି ମହାନ୍ ସାଧକଙ୍କର ପ୍ରଶଂସା କରିବାକୁ ଯାଇ କବିବର ରାଧାନାଥ ରାୟ ତାଙ୍କ ରଚିତ ପ୍ରସିଦ୍ଧ ଦରବାର କାବ୍ୟରେ କହି ଉଠିଥିଲେ କି–

''ଜାଣେ ମୁଁ ନ ଥିଲ ସମ୍ମାନ ଆଶାୟୀ,
ସମ୍ମାନ ତୁମ୍ଭଙ୍କୁ ଲୋଡ଼ିନେଲା ଯାଇ
ତୁମ୍ଭ ମୁଖ୍ୟ କର୍ମ ତପ ଆଚରିବା,
ଦୁନିଆର ଯଶେ ଯାଏ ଆସେ କିବା ?''



ସଂପାଦକ
ପଠାଣି ସାମନ୍ତ ମେମୋରିଆଲ ପରିଷଦ
ଖଣ୍ଡପଡ଼ା, ଜି–ନୟାଗଡ଼

# କନିକା ପ୍ରଜା ଆନ୍ଦୋଳନରେ ବିପ୍ଳବୀ ଆନନ୍ଦ ଜେନାଙ୍କର ଭୂମିକା

ତାରାକାନ୍ତ ମହାନ୍ତି

ମହାତ୍ମାଗାନ୍ଧୀଙ୍କ ସ୍ୱାଧୀନତା ଆନ୍ଦୋଳନରେ ବଳିଷ୍ଠ ନେତୃତ୍ୱ ନେବା ଭାରତର ଇତିହାସରେ ଏକ ମହାନ୍ ଐତିହାସିକ ଘଟଣା । ଦକ୍ଷିଣ ଆଫ୍ରିକାରେ ଦୀର୍ଘ ଦୁଇ ଦଶନ୍ଧି ରହିବା ପରେ ଓ ସେଠାରେ ଅବସ୍ଥାନ ସମୟରେ ସତ୍ୟାଗ୍ରହ ଆନ୍ଦୋଳନର ପ୍ରଥମ ବୀଜବପନ କରିଥିଲେ । ସେପ୍ଟେମ୍ବର ୧୧ ତାରିଖ ୧୯୦୬ ମସିହାରେ ଦକ୍ଷିଣ ଆଫ୍ରିକାର ଜୋହାନ୍ସବର୍ଗଠାରେ ଏମ୍ପାୟାର୍ ଥିଏଟରସ୍ (Empire Theaters) । ଏହି ଦିନ ହଜାର ହଜାର ଭାରତୀୟ ଏକାଠି ହୋଇଥିଲେ ଏବଂ ନିଜ ଅଧିକାର ପାଇଁ ସଂଗ୍ରାମ ଆରମ୍ଭ କରିଥିଲେ । ଏହି ସଭାରେ ମୋହନଦାସ କରମଚାନ୍ଦ ଗାନ୍ଧୀ ଏକ ନୂଆ ଶବ୍ଦ କହିଥିଲେ । ଶବ୍ଦଟି ହେଉଛି ସତ୍ୟାଗ୍ରହ ଅର୍ଥାତ୍ ସତ୍ୟ ପ୍ରତି ଆଗ୍ରହ । ଦକ୍ଷିଣ ଆଫ୍ରିକାର ୮ ହଜାର ଭାରତୀୟ ଶ୍ରମିକଙ୍କୁ ସେଠି ରହିବା ପଞ୍ଜୀକରଣ କରିବାକୁ ସରକାର ନିର୍ଦ୍ଦେଶ ଦେଇଥିଲେ । ୧୪ ବର୍ଷର ଆନ୍ଦୋଳନ ପରେ ୩୦ ଜୁନ୍ ୧୯୧୪ରେ ସରକାର ଏବଂ ଭାରତୀୟ ସମୁଦାୟ ମଧ୍ୟରେ ବୁଝାମଣା ହୋଇଥିଲା । ସତ୍ୟାଗ୍ରହ ପରିଭାଷା ସମ୍ପର୍କରେ ଗାନ୍ଧି କହିଥିଲେ ''ସତ୍ୟାଗ୍ରହରେ ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ଭାବରେ ମନ ଓ ବଚନ ଓ କର୍ମରେ କୌଣସି ପ୍ରକାର ହିଂସାର ସମାବେଶ ନାହିଁ । ସତ୍ୟାଗ୍ରହ କୌଣସି ଦ୍ୱେଷର ବା କ୍ରୋଧର ପରିଣାମ ହେବା ଉଚିତ୍ ନୁହେଁ ।'' ଏହା ମଧ୍ୟରେ ସତ୍ୟାଗ୍ରହର ଏକଶତ ବର୍ଷ ପୂର୍ତ୍ତି ରହିଛି । ସତ୍ୟାଗ୍ରହର ସବୁ ଶାସନ ଓ ପ୍ରଶାସନରେ ପ୍ରାସଙ୍ଗିକତା ରହିଛି ।

ପ୍ରଥମ ବିଶ୍ୱଯୁଦ୍ଧ ବେଳକୁ ୧୯୧୫ରେ କଂଗ୍ରେସ ଜାତୀୟ ଦଳର ଅପ୍ରତିଦ୍ୱନ୍ଦ୍ୱୀ ନେତା ରୂପେ ଉଭା ହେଲେ । ଅବଶ୍ୟ ଗୋପାଳକୃଷ୍ଣ ଗୋଖେଲ, ଫିରୋଜଶାହ ମେହେଟା ଏବଂ ବାଳ ଗଙ୍ଗାଧର ତିଳକଙ୍କ ଦେହାନ୍ତ ପରେ । ଏହା ମଧ୍ୟରେ ସେ ସ୍ୱଚକ୍ଷୁରେ ନୀଳଚାଷୀଙ୍କ ଚମ୍ପାରଣ ସତ୍ୟାଗ୍ରହ, ଖିଲାଫତ୍ ଆନ୍ଦୋଳନ ଓ ପଞ୍ଜାବର ଜାଲିଓ୍ୱାନାଓ୍ୱାଲାବାଗରେ ନରସଂହାର ଘଟଣାମାନ ସେ ଦେଖିସାରିଛନ୍ତି । ତାଙ୍କ ଜୀବନରେ ଭାରତର ସ୍ୱାଧୀନତା ସଂଗ୍ରାମ ହାସଲ କରିବା ଲାଗି ଅସହଯୋଗ ଆନ୍ଦୋଳନ, ଆଇନ୍ ଅମାନ୍ୟ ଆନ୍ଦୋଳନ ଓ ୧୯୪୨ରେ ଭାରତ ଛାଡ଼ ଆନ୍ଦୋଳନରେ ବ୍ରିଟିଶ ସରକାର ବିରୋଧରେ ସ୍ୱାଧୀନତା ସଂଗ୍ରାମ ଜାରି ରଖିଥିଲେ ।

ଗାନ୍ଧିଙ୍କର ଡାକରାରେ ଅସହଯୋଗ ଆନ୍ଦୋଳନରେ ସେତେବେଳେ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମୀ କେନ୍ଦ୍ରାପଡ଼ାର ଶ୍ରୀ ଆନନ୍ଦ ଜେନା ସେଥିରେ ଝାସ ଦେଇ ତତ୍କାଳୀନ କନିକା ରାଜାଙ୍କ ପ୍ରଜାମାନଙ୍କ ପ୍ରତି ଅମାନୁଷିକ ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରି କାରାବରଣ କରିଥିଲେ । ୧୯୨୨ରେ ବ୍ରିଟିଶ୍ ସରକାର ଏକ ରାୟରେ ତାଙ୍କୁ ବିଦ୍ରୋହୀ ବିପ୍ଳବୀ ବୋଲି ଘୋଷଣା କରିଥିଲେ । ଏହା ମଧ୍ୟରେ ୨୦୧୦ରେ ତାଙ୍କର ୧୨୬ତମ ଜନ୍ମବାର୍ଷିକୀ ପାଳିତ ହୋଇଯାଇଅଛି । ଏଥିରୁ ତାଙ୍କ ଜନ୍ମ ୧୮୮୪ ମସିହାରେ ହୋଇଥିବା ଜଣାଯାଏ । ସେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କଠାରୁ ବୟସରେ ପନ୍ଦର ବର୍ଷ ସାନ । କନିକା ପ୍ରଜା ଆନ୍ଦୋଳନରେ ସେ ମୁଖ୍ୟ ପୁରୋଧା ଥିଲେ, ଯାହାକୁ କେନ୍ଦ୍ରାପଡ଼ା ଜିଲ୍ଲାର ଇତିହାସ ଓ ଓଡ଼ିଶା ଇତିହାସ ମୁକ୍ତ କଣ୍ଠରେ ସ୍ୱୀକାର କରୁଛି ।

ଶ୍ରୀ ଜେନା ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ଜନଜାଗରଣ ଓ ଜନସଚେତନତା ସୃଷ୍ଟି କରିବା ପାଇଁ ସ୍ୱାଧୀନତା ସଂଗ୍ରାମର କେନ୍ଦ୍ରାପଡ଼ା ଜିଲ୍ଲାର କୁଶଳୀ ବିନ୍ଧାଣୀ ସ୍ୱର୍ଗତ ଆନନ୍ଦ ଜେନା ତତ୍କାଳୀନ କନିକା ରାଜାଙ୍କର ପ୍ରଜାମାନଙ୍କ ପ୍ରତି ଅକଥନୀୟ ଅତ୍ୟାଚାର ଓ ବ୍ରିଟିଶ ଶାସକଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିବା ପାଇଁ ''ଦୁଃଖିନୀ କନିକା'' ପୁସ୍ତକ ମାଧ୍ୟମରେ ବ୍ୟକ୍ତ କରିଥିଲେ ।

ଏହା ବଡ଼ କ୍ଷୋଭର ବିଷୟ ଯେ ଏବେ ସୁଦ୍ଧା ଖୁବ୍ କମ୍ ଲୋକ ଏପରି ଉଚ୍ଚକୋଟୀର ସ୍ୱାଧୀନତା ସଂଗ୍ରାମୀଙ୍କ ବିଷୟରେ କିଛି ଜାଣି ନାହାନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଆନନ୍ଦ ଜେନାଙ୍କର ସ୍ୱର୍ଗତ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହିତ ଉତ୍ତମ ସମ୍ପର୍କ ଥିଲା । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ସାରା ଓଡ଼ିଶାରେ ମହାତ୍ମା ଗାନ୍ଧିଙ୍କର ସ୍ୱାଧୀନତା ସଂଗ୍ରାମ ପାଇଁ ପଦକ୍ଷେପ ଓ ସବୁରି ପରି ବ୍ରିଟିଶ୍ ଶାସକଙ୍କ ବିରୋଧରେ ଆରମ୍ଭ ହୋଇଥିବା ଅସହଯୋଗ ଆନ୍ଦୋଳନ ସମ୍ପର୍କରେ ବୁଝାଉଥିଲେ ଓ ସେଥିପାଇଁ ସଭା ସମିତିମାନ ଆୟୋଜନ ହେଉଥିଲା ରାଜ୍ୟବ୍ୟାପୀ । ଗୋପବନ୍ଧୁ ଦାସ ଇତ୍ୟବସରରେ କନିକା ଯାଇଥିଲେ । ସେଠି ଆନନ୍ଦ ଜେନା ତାଙ୍କ ରଚିତ ଦୁଃଖିନୀ କନିକା ପୁସ୍ତକଟି ତାଙ୍କୁ ଅର୍ପଣ କରିଥିଲେ । ଗୋପବନ୍ଧୁ ଦାସ, ଏହାକୁ ଇଂରାଜୀରେ ଅନୁବାଦ କରି ୧୯୨୧ ମସିହା ମାର୍ଚ୍ଚ ୨୪ ତାରିଖରେ ଯେତେବେଳେ ମହାତ୍ମା ଗାନ୍ଧି ଓଡ଼ିଶା ପରିଦର୍ଶନରେ ଆସିଥିଲେ, ସେତେବେଳେ ଆନନ୍ଦ ଜେନାଙ୍କ ଉପସ୍ଥିତିରେ ସେ ପୁସ୍ତକଟି ଗାନ୍ଧିଜୀଙ୍କ ହସ୍ତରେ ଅର୍ପଣ କରିଥିଲେ । ମହାତ୍ମା ଗାନ୍ଧୀ ଏହାକୁ ଅତି ଆଦରରେ ନେଇ ଗାନ୍ଧିଜୀଙ୍କ ଦ୍ୱାରା ପ୍ରକାଶିତ 'ୟଙ୍ଗ୍ ଇଣ୍ଡିଆ' (Young India) ସମ୍ବାଦପତ୍ରରେ ନିୟମିତ ଭାବେ ପ୍ରକାଶ କରୁଥିଲେ । ଯାହାଫଳରେ ଭାରତର ସ୍ୱାଧୀନତା ସଂଗ୍ରାମୀମାନଙ୍କ ମନରେ ଏହା ଉପକୂଳୀୟ ଓଡ଼ିଶାର କେନ୍ଦ୍ରାପଡ଼ା ଜିଲ୍ଲାରେ ପ୍ରଜାମାନଙ୍କ ଉପରେ ହେଉଥିବା ଅକଥନୀୟ ଅତ୍ୟାଚାର ବିଷୟରେ ଖୋରାକ୍ ଯୋଗାଇଥିଲା ଓ କେନ୍ଦ୍ରାପଡ଼ାର ସ୍ୱାଧୀନତା ସଂଗ୍ରାମୀମାନଙ୍କ ପ୍ରତି ସମବେଦନା ଓ ସହାନୁଭୂତି ସୃଷ୍ଟି କରିଥିଲା । ଏହା ୧୯୨୨ରେ ମୁଦ୍ରିତ ହୋଇଥିଲା ।

ଏହା ବ୍ୟତୀତ ଏକ ଦୁଷ୍ପ୍ରାପ୍ୟ ପତ୍ରରୁ ଯାହା ସୂଚନା ମିଳେ ତାହା ହେଉଛି ୨୨.୦୨.୨୩ ମସିହାର , ଯାହାକୁ କନିକା ରାଜା, ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ତତ୍କାଳୀନ ଭଦ୍ରକର ସବ୍‌ଡିଭିଜନାଲ ଅଫିସର ଦିଲୱାର ଅଲ୍ଲିଙ୍କୁ ଲେଖିଥିଲେ ଯାହା ସ୍ୱାଧୀନତା ଆନ୍ଦୋଳନରେ ଲିପ୍ତଥିବା ସ୍ୱାଧୀନତା ସଂଗ୍ରାମୀ ହରେକୃଷ୍ଣ ମହତାବଙ୍କ ସମେତ ସେମାନଙ୍କ ବିରୋଧରେ ଲେଖାଯାଇଥିଲା ଯେ ସେମାନେ ତାଙ୍କ ବିରୋଧରେ ଏକ ବୈଠକ ଡକାଇ ସେଥିରେ ରାଜାଙ୍କର ବିରୋଧରେ ସଂଗ୍ରାମ କରିବା ପାଇଁ ପ୍ରସ୍ତୁତ ହେଉଛନ୍ତି । ସେମାନଙ୍କୁ ଥାନାକୁ ଡକାଇ ନିଆଯାଇ ଅଟକ ରଖାଯାଉ ।

ଏବେବି କନିକା ପ୍ରଜାଙ୍କ (Tenant Ledger)ରୁ ଏହି ତଥ୍ୟ ମିଳୁଛି ଯେ ସେଥିରେ କନିକା ରାଜା ପ୍ରଜାମାନଙ୍କଠାରୁ ୬୪ ରକମ ଟିକସ ଆଦାୟ କରୁଥିଲେ ଓ ଅନାଦେୟ ମୌଖିକ ଭାବେ ଘର ଡିହ ନିଲାମ କରିଦେଉଥିଲେ । ଏପରିକି ଗୋବର ଟିକସ, ଆଖୁ ଓ ବେତ ଟିକସ, ଅଣ୍ଡା ଟିକସ, ମହମ ଟିକସ ମଧ୍ୟ ଆଦାୟ କରୁଥିଲେ । (Cow-Dung tax, Cane tax, Egg tax and Wax tax and some.)

ଶ୍ରୀ ଜେନାଙ୍କର ମହାତ୍ମାଗାନ୍ଧୀଙ୍କ ସହିତ ସମ୍ପର୍କ ଆହୁରି ନିବିଡ଼ ହେଲା ୧୯୨୧ ମାର୍ଚ୍ଚ ୨୪ ଠାରୁ, ଯେତେବେଳେ ମହାତ୍ମାଗାନ୍ଧୀ ୧୯୨୧ରେ ପ୍ରଥମେ ଓଡ଼ିଶା ପରିଦର୍ଶନରେ ଆସିଲେ । ତା ପରେ ଦୁଃଖିନୀ କନିକାର ଇଂରାଜୀ ଅନୁବାଦ ୧୯୨୨ ପରେ Young India ପତ୍ରିକାରେ ପ୍ରକାଶନ ପରେ, ମହାତ୍ମାଗାନ୍ଧୀ ୧୯୨୫ ଅଗଷ୍ଟ ୯ରେ ଓଡ଼ିଶା ପରିଦର୍ଶନରେ ଆସିବା ପରେ । ମହାତ୍ମା ଗାନ୍ଧୀ ଓଡ଼ିଶାକୁ ସମୁଦାୟ ୫ ଥର ପରିଦର୍ଶନରେ ଆସିଛନ୍ତି । ତୃତୀୟ ଥର ଆସିଥିଲେ ୧୯୨୭ରେ ଚତୁର୍ଥ ଥର ୧୯୩୪, ମାର୍ଚ୍ଚ ୫ରେ ଓ ହା ରାମ୍ କହି ୧୯୪୮, ଜାନୁଆରୀ ୩୧ ତାରିଖର ଠିକ୍ ଦଶବର୍ଷ ପୂର୍ବରୁ ୧୯୩୮ ମାର୍ଚ୍ଚ ୨୫ରେ ପଞ୍ଚମ ଥର ପୁରୀ ଜିଲ୍ଲା ଡେଲାଙ୍ଗର ବେରବୋରଠାରେ ଗାନ୍ଧୀ ସେବାଶ୍ରମର ବାର୍ଷିକ ଉତ୍ସବରେ ଯୋଗ ଦେବା ପାଇଁ ।

ଓଡ଼ିଶାର ଇତିହାସର ଏହି ଅଲୋଡ଼ା ଓ ଅଖୋଜା ସ୍ମୃତିକୁ ଲୋକଲୋଚନକୁ ଆଣିବାରେ ୨୦ ବର୍ଷ ନିରବଚ୍ଛିନ୍ନ ଗବେଷଣା କରିଥିବା କେନ୍ଦ୍ରାପଡ଼ାର ପ୍ରତିଷ୍ଠିତ ଓକିଲ ମହମ୍ମଦ ମୁସ୍ତକ୍ ଯେ କି ନିକଟରେ କେନ୍ଦ୍ରାପଡ଼ାରେ ସ୍ୱାଧୀନତା ସଂଗ୍ରାମ ଆନନ୍ଦ ଜେନାଙ୍କ ୧୨୬ ତମ ଜନ୍ମ ବାର୍ଷିକୀ ପାଳନ ଅବସରରେ କେନ୍ଦ୍ରାପଡ଼ା ସଙ୍ଗୀତ ସ୍କୁଲ ହଲ୍‌ରେ ଏକ ଫଟୋ ପ୍ରଦର୍ଶନୀର ଆୟୋଜନ କରି ଯେଉଁଥିରେ ୭୦ଟି ଫଟୋ, ଡକ୍ୟୁମେଣ୍ଟ୍‌ସ, ପୁରୁଣା ସମ୍ବାଦପତ୍ର ଏବଂ ପତ୍ରିକା ଯେଉଁଥିରେ ବିପ୍ଳବୀ ଆନନ୍ଦ ଜେନା ବିଶେଷଭାବେ ସମ୍ପୃକ୍ତ ଥିଲେ ବୋଲି ପ୍ରକାଶ ପାଇଥିଲା । ଏହାଛଡ଼ା ଏବଂ original tenant ledger of Kanika showing 64 types of taxes collected by the Raja ଏବଂ ଏହାଛଡ଼ା କନିକା ରାଜାଙ୍କର ଜଣେ ପୂର୍ବତନ କର୍ମଚାରୀ ଲମ୍ବୋଦର ମହାପାତ୍ରଙ୍କର ବ୍ୟକ୍ତିଗତ ଦିନଲିପି (personal diary) ଯେଉଁଥିରେ ସେ ତତ୍କାଳୀନ କନିକା ରାଜାଙ୍କର ପ୍ରଜାମାନଙ୍କର ଅତ୍ୟାଚାର ଓ ନିର୍ଯାତନାର କାହାଣୀ ବିସ୍ତୃତ ଭାବେ ବର୍ଣ୍ଣନା କରାଯାଇଛି ।



ଡି-୩୫, ଷ୍ଟାର ସିଟି,
ପଟିଆ, ଭୁବନେଶ୍ୱର-୨୪

# ଆଦର୍ଶ ଶିକ୍ଷକର ମୂର୍ତ୍ତିମନ୍ତ ପ୍ରତୀକ ମହାତ୍ମାଗାନ୍ଧୀ

**ଦୁଃଖିଶ୍ୟାମ ଦାସ**

ମହାତ୍ମାଗାନ୍ଧି ଥିଲେ ସତ୍ୟ ଓ ଅହିଂସାର ମୂର୍ତ୍ତିମନ୍ତ ପ୍ରତୀକ । ଉତ୍ତୁଙ୍ଗ ନୀତି ଓ ଆଦର୍ଶକୁ ପାଥେୟ କରି ଜୀବନର ପ୍ରତି ପଦକ୍ଷେପରେ ସେ ସତ୍ୟର ଅନୁଶୀଳନ କରିବା ସହିତ ଏହାର ପରୀକ୍ଷା ନିରୀକ୍ଷା ଦିଗରେ ନିଜକୁ ନିୟୋଜିତ କରୁଥିଲେ । ଜାତିର ଜନକ ମହାନୁଭବୀ ବାପୁ ମହତ୍ତର ଜୀବନ ଦର୍ଶନ ଓ ଅପ୍ରମିତ ଉଦାରତାର ଶୀର୍ଷରେ ଉପନୀତ ହୋଇ ଜଗତକୁ ଯେଉଁ ଅମର ବାଣୀ ବିତରଣ କରି ଯାଇଛନ୍ତି ତାହାର ପଟାନ୍ତର ନାହିଁ । ଏହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତର ବାସ୍ତବ ରୂପରେଖ ମିଳେ ୧୯୧୦ ମସିହାରେ ଦକ୍ଷିଣ-ଆଫ୍ରିକାରେ ତାଙ୍କ ଅବସ୍ଥାନ କାଳର ଘଟଣାରୁ । ଜୋହାନ୍ସବର୍ଗଠାରୁ ୨୧ ମାଇଲ ଦୂରରେ ସେ ସ୍ଥାପନ କରନ୍ତି ଟଲଷ୍ଟୟ ଫାର୍ମ । ସୁନ୍ଦର ପ୍ରାକୃତିକ ପରିବେଶରେ ସବୁଜିମାଭରା ଉଦ୍ୟାନର ନିତ୍ୟ କାକଳୀର ରାଗିଣୀରେ ହଜି ସେ ନିଜର ଅପୂରଣୀୟ ସ୍ୱପ୍ନ ସାକାର ନିମନ୍ତେ କର୍ମତତ୍ପର ହୋଇଉଠନ୍ତି । ଫାର୍ମଟିର ଉତ୍ତରୋତ୍ତର ଉନ୍ନତି ଓ ପ୍ରତିଷ୍ଠା ଆଣିବା ନିମନ୍ତେ ସେ ଅନନ୍ତର ଚିନ୍ତା ପ୍ରକଟ କରନ୍ତି ଏବଂ ନିଜର ଅକ୍ଳାନ୍ତ ପରିଶ୍ରମ, ଐକାନ୍ତିକ ନିଷ୍ଠା ତଥା ଫାର୍ମର ଅନ୍ତେବାସୀଙ୍କ ସକ୍ରିୟ ସହଯୋଗରେ ସଫଳତା ହାସଲର ପଥ ଉନ୍ମୋଚିତ ହୁଏ । ଖଣ୍ଡ ମଣ୍ଡଳରେ ଏହି ଫାର୍ମଟି ଏକ ପ୍ରଗତିଶୀଳ ଓ ଶୋଭାବର୍ଦ୍ଧନକାରୀ ଫାର୍ମ ଭାବେ ଜନମୁଖରେ ଆଦର ଲାଭ କରେ । ଅନ୍ତେବାସୀମାନେ ତାଙ୍କର ମହାନତା ଓ ହୃଦୟବତ୍ତା ପାଖରେ ନତମସ୍ତକ ହୋଇ ତାଙ୍କୁ ସେମାନଙ୍କର ମୁରବି ବା ପରିବାରର ପିତା ସ୍ଥାନରେ ଅଧିଷ୍ଠିତ କରି ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରନ୍ତି । ଏ କଥା ସତ ଯେ ଫାର୍ମର ଅନ୍ତେବାସୀମାନେ ଭିନ୍ନ ଭିନ୍ନ ପରିବେଶ, ବିଭିନ୍ନ ଧର୍ମ ସମ୍ପ୍ରଦାୟ ଓ ବିବିଧ ଭାଷାଭାଷୀ ଅଞ୍ଚଳର ହୋଇଥିଲେ ହେଁ ମହାତ୍ମାଗାନ୍ଧି ସେମାନଙ୍କୁ ନିଗୂଢ଼ ଆତ୍ମୀୟତା ଓ ମାନବିକତାର ମହାମନ୍ତ୍ରରେ ଅଭିମନ୍ତ୍ରିତ କରି ସମସ୍ତଙ୍କୁ ଗୋଟିଏ ରଜ୍ଜୁରେ ବାନ୍ଧି ରଖିବାର ଯେଉଁ ସଫଳ ପ୍ରୟାସ କରିଥିଲେ ତାହାର ଫଳସ୍ୱରୂପ ସେମାନେ ଆତ୍ମପର ଭେଦଭାବଠାରୁ ଦୂରରେ ରହି ତାଙ୍କ ମୁରବିତ୍ୱକୁ ଅତୁଟ ସମ୍ମାନ ପ୍ରଦର୍ଶନପୂର୍ବକ ଗୋଟିଏ ଛାତ ତଳେ ବସୁଧୈବ କୁଟୁମ୍ବକଂ ନ୍ୟାୟରେ ସୁଖଶାନ୍ତିମୟ ଜୀବନଯାପନର ଅମୃତ ରସ ଆସ୍ୱାଦନ କରିବାକୁ ସକ୍ଷମ ହୋଇପାରିଥିଲେ । ବିଶେଷକରି ସେମାନେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ଓ ପାର୍ଶୀ ଆଦି ବହୁଧର୍ମର ଅନ୍ତର୍ଭୁକ୍ତ ଥିଲେ ବି ଗାନ୍ଧିଜୀ ଫାର୍ମରେ ଏପରି ଏକ ଭାବମୟ ଜୀବନଯାପନ ପ୍ରଣାଳୀର ଧାରା ପ୍ରବର୍ତ୍ତନ କରିଥିଲେ ଯାହା ସେମାନଙ୍କୁ ଏକାନ୍ନବର୍ତ୍ତୀ କରି ଏକ ଆଦର୍ଶ ଯୌଥ ପରିବାର ଗଢ଼ିତୋଳିବାରେ ସହାୟ ହୋଇଥିଲା ।

ଜଣେ ସଫଳ ଓ ଆଦର୍ଶ ଗୃହକର୍ତ୍ତା ଭାବେ ମହାତ୍ମାଗାନ୍ଧୀ ଥିଲେ ଅଗ୍ରଗଣ୍ୟ । ଆଧୁନିକ ସମାଜର ପରିବାର ଜୀବନରେ ତାଙ୍କ ଭଳି ମୁରବିଟିଏ ମିଳିବା ବିରଳ । ଫାର୍ମ ପରିବାରର ମୁଖ୍ୟ ଭୂମିକାରେ ଆସୀନ ହୋଇ ସେ ନିଜର ସହୃଦୟତା, କର୍ତ୍ତବ୍ୟପରାୟଣତା, ଦାୟିତ୍ୱବୋଧତା ଓ ସମଭାବାପନ୍ନ ବିଚାରଧାରା ଦ୍ୱାରା କନିଷ୍ଠଠାରୁ ବରିଷ୍ଠ ଯାଏ ସମସ୍ତଙ୍କର ପ୍ରିୟଭାଜନ ହୋଇପାରିଥିଲେ । ଦୈନନ୍ଦିନର କର୍ତ୍ତବ୍ୟ ସମ୍ପାଦନ କ୍ଷେତ୍ରରେ ସାମନା କରୁଥିବା ପରିବେଶ ଓ ପରିସ୍ଥିତିକୁ ଗଭୀର ଭାବରେ ଅନୁଧ୍ୟାନ କରି ସେ ଯେଉଁ ସିଦ୍ଧାନ୍ତରେ ପହଞ୍ଚୁଥିଲେ ତାହାକୁ ହିଁ କାର୍ଯ୍ୟକାରୀ କରୁଥିଲେ । କୌଣସିଥିରେ ସମନ୍ୱୟ ନ ଥିବା ସେଠିକାର ବିଭିନ୍ନ ବର୍ଗର ଲୋକମାନଙ୍କୁ ସଂଗଠିତ କରି ନିର୍ଦ୍ଦିଷ୍ଟ ମାର୍ଗରେ ପରିଚାଳନା କରିବା ଏକ ଦୁରୂହ ବ୍ୟାପାର ଥିଲା । ଅନ୍ତେବାସୀମାନଙ୍କ ଭିତରେ ଭାଷା, ଭାବ ଓ ଧର୍ମ ଆଦି ସବୁଥିରେ ଯେଭଳି ଅସାମଞ୍ଜସ୍ୟତା ଥିଲା ସେହି ଜଟିଳ ଅଙ୍କକୁ ଦକ୍ଷତାର ସହ ସମାଧାନ କରିବା ଦିଗରେ ସେ ଥିଲେ ଜଣେ କଳା-କୌଶଳ ନିପୁଣ ଦକ୍ଷ ସେନାପତି । ସରଳ ତରଳ ବହୁମୁଖୀ ପ୍ରତିଭାଧାରୀ ବ୍ୟକ୍ତିତ୍ୱର ଅଧିକାରୀ ମହାତ୍ମା ମୋହନ ଦାସ କରମଚାନ୍ଦ

ଗାନ୍ଧି ସୃଷ୍ଟି ରହସ୍ୟକୁ ଭେଦକରି ସମସ୍ତଙ୍କ ଭିତରେ ନିଜକୁ ଓ ନିଜ ଭିତରେ ସମସ୍ତଙ୍କୁ ଦେଖିବାର ଯେଉଁ ପରମ ସୌଭାଗ୍ୟ ଅର୍ଜନ କରିଥିଲେ ତାହା ତାଙ୍କୁ ଅଶେଷ ଆତ୍ମତୃପ୍ତି ଦେବା ସଂଗେ ସଂଗେ ବିଶ୍ୱମାନବୀୟ ଭାବଧାରାରେ ଉଦ୍‌ବୁଦ୍ଧ କରୁଥିଲା । ଅନ୍ତେବାସୀମାନଙ୍କ ଆତ୍ମନିର୍ଭରଶୀଳତା, ସମୟୋପଯୋଗିତା, ମିତବ୍ୟୟିତା ଓ ସହୃଦୟତା ଆଦି ଗୁଣାବଳୀରେ ଭୂଷିତ ହୋଇ ମିଳିମିଶି ପାକକ୍ରିୟା, ଉଦ୍ୟାନକର୍ମ ଓ ରାସ୍ତାଘାଟ ପରିମଳ ଆଦି ସମସ୍ତ କାର୍ଯ୍ୟକୁ ନିଜ ହସ୍ତରେ ସମ୍ପାଦନ କରିବାକୁ ସେ ପରାମର୍ଶ ଦେଉଥିଲେ ।

ମହାତ୍ମାଗାନ୍ଧୀ ଟଲଷ୍ଟୟ ଫାର୍ମ ପରିବାରର ସର୍ବାଙ୍ଗୀନ ଉନ୍ନତି ଲାଗି ସତତ ଚେଷ୍ଟିତ ଥିଲେ । ସେଠାରେ ଅନ୍ତେବାସୀଙ୍କ ଗହଣରେ ସେମାନଙ୍କ ସନ୍ତାନସନ୍ତତି ମିଶି ଛୋଟବଡ଼ ଅନେକ ପିଲା ଫାର୍ମର ପରିବାର ଜୀବନକୁ ଆଶାନୁରୂପ ମଧୁର ଓ ରସଯୁକ୍ତ କରୁଥିଲେ । ପରିବାର ଭିତରୁ କେବଳ ଯେଉଁ ଅଳ୍ପ କେତେଜଣ ଖାଦ୍ୟପେୟ ପ୍ରସ୍ତୁତି ପାଇଁ ପାକକାର୍ଯ୍ୟରେ ନିୟୋଜିତ ଥିଲେ ସେମାନଙ୍କ ବ୍ୟତୀତ ପିଲାଠାରୁ ବଡ଼ପର୍ଯ୍ୟନ୍ତ ଅନ୍ୟ ସମସ୍ତେ ଗାନ୍ଧିଜୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଫାର୍ମ ଉଦ୍ୟାନର ଶ୍ରୀ ବୃଦ୍ଧି ଦିଗରେ ପ୍ରତ୍ୟହ କାର୍ଯ୍ୟରତ ରହୁଥିଲେ । ଫଳନ୍ତି ବୃକ୍ଷରାଜିର ସମାହାରରେ ପୁଷ୍ପଫଳଭରା ଫାର୍ମ ବଗିଚାର ଅନୁପମ ଶୋଭା ଗାନ୍ଧିଜୀଙ୍କୁ ଆଶାତୀତଭାବେ ଅନୁରଣିତ କରୁଥିଲା । ବିଶେଷକରି ପରିବାରର ପିଲାମାନେ ଉଦ୍ୟାନରେ ସବୁଠାରୁ ବେଶୀ ସମୟ ରହି ତାଙ୍କ ନିର୍ଦ୍ଦେଶରେ କାଷ୍ଠକର୍ତ୍ତନ, ଗର୍ତ୍ତଖନନ ଓ ବୃକ୍ଷରୋପଣ ଆଦି ଅନେକ କାର୍ଯ୍ୟ କରୁଥିଲେ ଏବଂ ତାଙ୍କ ଆଦର୍ଶ ଓ କାର୍ଯ୍ୟଧାରା ସେମାନଙ୍କ ଉପରେ ଏପରି ଗଭୀର ପ୍ରଭାବ ପକାଇଥିଲା ଯେ ଦୈନିକ ଉଷାରୁ ମଧ୍ୟାହ୍ନ ଭୋଜନ ସମୟ ପର୍ଯ୍ୟନ୍ତ ସେମାନେ ତାଙ୍କ ପାଖଛଡ଼ା ହେଉ ନ ଥିଲେ । ପରନ୍ତୁ କ୍ରମେ ଫାର୍ମଟି ପ୍ରଗତି ପଥରେ ଆଗକୁ ଆଗକୁ ବଢ଼ିଚାଲିଥିବାବେଳେ ଫାର୍ମ ପରିବାରର ଝିଅପୁଅମାନେ ଗାନ୍ଧିଜୀଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶ ଓ ସାନିଧ୍ୟଲାଭର ସୁଯୋଗ ନେଇ କେବଳ ବଗିଚାକାମ କାହିଁ ବହୁ ବ୍ୟବହାରିକ ଜ୍ଞାନ ଓ ନୀତିନିୟମ ସମ୍ପର୍କରେ ଅବଗତ ହେଉଥିଲେ । ଗାନ୍ଧିଜୀ ଓ ପିଲାମାନଙ୍କ ମଧ୍ୟରେ ସମୟକ୍ରମେ ସମ୍ପର୍କରେ ଡୋରି ନିବିଡ଼ରୁ ନିବିଡ଼ତର ହେବାକୁ ଲାଗିଲା । ଫଳସ୍ୱରୂପ ସେମାନେ ତାଙ୍କର ଯେତେ ନିଜର ହେଉଥିଲେ ସମଭାବରେ ସେମାନଙ୍କ ଭବିଷ୍ୟତ ଗଠନ ଓ ଭଲ ମଣିଷ ହେବାର ସ୍ୱପ୍ନ ଗାନ୍ଧିଜୀଙ୍କ ମନରେ ବଦ୍ଧମୂଳ ହେଉଥିଲା । ତେଣୁ ସେ ସେମାନଙ୍କର ବିଦ୍ୟାଶିକ୍ଷାକୁ ଅଣଦେଖା କରି ନ ଥିଲେ ।

ମହାତ୍ମାଗାନ୍ଧୀ ତାଙ୍କ ପରିବାରର ଅତି ପ୍ରିୟ ଓ ଆଦରର ପୁଅଝିଅଙ୍କ ଆବଶ୍ୟକତାକୁ ଉପଲବ୍ଧି କରି ନିଜର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଟଲଷ୍ଟୟ ଫାର୍ମ ପରିସରରେ ସେମାନଙ୍କର ଶିକ୍ଷାଲାଭ ଉଦ୍ଦେଶ୍ୟରେ ଏକ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଉକ୍ତ ବିଦ୍ୟାଳୟରେ ବିଦ୍ୟାଲାଭ କରୁଥିବା ଛାତ୍ରଛାତ୍ରୀଙ୍କ ମଧ୍ୟରେ କେବଳ କେତେକ ହିନ୍ଦୁ ଝିଅମାନଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତ ପୁଅପିଲାମାନେ ହିନ୍ଦୁ, ମୁସଲମାନ, ପାର୍ଶୀ ଓ ଖ୍ରୀଷ୍ଟିୟାନ୍ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ଥିଲେ । ବିଦ୍ୟାଳୟରେ ବିଦ୍ୟାଦାନ ଲାଗି ସ୍ୱତନ୍ତ୍ରଭାବେ ଶିକ୍ଷକ ନିଯୁକ୍ତି ଦେବା ସମ୍ଭବପର ନ ଥିଲା କିମ୍ବା ଯୋଗ୍ୟ ବିବେଚିତ ଭାରତୀୟ ଶିକ୍ଷକମାନଙ୍କ ଅଭାବ ଏଠାରେ ପରିଲକ୍ଷିତ ହେଉଥିଲେହେଁ ଯଦି କେତେବେଳେ କେମିତି ଜଣେ କେହି ମିଳୁଥିଲେ ଜୋହାନ୍‌ସବର୍ଗଠାରୁ ୨୧ ମାଇଲ୍ ଦୂରରେ ଅଳ୍ପ ଦରମାରେ ଚାକିରି କରିବାକୁ ପସନ୍ଦ କରୁନଥିଲେ । ପୁଣି ଏତେ ଅଧିକ ପରିମାଣ ଅର୍ଥାଗମର ସୁବିଧା ସୁଯୋଗ ନ ଥିବାରୁ ମହାତ୍ମାଗାନ୍ଧି ଫାର୍ମ ବାହାରୁ ଶିକ୍ଷକମାନଙ୍କୁ ଆଣି ନିଯୁକ୍ତି ଦେବାର ଆବଶ୍ୟକତା ଅନୁଭବ କରିପାରୁ ନ ଥିଲେ । ତେଣୁ ସେ ନିଜର ବ୍ୟସ୍ତବହୁଳ କାର୍ଯ୍ୟକ୍ରମ ଭିତରୁ ସମୟ ବାହାର କରି ସାମୟିକଭାବରେ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷାଦାନ କରୁଥିଲେ ଏବଂ କାଲେନ୍‌ବାଜ ଓ ପ୍ରାଗ୍‌ଜୀ ଦେଶାଇଙ୍କ ସହଯୋଗରେ ସେ ବିଦ୍ୟାଳୟର ପାଠପଢ଼ା କାର୍ଯ୍ୟ ଆରମ୍ଭ କରିଥିଲେ । ପ୍ରଚଳିତ ଶିକ୍ଷା ପଦ୍ଧତି ଭବିଷ୍ୟତପାଇଁ ଛାତ୍ରଛାତ୍ରୀମାନଙ୍କର ବାସ୍ତବ ଜୀବନ ଗଠନ କ୍ଷେତ୍ରରେ କୌଣସି ପ୍ରକାର ସହାୟକ ନିମନ୍ତେ ଉପଯୋଗୀ ନୁହେଁ ଏହା ଗାନ୍ଧିଜୀ ଗଭୀର ଭାବରେ ହୃଦୟଙ୍ଗମ କରିଥିଲେ । ବହୁ ଅନୁଶୀଳନ ଅନୁଧ୍ୟାନ ଓ ପରୀକ୍ଷା ନିରୀକ୍ଷା ଦ୍ୱାରା ଜୀବନ ଜିଜ୍ଞାସାରୁ ସେ ଯେଉଁ ଅଭିଜ୍ଞତା ହାସଲ କରିଥିଲେ ତାହାରି ନିର୍ଯ୍ୟାସକୁ ନେଇ ସତ୍ୟ ଉପରେ ଆଧାରିତ କର୍ମାଭିମୁଖୀ ବାସ୍ତବଧର୍ମୀ ଶିକ୍ଷା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ । ପାରିବାରିକ ଜୀବନର ସୁସ୍ଥ ଓ ପବିତ୍ର ପରିବେଶରେ ପିତାମାତାଙ୍କ ବ୍ୟତୀତ ବହିର୍ଜଗତରୁ ଏହି ଶିକ୍ଷା ହାସଲ କରିବା ଆଶା ଅତି ନଗଣ୍ୟ ଏହା ମହାତ୍ମାଗାନ୍ଧି ସଠିକ ଭାବରେ ଆକଳନ କରିଥିଲେ

ଏବଂ ଫାର୍ମ ପରିବାରର ତ୍ରାଣକର୍ତ୍ତା ବା ପିତା ଭାବରେ ସେ ଏହାର ସଦୁପଯୋଗ ନିମନ୍ତେ ଯଥାସମ୍ଭବ ପ୍ରଶିକ୍ଷଣ କାର୍ଯ୍ୟକ୍ରମର ଦାୟିତ୍ୱ ବହନ କରିଥିଲେ ।

ମହାତ୍ମାଗାନ୍ଧୀଙ୍କର ସ୍ୱତନ୍ତ୍ର ଶିକ୍ଷାନୀତି ପରିକଳ୍ପନା ଯୁକ୍ତିଯୁକ୍ତ ଓ ଯଥାର୍ଥ ଥିଲା ଏହା ନିଃସନ୍ଦେହ । ମାତ୍ର ସେ ଏହାର ପ୍ରୟୋଗାତ୍ମକ ଦିଗଟି ପ୍ରତି ଚିନ୍ତାଶୀଳ ଥିଲେ । କାରଣ ପରିବାରର ସମସ୍ତ ଯୁବକ ଯୁବତୀ ମାନେ ବାଲ୍ୟାବସ୍ଥାରୁ ତାଙ୍କ ସହିତ ସଂପୃକ୍ତ ନ ଥିଲେ । ଭିନ୍ନ ଭିନ୍ନ ପରିସ୍ଥିତି ଓ ପରିବେଶରେ ସେମାନଙ୍କର ବାଲ୍ୟଜୀବନ ଯାପନ ପ୍ରଣାଳୀ ନିର୍ବାହ ହୋଇଥିଲା ଏବଂ ସେମାନେ ସମବୟସ୍କ ନ ଥିଲେ କି ସମଧର୍ମ ସଂପ୍ରଦାୟଭୁକ୍ତ ନ ଥିଲେ । ଏହିଭଳି ପରିସ୍ଥିତି ଚକ୍ରରେ ପଡ଼ି ସେ ସମସ୍ତଙ୍କ ପାଇଁ କିପରି ଏକାଭଳି ପ୍ରଶିକ୍ଷଣ ପ୍ରଦାନ ଦିଗରେ ସମର୍ଥ ହୋଇପାରିବେ ସେଥିପାଇଁ ଉପଯୁକ୍ତ ପନ୍ଥା ନିର୍ଦ୍ଧାରଣ କଲେ ଏବଂ ସେମାନଙ୍କ ନିମନ୍ତେ ଚରିତ୍ର ଗଠନ ଓ ମନର ସଂସ୍କାରକୁ ମୌଳିକ ଓ ମୁଖ୍ୟ ଆଧାର ଭାବେ ଗ୍ରହଣ କରି ପରିବାରର ପିତା ହିସାବରେ ସେମାନଙ୍କ ସହିତ ଦିନର ସମସ୍ତ ସମୟ ବିତାଇ ଲକ୍ଷ୍ୟ ହାସଲ ପାଇଁ ସଚେଷ୍ଟ ରହିଲେ । ଶିକ୍ଷାଦାନ କ୍ଷେତ୍ରରେ ଚରିତ୍ରଗଠନର ଦୃଢ଼ ମୂଳଦୁଆ ସ୍ଥାପନ କରାଯାଇପାରିଲେ ଛାତ୍ରଛାତ୍ରୀମାନେ ଅନ୍ୟାନ୍ୟ ଆନୁଷଙ୍ଗିକ ପ୍ରସଙ୍ଗ ଉପରେ ବନ୍ଧୁମାନଙ୍କ ସହ ମିଶି ପରସ୍ପର ମଧ୍ୟରେ ଭାବର ଆଦାନ ପ୍ରଦାନ ଜରିଆରେ ଜ୍ଞାନ ଆହରଣ କରିପାରିବେ ବୋଲି ମହାତ୍ମାଗାନ୍ଧୀ ବିଶ୍ୱାସ କରୁଥିଲେ ।

ମହାତ୍ମାଗାନ୍ଧୀ ଜାଣିଥିଲେ ସାହିତ୍ୟ ସମ୍ବନ୍ଧୀୟ ଶିକ୍ଷାଦାନ ଖୁବ୍ କଷ୍ଟଦାୟକ । ତଥାପି ଛାତ୍ରଛାତ୍ରୀମାନଙ୍କର ଯେ ସାହିତ୍ୟ ଶିକ୍ଷାର ଅପରିହାର୍ଯ୍ୟତା ରହିଛି ଏ ସମ୍ପର୍କରେ ସେ ସମ୍ପୂର୍ଣ୍ଣ ଅବଗତ ଥିଲେ । ତେଣୁ ସେ କାଲେନ୍‌ବାଜ ଓ ପ୍ରାଗ୍‌ଜୀ ଦେଶାଇ ଏହି ଶିକ୍ଷକ ଦ୍ୱୟଙ୍କ ଉପରେ ଶ୍ରେଣୀରେ ଛାତ୍ରଛାତ୍ରୀମାନଙ୍କୁ ସାହିତ୍ୟ ଶିକ୍ଷାଦାନ ନିମନ୍ତେ ଦାୟିତ୍ୱ ନ୍ୟସ୍ତ କରିଥିଲେ । ବିଦ୍ୟାଳୟରେ ସାହିତ୍ୟ ଶିକ୍ଷା ପ୍ରଦାନ ପାଇଁ କୌଣସି ସାଧନ କିମ୍ବା ଆନୁଷଂଗିକ ଉପକରଣର ଆବଶ୍ୟକତାକୁ ସେ ଅନୁଭବ କରୁ ନ ଥିଲେ । ଉକ୍ତ ବିଷୟ ପ୍ରତି ମନୋନିବେଶ ପାଇଁ ଇଚ୍ଛା ଥିଲେ ମଧ୍ୟ ତାଙ୍କ ପାଇଁ ସମୟ ବଡ଼ ବାଧକ ସାଜିଥିଲା । ନିୟମିତ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଶାରୀରିକ ପରିଶ୍ରମ ପରେ ସମ୍ପୂର୍ଣ୍ଣ କ୍ଳାନ୍ତଶ୍ରାନ୍ତ ହୋଇ ବିଶ୍ରାମ ନେବା ପରିବର୍ତ୍ତେ ସେ ଛାତ୍ରଛାତ୍ରୀମାନଙ୍କୁ ପଢ଼ାଇବାପାଇଁ ସଜାଗ ରହୁଥିଲେ । ସକାଳ ବେଳା ନିଜ ପରିବାରକୁ ନେଇ ଗୃହକର୍ମ ଓ ଉଦ୍ୟାନକର୍ମରେ ନିୟୋଜନ କରୁଥିବାରୁ ଗାନ୍ଧିଜୀ ମଧ୍ୟାହ୍ନ ଭୋଜନ ପରେ ବିଦ୍ୟାଳୟ ନିର୍ଘଣ୍ଟ ଆରମ୍ଭ କରୁଥିଲେ । ହିନ୍ଦୀ, ତାମିଲ, ଗୁଜୁରାଟୀ ଓ ଉର୍ଦ୍ଦୁ ଭାଷାରେ ସାହିତ୍ୟ ଶିକ୍ଷାଦାନ ନିମନ୍ତେ ଅତିବେଶିରେ ତିନିଗୋଟି ପିରିୟଡ଼ ନିଆଯାଉଥିଲା ଓ ପୁଅ ଝିଅମାନଙ୍କୁ ନେଇ ନିଜ ନିଜର ମାତୃଭାଷା ଶିକ୍ଷାପାଇଁ ଅତିରିକ୍ତ କ୍ଲାସ ନିଆଯାଉଥିଲା । ଅନ୍ୟ ବିଷୟ ପରି ସବୁ ପିଲାମାନଙ୍କୁ ଇଂରାଜୀ ଶିକ୍ଷା ଦିଆଯାଉଥିଲାବେଳେ ଗୁଜୁରାଟୀ-ହିନ୍ଦୁ ପିଲାମାନଙ୍କୁ ସଂସ୍କୃତଭାଷା ସହିତ ଯତ୍‌କିଞ୍ଚିତ୍ ପରିଚୟ ଜ୍ଞାନ ପ୍ରଦାନର ଆବଶ୍ୟକତାକୁ ପୂରଣ କରାଯାଉଥିଲା ଏବଂ ସମସ୍ତ ଛାତ୍ରଛାତ୍ରୀମାନଙ୍କୁ ପ୍ରାରମ୍ଭିକ ଭୂଗୋଳ ଇତିହାସ ଓ ଅଙ୍କ ପଢ଼ାଯାଉଥିଲା । ମହାତ୍ମାଗାନ୍ଧୀ ନିଜେ ଗୁଜୁରାଟୀ ତାମିଲି, ଉର୍ଦ୍ଦୁ ଓ ସଂସ୍କୃତ ଶିକ୍ଷା ଛାତ୍ର ଛାତ୍ରୀମାନଙ୍କୁ ନିଜର ସୀମିତ ପରିମିତ ପୂର୍ବଜ୍ଞାନକୁ ନେଇ ଶିକ୍ଷାଦାନ କରୁଥିଲେ । ଜେଲ୍ ଭିତରେ ଓ ସମୁଦ୍ର ଯାତ୍ରାକାଳରେ ତଥା ହାଇସ୍କୁଲ ବିଦ୍ୟାଧ୍ୟୟନ ବେଳେ ଯଥାକ୍ରମେ ତାମିଲ, ଉର୍ଦ୍ଦୁ, ସଂସ୍କୃତ ଓ ଗୁଜୁରାଟୀ ସେ ଯାହା କିଛି ସୀମିତ ଜ୍ଞାନ ହାସଲ କରିଥିଲେ ସେ ସବୁର ମୂଳ ପୁଞ୍ଜିକୁ ନେଇ ସେ ବିଦ୍ୟାଦାନରେ ବ୍ରତୀ ହେଉଥିଲେ । ଏତଦ୍‌ବ୍ୟତୀତ ତାଙ୍କ ଦୃଢ଼ ସ୍ୱଦେଶ ପ୍ରୀତି, ଶିକ୍ଷକଭାବେ ନିଜ ଦକ୍ଷତା ପ୍ରତି ଆତ୍ମପ୍ରତ୍ୟୟ, ଛାତ୍ରଛାତ୍ରୀମାନଙ୍କର ଅଜ୍ଞତା ଏବଂ ସବୁଠାରୁ ବଡ଼ କଥାହେଲା ସେମାନଙ୍କର ଉଦାରତା ତାଙ୍କୁ ଉଚ୍ଚ ସମ୍ମାନର ଅଧିକାରୀ କରାଇ ପାରିଥିଲା ।

ଦକ୍ଷିଣ ଆଫ୍ରିକାର ଜନ୍ମିତ ତାମିଲ ପିଲାମାନେ ସମ୍ୟକ ତାମିଲ ଭାଷା ଜାଣିଥିଲାବେଳେ ଏହାର ଲିପି କଣ ସେମାନଙ୍କର ଧାରଣା ନଥିଲା । ଗାନ୍ଧିଜୀ ସେମାନଙ୍କୁ ବ୍ୟାକରଣର ମୌଳିକ ସୂତ୍ର ସହିତ ପରିଚୟ କରାଇବା ସଂଗେ ସଂଗେ ତାମିଲ ଲିପି ଜ୍ଞାନ ଶିକ୍ଷା ଦେଉଥିଲେ । ମାତ୍ର ମୁସଲମାନ ଛାତ୍ରଛାତ୍ରୀମାନେ ଉର୍ଦ୍ଦୁ ଲିପି ଜାଣିଥିବାରୁ ସେମାନଙ୍କୁ ଉର୍ଦ୍ଦୁ ପାଠ ପଢ଼ାଇବା ଗାନ୍ଧିଜୀଙ୍କ ପାଇଁ ସହଜ ଥିଲା ଏବଂ ସବୁ ଛାତ୍ରଛାତ୍ରୀମାନଙ୍କୁ ସହଜ ସରଳ ଭାବରେ ଲିଖନ ଓ ପଠନ କାର୍ଯ୍ୟରେ ଦକ୍ଷତା ହାସଲ ନିମନ୍ତେ ସେ ଉତ୍ସାହିତ କରୁଥିଲେ । ଏମାନଙ୍କ ମଧ୍ୟରୁ ଅଧିକାଂଶ

ବିଦ୍ୟାଳୟ ଦ୍ୱାର ମାଡ଼ି ନଥିବାରୁ ପଢ଼ାପଢ଼ି ଉପରେ ସେମାନଙ୍କର କିଛି ଧାରଣା ନ ଥିଲା । ତେଣୁ ପଠନ କାର୍ଯ୍ୟ ସମ୍ପାଦନ କଲାବେଳେ ଗାନ୍ଧିଜୀ ସେମାନଙ୍କ ଭିତରେ ପ୍ରଥମେ ପାଠ ପ୍ରତି ଆଗ୍ରହ ଜନ୍ମାଇ ସେମାନେ ଯେତିକି ଗ୍ରହଣ କରିପାରୁଥିଲେ ସେତିକି ପଢ଼ାଉଥିଲେ । ସେ ପାଠ୍ୟପୁସ୍ତକ ଉପରେ ଗୁରୁତ୍ୱ ନ ଦେଇ ଶିକ୍ଷାଲାଭର ସଫଳତା ନିମନ୍ତେ ଶିକ୍ଷକଙ୍କୁ ମୁଖ୍ୟ କେନ୍ଦ୍ର ବିନ୍ଦୁ ଭାବେ ବିବେଚନା କରୁଥିଲେ । ଏତେଗୁଡ଼ିଏ ପାଠ୍ୟପୁସ୍ତକର ବୋଝ ସେମାନଙ୍କ ଉପରେ ଲଦିଦେବାର ଅନାବଶ୍ୟକତାକୁ ସେ ଅନୁଭବ କରି ଶିକ୍ଷକଙ୍କର ମୁଖନିଃସୃତ ପାଠ୍ୟଦାନ ପ୍ରକ୍ରିୟା କେତେ ସହଜ ଓ ଫଳପ୍ରଦ ତାହାକୁ ସେ ଉପଲବ୍ଧି କରିଥିଲେ । ତେଣୁ ସେ ନିଜେ ପାଠ୍ୟପୁସ୍ତକଗୁଡ଼ିକୁ ଅଧ୍ୟୟନ କରିସାରିଲା ପରେ ସରଳୀକରଣ ପଦ୍ଧତିରେ ମୁହଁର ଭାଷାରେ ଶ୍ରେଣୀ ଗୃହରେ ବିଦ୍ୟାଦାନ କରୁଥିଲେ ଏବଂ ମଝିରେ ମଝିରେ ଲବ୍‌ଧଜ୍ଞାନ କଳନା ନିମନ୍ତେ ସେମାନଙ୍କୁ ବିଭିନ୍ନ ପ୍ରଶ୍ନମାନ ପଚାରି ବିଦ୍ୟାଦାନ ପ୍ରଣାଳୀକୁ ସକ୍ରିୟ ରୂପରେଖ ଦେଉଥିଲେ ।

ମହାତ୍ମାଗାନ୍ଧୀ ବିଦ୍ୟାଳୟରେ ପେସାଦାରୀ ଶିକ୍ଷା ବା ଧନ୍ଦାମୂଳକ ଶିକ୍ଷା ପ୍ରଚଳନ କରି ପ୍ରତ୍ୟେକ ବାଳକବାଳିକାଙ୍କ ପାଇଁ ହସ୍ତକର୍ମ ତଥା ବୃତ୍ତିଗତ ଶିକ୍ଷା ନିମନ୍ତେ ସୁଯୋଗ ସୃଷ୍ଟି କରିଥିଲେ । ସେଥିନେଇ ସେ ଶିକ୍ଷକ କାଲେନ୍‌ବାଜଙ୍କୁ ଜୋତା ତିଆରି ଉପାୟ ଜାଣିବାଲାଗି ଟ୍ରାପିଷ୍ଟ ଟ୍ରଷ୍ଟ ତାଲିମ କେନ୍ଦ୍ରକୁ ପଠାଇଥିଲେ । ସେ ସେଠାରୁ ତାଲିମ ନେଇ ଫେରିବା ପରେ ଏ ସମ୍ପର୍କୀୟ ଜ୍ଞାନ କୌଶଳ ମହାତ୍ମା ଗାନ୍ଧି ତାଙ୍କଠାରୁ ଜାଣି ଛାତ୍ରଛାତ୍ରୀମାନଙ୍କୁ ଏଥିନିମନ୍ତେ ଉତ୍ସାହିତ କରି ଜୋତା ତିଆରି କାର୍ଯ୍ୟଶିକ୍ଷା ଦେଉଥିଲେ । ଫାର୍ମର ଅନ୍ତେବାସୀ ମଧ୍ୟରୁ ଜଣକୁ କାଠତିଆରି କାମ ଜଣାଥିଲାବେଳେ କାଲେନ୍‌ବାଜଙ୍କର ଏହି କର୍ମରେ ଆଗରୁ କିଛି ଅଭିଜ୍ଞତା ଥିଲା । ଗାନ୍ଧିଜୀ ଏହି ଦୁଇଜଣଙ୍କର ସହଯୋଗକ୍ରମେ ବିଦ୍ୟାଳୟରେ ଛାତ୍ରଛାତ୍ରୀମାନଙ୍କୁ ବିଭିନ୍ନ ପ୍ରକାର କାଷ୍ଠୋପକରଣ ତିଆରି କାର୍ଯ୍ୟ ଶିକ୍ଷାଦାନ କରୁଥିଲେ ।

ଆତ୍ମଚିନ୍ତନ ବା ମନର ସଂସ୍କାର ବିନା ଯେତେ ମାନସିକ ଓ ଶାରୀରିକ ଶିକ୍ଷାଲାଭ କଲେ ମଧ୍ୟ ସେସବୁ ନିରର୍ଥକ ବୋଲି ଗାନ୍ଧିଜୀ ଜାଣିଥିଲେ । ସେହି ଦୃଷ୍ଟିରୁ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କୁ ଆଧ୍ୟାତ୍ମିକ ଶିକ୍ଷା ଦେବାଲାଗି ସେ ବେଶି ଯତ୍ନବାନ ଥିଲେ । ଅନ୍ୟାନ୍ୟ ସମସ୍ତ ଶିକ୍ଷାଠାରୁ ଏହି ଶିକ୍ଷା ଅବଶ୍ୟ କଷ୍ଟକର ବୋଧଗମ୍ୟ ହେଲେ ମଧ୍ୟ ସେ ସହଜ ଓ ସରଳ ଭାବରେ ବିଦ୍ୟାର୍ଥୀମାନଙ୍କୁ କିପରି ଆତ୍ମଜ୍ଞାନ ବା ଧର୍ମଜ୍ଞାନ ପ୍ରଦାନ କରାଯାଇ ସେମାନଙ୍କ ଭିତରେ ଆଧ୍ୟାତ୍ମିକ ଚେତନା ଜାଗ୍ରତ କରିହେବ ସେଥିପାଇଁ ସଚେଷ୍ଟ ଥିଲେ । ଆଧ୍ୟାତ୍ମିକ ଜ୍ଞାନଲାଭ ନିମନ୍ତେ ଧର୍ମପୁସ୍ତକଗୁଡ଼ିକର ପ୍ରଣିଧାନ ଉପରେ ସେ ଅତି କମ୍ ବିଶ୍ୱାସ ରଖୁଥିଲେ । ପ୍ରତ୍ୟେକ ଛାତ୍ରଛାତ୍ରୀ ନିଜ ନିଜର ଧର୍ମ ମତ ପ୍ରତି ସଚେତନ ରହିବା ସହିତ ସେମାନଙ୍କର ଧର୍ମଗ୍ରନ୍ଥ ଉପରେ ଜ୍ଞାନ ଆହରଣ କରିବା ଉଚିତ ବୋଲି ମହାତ୍ମାଗାନ୍ଧି ବିଶ୍ୱାସ କରୁଥିଲେ । ତାଙ୍କର ଏ ଦିଗରେ ଯେତେ ସମ୍ଭବ ଗଭୀରତା ରହିଥିଲା ସେ ସବୁକୁ ସେ ପିଲାମାନଙ୍କ ମଧ୍ୟରେ ବିତରଣ କରୁଥିଲେ । ତାଙ୍କ ଚିନ୍ତାଧାରାରେ ଏହି ଶିକ୍ଷା ମାନସିକ ଶିକ୍ଷାର ମୁଖ୍ୟ ତଥା ଗୁରୁତ୍ୱପୂର୍ଣ୍ଣ ଅଂଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ବିଦ୍ୟାଳୟ ସ୍ଥାପନ କରିବାର ବହୁ ପୂର୍ବରୁ ଆଧ୍ୟାତ୍ମିକ ଶିକ୍ଷା ବା ଧର୍ମଶିକ୍ଷା ଉକ୍ତ ବିଦ୍ୟାଳୟର ବିଦ୍ୟାଦାନ ପ୍ରକ୍ରିୟାର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶବିଶେଷ ହେବ ବୋଲି ନିଷ୍ପତ୍ତି ନେଇସାରିଥିଲେ । ଉକ୍ତ ଧର୍ମଶିକ୍ଷା ଦ୍ୱାରା ଛାତ୍ରଛାତ୍ରୀମାନଙ୍କର ଚରିତ୍ର ଗଠନ ହେବା ସହିତ ସେମାନଙ୍କ ଭିତରେ ଭକ୍ତିଭାବ ଜାଗ୍ରତ ହେବା ତଥା ଭଗବାନଙ୍କ ଉଦ୍ଦେଶ୍ୟରେ କର୍ମ କରିବାକୁ ଆତ୍ମସଚେତନତା ବଢ଼ାଇଥାଏ ।

ମହାତ୍ମାଗାନ୍ଧିଙ୍କ ଜୀବନାଦର୍ଶ ସତ୍ୟ ଉପରେ ଆଧାରିତ ଥିଲା । ସେ ସତ୍ୟାନୁସନ୍ଧିତ୍ସୁ ଓ ଏହାର ପରୀକ୍ଷାନିରୀକ୍ଷାରେ ବ୍ରତୀ ରହି ପ୍ରୟୋଗାତ୍ମକ ଜ୍ଞାନ ଆହରଣ ଦିଗରେ ସଫଳତାର ଶିଡ଼ି ଚଢ଼ି ପାରିଥିଲେ । ଆଜୀବନ ସତ୍ୟର ପୂଜାରୀ ମହାତ୍ମାଗାନ୍ଧି ଯେଉଁ ନୀତି ଓ ଆଦର୍ଶକୁ ନେଇ ଜୀବନସତ୍ୟ ଉଦ୍‌ଘାଟନ କରିଥିଲେ ତାହା ଆଜି ମଧ୍ୟ ଜଗତ ଆଗରେ ଉଦ୍‌ଜୀବିତ ହୋଇ ରହିଛି । ସମଗ୍ର ପୃଥିବୀ ବାସୀଙ୍କ ଲାଗି ସେ ସତ୍ୟ ଓ ଅହିଂସାର ଯେଉଁ ମାର୍ଗଦର୍ଶୀ ପଥ ଉନ୍ମୋଚନ କରିଯାଇଛନ୍ତି ତାହା ତାଙ୍କ ମହାମାନବୀୟ ଗୁଣାବତ୍ତାର ଅମର କୀର୍ତ୍ତିସ୍ତମ୍ଭ ହୋଇ ଯୁଗ ଯୁଗ ଧରି ଯେ ଅମର ବାର୍ତ୍ତା ବହନ କରୁଥିବ ଏଥିରେ ତିଳେମାତ୍ର ଦ୍ୱିମତ ନାହିଁ ।



ସଭାପତି 'ସମନ୍ୱୟ'
ବାଙ୍କିସାହି, କଟକ-୭୫୩୦୦୯

# ଦୀନବନ୍ଧୁ ଗୋପବନ୍ଧୁ

ରାଜକିଶୋର ରାଜ

ଅପନ୍ତରା ବଣପାହାଡ଼ଘେରା ଅନ୍ଧାରୀ ମୁଲକରେ ଗୋଟିଏ କଳି ଅଧର ମିଳିଲା । ବଣମାଳତୀ ବଣରେ ଝରିଯାଏ । କିନ୍ତୁ କେହି ତାର ସୌରଭ ପାଏ ନାହିଁ । ଏହି କଳି ସତ ବାଧା ବନ୍ଧନ ଠେଲି ତାର ସୁଗନ୍ଧ ବିତରିଥିଲା ଚଉଦିଗକୁ । ବକ୍ଷ ତାର ବିଦୀର୍ଣ୍ଣ ହୋଇଥିଲା କଣ୍ଟକର ତୀବ୍ର କରକାଘାତରେ ପ୍ରତିକୂଳ ହୋଇଥିଲା ପରାଧୀନତାର ଘୂର୍ଣ୍ଣିବାୟୁ ଅନ୍ଧବିଶ୍ୱାସ, କୁସଂସ୍କାରର ମେଘନାଦ ପ୍ରାଚୀର । କିନ୍ତୁ କଠୋର ସାଧନା ବଳରେ ଦିନେ ନୁହେଁ ଅଧେ ନୁହେଁ ବାଉନଟି ବସନ୍ତ ବିତାଇ ସେ ପରିଣତ ହୋଇଥିଲା ସୁଗନ୍ଧରାଜ ପ୍ରସ୍ଫୁଟିତ ପୂର୍ଣ୍ଣ ଅବୟବ ପୁଷ୍ପରେ । ସେ ବଞ୍ଚିବାର ରାହା ଖୋଜିପାଇ ନ ଥିଲା । ଖୋଜିଥିଲା ବଞ୍ଚାଇବାର ନିଜ ଦୁଃଖରେ ସେ ହସୁଥିଲା । ପରର ଦୁଃଖରେ କାନ୍ଦୁଥିଲା ଏବଂ ଗାଇଥିଲା ତା'ର ଜୀବନର ଶ୍ରେଷ୍ଠ ଗୀତି ।

''ଜୀବନ କି ଖାଲି ନିରାଶାର ବାଲି
ମରୁ ମରୀଚିକା ସେନେହ ପ୍ରୀତି
ତେବେ କି ଆଶାରେ କହ ଏ ସଂସାରେ
ପର ପାଇଁ ନର ମରୁଛି ନିତି ।''

ତା'ର ଦୀକ୍ଷା ଥିଲା-

''କାପୁରୁଷ ପରି ମରିବା ଜଗତେ
ନୁହେଁ ନର ପଉରୁଷ
ପର ହିତ ସାଧି ମରେ ଯେ ଜଗତେ
ସେହି ଏକା ସୁପୁରୁଷ ।''

ସେ ପରପାଇଁ ମରିଛି । ଅଳ୍ପାୟୁ ହେଲେ ମଧ୍ୟ ମହାମାନବ । କାରଣ-

''ମାନବ ଜୀବନ ନୁହଇ କେବଳ
ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।''

ନଶ୍ୱର ମରଣଶୀଳ ଶରୀର ପ୍ରତି ତା'ର ମମତା ଥିଲା ଅତ୍ୟନ୍ତ ଶିଥିଳ । ତାଙ୍କ ମତରେ- ''ଗୁଣ ଥିଲେ ରୂପର କି ହେବ ପ୍ରୟୋଜନ- ରୂପ ଅଟଇ କେବଳ ବାହ୍ୟ ଆବରଣ'' । ତା'ର ପରିପାର୍ଶ୍ୱର ଆହ୍ୱାନକୁ ସେ ଏଡ଼ିଦେଇ ପାରି ନ ଥିଲା ।

''ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ
ସ୍ୱରାଜ୍ୟ ସାଧନ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।''

ତା'ର ଦେଢ଼କୋଟି ରକ୍ତବିନ୍ଦୁର ହା ଅନ୍ନ ଚିତ୍କାରରେ ସେ ବ୍ୟଥିତ ହୋଇ ପଡ଼ିଥିଲା । ଅତୀତର ଗୌରବ ଗାଥା ସ୍ମରଣ କରି ହତାଶରେ ଗାଇଥିଲା-

''କରପୂର ଉଡ଼ି କନା ଥିଲେ ପଡ଼ି
କନା ରଖିଥାଏ କର୍ପୂର ସ୍ମୃତି
କନା ଯାଇ ନାଶ ରହିଲେ ପାଉଁଶ
ଧରିବ ତା ଦେଖି କିଏ ସେ ଧୃତି ।''

ଅତୀତର ସ୍ମୃତିଚାରଣ କରି ତା'ର ହୃଦୟ ରୋମାଞ୍ଚିତ ହୋଇଥିଲା -

''କାହିଁ ସେ ଗୌରବ କାହିଁ ସେ ସୁକୃତ
ପବିତ୍ର ଉତ୍କଳ ଆହା କି ବିକୃତ
ଉତ୍କଳ ମାତାର ଅତୀତ ଯଶ
ବିପୁଳ ବିଭବ ବଳ ସାହସ
ସୁମରି ତା ଫାଟି ଯାଏ ହୃଦୟ
ଦେଖି ଅବସ୍ଥାର ଏ ବିପର୍ଯ୍ୟୟ ।''

ରକ୍ତମାଂସ ଦେହ ଧରି ଅଧୀର ଆତୁର କିଏ ସେ ନ ହେବ–

''ଦେଖି ମାତ୍ର ଏତେ ସରି ।

ଏହି କଳିଟି ହେଉଛି ଦୀନବନ୍ଧୁ ଗୋପବନ୍ଧୁ ଦାସ । ଦେଶପ୍ରେମର ପବିତ୍ର ପ୍ଲାବନରେ ଅବଗାହନ କରିବା ପାଇଁ ଉତ୍କଳୀୟମାନଙ୍କୁ ନିର୍ଦ୍ଦେଶ ଦେଇ ସେ ଝରି ଯାଇଛନ୍ତି ଏ ମାଟିରେ–

''ପୂର୍ବପୁରୁଷର ପବିତ୍ର ଶ୍ମଶାନ
ଦେଶର ଜାତିର ଗଉରବ ଗାନ
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧାରିବା ପାଇଁ କଲେ ତନୁ କ୍ଷୟ ।
ମାନବ ଜୀବନ ହୁଅଇ ସଫଳ
ଏ ମହାଦୀକ୍ଷା କି ବୁଝିବ ଉତ୍କଳ ।''

ସଂଗ୍ରାମରତ ଜୀବନର ଅବସାନ ପରେ ସେ ବିଶ୍ରାମ ନେଇଛନ୍ତି । କବି ଅନନ୍ତ ପଟ୍ଟନାୟକଙ୍କ ନିମ୍ନୋକ୍ତ ପଙ୍‌କ୍ତି ଗୋପବନ୍ଧୁଙ୍କର ପ୍ରକୃତ ପରିଚୟ ଦିଏ ।

''ଲୁହରେ ଲୁହ ମିଶାଇ କେହି ପ୍ରଳୟଗୀତି ଜାଳିଛି ଆଗ

ଶିଳାରେ ଶିଳା ବଜାଇ ସିନା କଳଇ କିଏ ମଣିଷ ଭାଉ

କିଏ ସେ କହ ତାହାରି ସମ ସେନେହଟାରେ କରି ଚିରତା

ମରମଜିଣା ନରମ ସୁରେ ସଜାଇ ସତ ଦୁଃଖର ଦାଉ

ତାହାରି ଲୁହ ତାହାରି ହସେ ରସିନି କିରେ ଶାସନ ରାହୁ ।'' ଡକ୍ଟର ମାୟାଧର ମାନସିଂହଙ୍କ ଭାଷାରେ–

''ଦେଢ଼କୋଟି ଲୋକ ଭଲ ପାଉଥିଲେ
ପରାଣରୁ ବଳି ପରା
ସକଳେ କରିଲା ଆଶ୍ରୟହୀନ
ସହସାତେ ଦିଏ ଧରା
ଯାହା ଇଙ୍ଗିତେ ତିନିକୋଟି ଆଖି
ଚାହିଁଥାଏ ଅହରହ
ସେତ ଗଲା ଚାଲି ମୃତ ଜନତାରେ
ଚଳାଇବ କିଏ କହ ?''

ଆଜିର ଏ ଦୟନୀୟ ଅବସ୍ଥା ଦେଖି ଦୁଃଖୀ ମନ ମୋର ଝୁରୁଛି–

''ହେ ଶାସକ ଧର୍ମ ପାଳକ ପ୍ରଜାରକ୍ଷକ
ଶୁଣୁ ନାହିଁ କିମ୍ବା ବୁଭୁକ୍ଷୁ ଜନତାର ଦୁଃଖ
ପଦାଘାତେ ତୁଳନା ଧର୍ମନ୍ୟାୟ ନୀତି ଦଳ
ଭୋଟ ହୁଙ୍କାରେ ତୁମେ ଦେଶକୁ ଟେକି ଧର
ତୁମେ ଆଜି ପରା ଜଣେଇ ଦେଇଛ ଭାଇବନ୍ଧୁ ବିରାଦର
ସେଇମାନେ ଗେହ୍ଲାପୁଅ ପାଇବେ ସବୁରି ଆଦର
ଗରିବ ରକତେ ଗଢ଼ା ଆମେ ସବୁ ଶଳା ସଇତାନ
ଖାଦ୍ୟ ନ ପାଇ କାମ ପାଇଁ ପାଇବୁ ସବୁଠି ଅପମାନ
ଆଶା ବାନ୍ଧି କେତେ ଦିନ ବସିବୁ କପାଳରେ କର ମାରି
ଅନାହାରେ ଆମେ ବଞ୍ଚିଛୁ ଖାଲି ମୃତ୍ୟୁକୁ ହାତ ଠାରି ।''

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପଞ୍ଚ ମହାଭୂତର ମର ଶରୀର ପଞ୍ଚମହାଭୂତରେ ମିଶିଯାଇଛି ସିନା ହେଲେ ତାଙ୍କ ଅସୀମ ଦେଶପ୍ରେମ ତ୍ୟାଗପୂତ ଆଦର୍ଶ ଜୀବନ ଓ ପରୋପକାରିତା ଗୁଣର ସୁଗନ୍ଧ ଆଜିବି ଗଗନ ପବନରେ ବେଶ୍ ସୁରଭିତ । ଆମେ ପ୍ରତ୍ୟେକ ତାଙ୍କରି ମହାନ୍ ଆଦର୍ଶରେ ଅନୁପ୍ରାଣିତ ହୋଇ ଦୁଃଖୀ ଜନତାର ସେବା ଓ ଦେଶର ପ୍ରଗତିରେ ନିଜକୁ ନିୟୋଜିତ କରିପାରିଲେ ତାଙ୍କ ଶ୍ରାଦ୍ଧ ତିଥି ପାଳନର ସାର୍ଥକତା ରହିବ ।

ଗୋପବନ୍ଧୁ ଓଡ଼ିଆର ଜାତୀୟତା ସମ୍ବନ୍ଧରେ କହିଛନ୍ତି ଯେ– ''ମନେରଖିବାକୁ ହେବ ଆମେମାନେ ପ୍ରଥମେ ମଣିଷ ପରେ ଭାରତୀୟ ଏବଂ ସର୍ବଶେଷରେ ଓଡ଼ିଆ, ଏହିଭାବେ ମନରେ ନ ରଖିଲେ ଜାତୀୟ କ୍ରମବିକାଶ ଅସମ୍ଭବ । ପ୍ରତ୍ୟେକ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଅଛି । ମାତ୍ର ସାମାଜିକ ଭିତ୍ତି ବିନା ଏ ସ୍ୱାତନ୍ତ୍ର୍ୟ ପ୍ରକଟିତ ହୁଏ ନାହିଁ । ସେହିପରି ଓଡ଼ିଆ ଜାତିର ସ୍ୱାତନ୍ତ୍ର୍ୟ ଫୁଟିବ ପ୍ରଶସ୍ତତର ଜାତୀୟତା କ୍ଷେତ୍ରରେ ଏବଂ ଉଦାର ସାର୍ବଜନୀନ ମାନବିକତାରେ... ।

ଗୋପବନ୍ଧୁ କହୁଥିଲେ ଓଡ଼ିଶାର ଗିରିକର କନ୍ଦରାରେ ଯେ ସମସ୍ତ ଉପାଦାନ ବକ୍ଷିପ୍ତ ଭାବେ ପଡ଼ି ରହିଛି । ଭଗ୍ନ ମନ୍ଦିରରେ ଯେ ସମସ୍ତ ସ୍ମୃତି ଓ ସଂସ୍କାର ଜଡ଼ିତ ଅଛି । ତାଙ୍କ ମତରେ ନଦୀ ପର୍ବତ ଦ୍ୱାରା ଓଡ଼ିଶାର ସୀମା ଆବଦ୍ଧ ହେଲେ ସୁଦ୍ଧା ଓଡ଼ିଆମାନେ ସର୍ବଦା ସେ ସୀମା ଅତିକ୍ରମ କରି ବିଶାଳତା ଆଡ଼କୁ ଗତି କରିଅଛନ୍ତି । ଜାତୀୟତାର ଲକ୍ଷ୍ୟରେ ଉଦାର ମାନବିକତା, ସମଗ୍ର ଭାରତରେ ତାହା, ଓଡ଼ିଆ ହିଁ ବୁଝିଥିଲେ । ବିଶ୍ୱପ୍ରୀତି ହିଁ ଓଡ଼ିଆର ଜାତୀୟତା ଓ ଦେଶାନୁରାଗ କେବେ ଜଡ଼, ନିର୍ଜୀବ, ନୀରସ ଓ ସ୍ୱାର୍ଥ କଳୁଷିତ ନୁହେଁ । ରାଜ୍ୟ ଲାଭ ବା ରକ୍ତପାତରେ ଏହାର ପ୍ରତିଷ୍ଠା ନୁହେଁ, ଗଭୀର ଧର୍ମଭାବ ଓ ଦୃଢ଼ ବିଶ୍ୱାସ ଏହାର ଭିତ୍ତି । ସାମ୍ୟ, ମୈତ୍ରୀ ସ୍ୱାଧୀନତା ଏହାର ବିଗ୍ରହ । ଓଡ଼ିଆର ଏଇ ଭାବ ନୀଳାଚଳ ଧାମରେ ପ୍ରକଟିତ । ତେଣୁ ଜଗନ୍ନାଥ ଓଡ଼ିଆର ଜାତୀୟ ଦେବତା । ସେଇଥିପାଇଁ ସେ ଯଥାର୍ଥରେ ମୁକ୍ତ କଣ୍ଠରେ ଗାଇଛନ୍ତି–

''ଜାତୀୟ ମମତା ବିଶ୍ୱ ଜନପ୍ରୀତି,
ଉତ୍କଳବାସୀଙ୍କ ହେଉ ଏଇ ନୀତି ।''

ଓଡ଼ିଆ କେବେ କ୍ଷୁଦ୍ରତା ମଧ୍ୟରେ ସୀମାବଦ୍ଧ ନୁହେଁ । ପୁରୀ, ଭୁବନେଶ୍ୱର ଓ କୋଣାର୍କ ମନ୍ଦିରର ବିଶାଳତା ଏହାର ପରିଚୟ । ଓଡ଼ିଆ କେବେ କାହାରିକୁ ବିଦ୍ୱେଷ ଦୃଷ୍ଟିରେ ଦେଖେ ନାହିଁ । ଧର୍ମ କ୍ଷେତ୍ର ଛଡ଼ା ସାମାଜିକ ଓ ଶାସନ କ୍ଷେତ୍ରରେ ମଧ୍ୟ ଓଡ଼ିଆ ଏହି ଉଦାରତା ବରାବର ଦେଖାଇଆସିଛି । ଏହା ପ୍ରତିପାଦିତ କରିବାକୁ ଯାଇ ଗୋପବନ୍ଧୁ କୃପାସିନ୍ଧୁ ମିଶ୍ରଙ୍କ ବାରବାଟୀ ଦୁର୍ଗର ଏକ ପଂକ୍ତି ଉଦ୍ଧାର କରିଥିଲେ– ''ଭାରତ ଇତିହାସରେ ତେଜସ୍ୱୀ ଓଡ଼ିଆର ଦାନ ହେୟ ନୁହେଁ, ବୀର ଓଡ଼ିଆ ବଦାନ୍ୟତାରେ ପ୍ରସିଦ୍ଧ ଥିଲା, ଚିରକାଳ ଓଡ଼ିଆ ଆତ୍ମନିର୍ଭରଶୀଳ । କେବେ କାହାର ଅନୁଗ୍ରହ ଭିକ୍ଷା କରିବାର ପ୍ରମାଣ ନାହିଁ । ଯଶୋନାଶୀ କାଳ ଗର୍ଭରେ ବିଲୁପ୍ତ ପ୍ରାୟ ହେଲେ ହେଁ ଏକଥା ସତ୍ୟ ଏବଂ ଅନୁସନ୍ଧାନସେବୀଙ୍କର ସ୍ୱୀକାର୍ଯ୍ୟ ବିନା ଅନୁଗ୍ରହ ଦେଖାଇବା ନିମନ୍ତେ ଓଡ଼ିଆ ଭାରତ ଇତିହାସରେ ପ୍ରସିଦ୍ଧ ।''

ଧର୍ମ ରାଜନୀତି ପ୍ରଭୃତି ସକଳ ବିଶ୍ୱରେ ଭାରତ ସଙ୍ଗେ ଓଡ଼ିଶାର ଚିର ସମ୍ବନ୍ଧ ରହିଛି ।

ଗୋପବନ୍ଧୁଙ୍କ ଦେଶପ୍ରେମ ଓ ଜାତିପ୍ରୀତି ବଳରେ ଓଡ଼ିଆମାନଙ୍କର ସେବାକୁ ମାଧବର ସେବା ବୋଲି ମନେକରନ୍ତି । ସେ ଥିଲେ ଓଡ଼ିଶା କଂଗ୍ରେସର ଭଗୀରଥି ପରହିତେ ଜାତି ହୋଇ ଗୋପବନ୍ଧୁ ନିଜର ପ୍ରତି ରକ୍ତ ବିନ୍ଦୁ ଢାଳି ଦୀନ ନୀପିଡ଼ିତ ନିଃସ୍ୱ ଜନତାର ସେବାରେ ଆତ୍ମୋତ୍ସର୍ଗ କରିଥିଲେ ।

''ମରି ନାହିଁ ସିଏ ମରି ନାହିଁ ମରିବାକୁ ସିଏ ଡରି ନାହିଁ
ସିଏ ତ ବୀରପୁରୁଷ ସରିପାରେକି ତାର ଆୟୁଷ ।''

ହେ ମହାନ୍ ଓଡ଼ିଆ ଜାତି– ଉଠ ଜାଗ ଅବଲୋକନ କର । ରୋଗଶଯ୍ୟାରେ ଯେ ନିଜ ପୁତ୍ରକୁ ଛାଡ଼ି ଉତ୍କଳମାତାର ଅଗଣିତ ପୁତ୍ର ପାଇଁ ଝାସ ଦେଇଛି ତାଙ୍କୁ ଓଡ଼ିଆ ଜାତି ପାସୋରି ଦେଲେ ଚଳିବ ନାହିଁ । ଏବେ ଉପଯୁକ୍ତ ସମୟ ଆସିଛି ଯେ ଗୋପବନ୍ଧୁଙ୍କ ତ୍ୟାଗର ମୌଳିକ ଭିତ୍ତିଭୂମି ଉପରେ ବୀର ଓଡ଼ିଆ ଜାତିର ସମୃଦ୍ଧି ଓ ଓଡ଼ିଶା ପ୍ରଦେଶର ସର୍ବାଙ୍ଗୀନ ଉନ୍ନତି ସାଧନ କରିପାରିବ । ନଚେତ୍ ଓଡ଼ିଆ ଅଧମ ଅକୃତଜ୍ଞ ହୋଇ ରହିଯିବ ।



ସଭାପତି 'ନୀଳଶୈଳ'
ଗଜେନ୍ଦ୍ର ଭବନ, ଝାଞ୍ଜିରୀମଙ୍ଗଳା,
କଟକ

# ଓଡ଼ିଶାର ଉଚ୍ଚଶିକ୍ଷା ଏକ ମୂଲ୍ୟାଙ୍କନ

**କ୍ଷୀରୋଦ ପ୍ରସାଦ ମହାନ୍ତି**

ଓଡ଼ିଶାର ଉଚ୍ଚଶିକ୍ଷା ସମ୍ବନ୍ଧରେ ଓଡ଼ିଶା ସରକାରଙ୍କ ଆର୍ଥନୀତିକ ସର୍ବେକ୍ଷଣ ୨୦୦୯-୧୦କୁ ଅନୁଧ୍ୟାନ କଲେ ଜଣାଯାଏ ଯେ ୧୯୪୭ ମସିହାରେ ରାଜ୍ୟରେ ମାତ୍ର ୧୨ଟି ମହାବିଦ୍ୟାଳୟ ଥିଲା ଓ ସେଥିରେ ୪୧୦୪ ଜଣ ଅଧ୍ୟୟନ କରୁଥିଲେ । ୨୦୦୮-୦୯ ବର୍ଷରେ ସେହି ସଂଖ୍ୟା ବୃଦ୍ଧି ପାଇ ୯୬ଟି ସରକାରୀ ମହାବିଦ୍ୟାଳୟ, ୬୦୯ଟି ଅନୁଦାନପ୍ରାପ୍ତ ମହାବିଦ୍ୟାଳୟ, ୧୫୩ଟି ବ୍ଲକ୍‌ଗ୍ରାଣ୍ଟ୍ ମହାବିଦ୍ୟାଳୟ, ୯୦ଟି ବେସରକାରୀ (ଅଣ ଅନୁଦାନପ୍ରାପ୍ତ) ମହାବିଦ୍ୟାଳୟ, ୨୩୬ଟି ନିଜ ଅର୍ଥରେ ପରିଚାଳିତ ହେଉଥିବା ମହାବିଦ୍ୟାଳୟ ଏବଂ ୧୪ଟି ଅନ୍ୟ ମହାବିଦ୍ୟାଳୟରେ ପରିଣତ ହୋଇଛି । ସ୍ୱାଧୀନତା ସମୟରେ ରାଜ୍ୟରେ ଗୋଟିଏ ମାତ୍ର ବିଶ୍ୱବିଦ୍ୟାଳୟ ଥିଲା କିନ୍ତୁ ସଂପ୍ରତି କୋରାପୁଟ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଏବଂ କଟକର ଜାତୀୟ ଆଇନ ବିଶ୍ୱବିଦ୍ୟାଳୟ ସହ ରାଜ୍ୟରେ ୧୧ଟି ବିଶ୍ୱବିଦ୍ୟାଳୟ କାର୍ଯ୍ୟ କରୁଛି । ଏତଦ୍‌ବ୍ୟତୀତ ରାଜ୍ୟ ସରକାର କଟକର ନରାଜଠାରେ ଶ୍ରୀ ଶ୍ରୀ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ୧୮୫.୭୮୦ ଏକର ଜମି ଓ ପୁରୀଠାରେ ବେଦାନ୍ତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ୩୨୭୭.୭୩ ଏକର ଜମି ଯୋଗାଇ ଦେଇଛନ୍ତି । ସେହିପରି ଜାତୀୟ ବିଜ୍ଞାନ ଶିକ୍ଷା ଓ ଗବେଷଣା ଅନୁଷ୍ଠାନ (National Institute of Science Education and Research, NISER) ପରମାଣୁ ଶକ୍ତି ବିଭାଗ ଦ୍ୱାରା ପ୍ରତିଷ୍ଠା କରାଯାଇ ୨୦୦୭-୦୮ ଶିକ୍ଷାବର୍ଷଠାରୁ ପଦାର୍ଥ ବିଜ୍ଞାନ ଅନୁଷ୍ଠାନର ପରିସରରେ କାର୍ଯ୍ୟ କରି ଆସୁଅଛି । [୧]

ବୈଷୟିକ ଶିକ୍ଷା ସମ୍ବନ୍ଧରେ ଲକ୍ଷ୍ୟ କଲେ ଜଣାଯାଏ ଯେ ଜାତୀୟ ବୃତ୍ତିସମ୍ବନ୍ଧୀୟ ପ୍ରଶିକ୍ଷଣ ପରିଷଦ (National Council of Vocational Training, (NCVT) ଅଧୀନସ୍ଥ କାରିଗର ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଓଡ଼ିଶାର ୨୫ଟି ସରକାରୀ ଓ ୨୦୬ଟି ବେସରକାରୀ ଆଇଟି ଆଇ ରେ ପ୍ରଦାନ କରାଯାଉଛି ଓ ସେମାନଙ୍କର ଛାତ୍ରଗ୍ରହଣ ଦକ୍ଷତା ହେଉଛି ୨୧,୪୫୩ ।

୨୦୦୮-୦୯ ବର୍ଷରେ ବୈଷୟିକ ଶିକ୍ଷା ପ୍ରଦାନ କରୁଥିବା ବୈଷୟିକ ଅନୁଷ୍ଠାନଗୁଡ଼ିକ ହେଲା-

| ଅନୁଷ୍ଠାନ | ସଂଖ୍ୟା | ଅନ୍ତର୍ଗ୍ରହଣ ଦକ୍ଷତା |
|---|---|---|
| ୧. ସରକାରୀ ଇଂଜିନିୟରିଂ ମହାବିଦ୍ୟାଳୟ | ୦୬ | ୧୬୯୩ |
| ୨. ବେସରକାରୀ ଇଂଜିନିୟରିଂ ମହାବିଦ୍ୟାଳୟ | ୮୮ | ୨୧୬୨୮ |
| ୩. ସରକାରୀ ଇଂଜିନିୟରିଂ ବିଦ୍ୟାଳୟ ଓ ପଲିଟେକ୍‌ନିକ୍‌ସ | ୧୨ | ୨୩୮୫ |
| ୪. ବେସରକାରୀ ଇଂଜିନିୟରିଂ ବିଦ୍ୟାଳୟ ଓ ପଲିଟେକ୍‌ନିକ୍‌ସ | ୬୩ | ୨୧୩୬୦ |
| ୫. ସ୍ଥପତି ବିଜ୍ଞାନ (Architecture) | ୦୨ | ୨୦୦ |
| ୬. ସରକାରୀ ଏମ୍.ସି.ଏ. ମହାବିଦ୍ୟାଳୟ | ୧୩ | ୪୨୦ |
| ୭. ବେସରକାରୀ ଏମ୍.ସି.ଏ. ମହାବିଦ୍ୟାଳୟ | ୪୭ | ୩୧୯୫ |
| ୮. ସରକାରୀ ଏମ୍.ବି.ଏ. ମହାବିଦ୍ୟାଳୟ | ୧୦ | ୫୦୫ |
| ୯. ବେସରକାରୀ ଏମ୍.ବି.ଏ. ମହାବିଦ୍ୟାଳୟ | ୫୭ | ୪୨୨୭ |
| ୧୦. ଆଇ.ଟି.ଆଇ./ ଟି.ଟି.ସି. | ୨୦୬ | ୧୭୪୩୪ |
| ୧୧. ଜାତୀୟ ବୈଷୟିକ ଅନୁଷ୍ଠାନ | ୦୧ | ୩୬୦ |
| ୧୨. ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ | ୦୧ | ୧୩୪୨ |
| ୧୩. ସରକାରୀ ଡାକ୍ତରୀ ମହାବିଦ୍ୟାଳୟ | ୦୩ | ୩୮୪ |
| ୧୪. ସରକାରୀ ଦାନ୍ତ ମହାବିଦ୍ୟାଳୟ | ୦୧ | ୪୨ |
| ୧୫. ବେସରକାରୀ ଡାକ୍ତରୀ ମହାବିଦ୍ୟାଳୟ | ୦୩ | ୩୦୦ |
| ୧୬. ବେସରକାରୀ ଦାନ୍ତ ମହାବିଦ୍ୟାଳୟ | ୦୪ | ୩୬୦ |
| ୧୭. ସରକାରୀ ଫାର୍ମାସୀ ମହାବିଦ୍ୟାଳୟ | ୦୧ | ୬୦ |

| | | |
|---|---|---|
| ୧୮. ସରକାରୀ ନର୍ସିଂ ମହାବିଦ୍ୟାଳୟ | ୦୧ | --- |
| ୧୯. ବେସରକାରୀ ଫାର୍ମାସୀ ମହାବିଦ୍ୟାଳୟ | ୧୬ | ୯୬୦ |
| ୨୦. ବେସରକାରୀ ନର୍ସିଂ ମହାବିଦ୍ୟାଳୟ | ୬ | ----- |
| ୨୧. ନର୍ସିଂ ବିଦ୍ୟାଳୟ | ୭ | ୪୯୦ |

ଏତେଗୁଡ଼ିଏ ଶିକ୍ଷାୟତନ ସୃଷ୍ଟି ହୋଇଥିଲେ ହେଁ ଅନେକ ମହାବିଦ୍ୟାଳୟର ଭିତ୍ତିଭୂମି ଅତ୍ୟନ୍ତ ଶୋଚନୀୟ ଅବସ୍ଥାରେ ଅଛି । ଛୋଟକାଟିଆ ମହାବିଦ୍ୟାଳୟ ନୁହେଁ ଓଡ଼ିଶାର ପ୍ରତିଷ୍ଠିତ ରେଭେନ୍ସା ମହାବିଦ୍ୟାଳୟ (ସମ୍ପ୍ରତି ୨୦୦୬ ମସିହାଠାରୁ ବିଶ୍ୱବିଦ୍ୟାଳୟର ମାନ୍ୟତା ପାଇଛି), ଉତ୍କଳ ବିଶ୍ୱବିଦ୍ୟାଳୟ, କୃଷି ଓ ବୈଷୟିକ ବିଶ୍ୱ ବିଦ୍ୟାଳୟମାନଙ୍କରେ ମଧ୍ୟ ଏ ସମସ୍ୟା ଲାଗି ରହିଛି । ପ୍ରଫେସର ଡକ୍ଟର ବୈଦ୍ୟନାଥ ମିଶ୍ର ଏ ସବୁ ଶିକ୍ଷାୟତନମାନଙ୍କର ଅବସ୍ଥାକୁ ଲକ୍ଷ୍ୟ କରି କହନ୍ତି– ଯେଉଁ ବିଷୟରେ ୫୨୬ ଜଣ ଅଧ୍ୟାପକ ରହିବା କଥା, ସେଠାରେ ମୋଟ ୨୧୩ ଜଣ ଅଧ୍ୟାପକ ଅଛନ୍ତି । ଅର୍ଥାଭାବରୁ ଖାଲି ପଦବୀଗୁଡ଼ିକ ପୂରଣ ହୋଇପାରୁନି । ଛାତ୍ରମାନଙ୍କ ବସିବା ପାଇଁ ସାଧାରଣ ପ୍ରକୋଷ୍ଠ ଓ ଛାତ୍ରୀମାନଙ୍କ ପାଇଁ ସ୍ୱତନ୍ତ୍ର ପରିସ୍ରାଗାରଟିଏ ନାହିଁ । ଏପରିକି ପିଇବା ପାଣିର ସୁବିଧା ନାହିଁ । ସବୁଠାରୁ ଦୁଃଖର କଥା ଯେ ଗ୍ରନ୍ଥାଗାରରେ ଆବଶ୍ୟକୀୟସଂଖ୍ୟକ ପୁସ୍ତକ ଓ ପତ୍ର ପତ୍ରିକା ନାହିଁ । କେତେକ ମହାବିଦ୍ୟାଳୟର ଅଧ୍ୟାପକମାନେ ନିର୍ଦ୍ଦିଷ୍ଟ କେତେକ ନୋଟ ବହିକୁ ଆଶ୍ରୟ କରି ନିଜର ଅଧ୍ୟାପନା କାର୍ଯ୍ୟ ସମ୍ପାଦନା କରୁଛନ୍ତି । ଆହୁରି କେତେକ ଅଧ୍ୟାପକ ଅଛନ୍ତି ଯେଉଁମାନେ ଅତି କମ୍‌ରେ କାମ ଚଳାଇ ଦେବା ପାଇଁ ଚେଷ୍ଟା କରନ୍ତି । ତେଣୁ ସେମାନେ ମୂଳ (original) ପୁସ୍ତକ କିମ୍ବା ଜର୍ଣ୍ଣାଲ୍‌ଗୁଡ଼ିକୁ ଦରକାର କରନ୍ତି ନାହିଁ । ଏସବୁ କଥା ଅନେକ ଆଞ୍ଚଳିକ ମହାବିଦ୍ୟାଳୟ ମାନଙ୍କରେ ପରିଦୃଷ୍ଟ ହେଉଥିଲେ ହେଁ ରେଭେନ୍ସାରେ ମଧ୍ୟ ଦେଖିବାକୁ ମିଳୁଛି ।[୨]

ସମୟାନୁସାରେ ଅନେକ ପରିବର୍ତ୍ତନ ହେଲାଣି ସତ, ତଥାପି ଓଡ଼ିଶାର ଉଚ୍ଚଶିକ୍ଷା ଆଶାନୁରୂପ ପରିବର୍ତ୍ତନ ହୋଇପାରିନାହିଁ । ସଂପ୍ରତି ଭିତ୍ତିଭୂମିଜନିତ ସମସ୍ୟା ରେଭେନ୍ସା ବିଶ୍ୱ ବିଦ୍ୟାଳୟକୁ ଜାବୁଡ଼ି ଧରିଲା ପରି ମନେ ହେଉଛି । ସୁଦୂର ନବରଙ୍ଗପୁରରୁ ଆସିଥିବା ସ୍ମିତା ପୁହାଣ ଯିଏ ରେଭେନ୍ସା ଜୁନିଅର କଲେଜର ଜଣେ ଛାତ୍ରୀ ସେ କିପରି ଅସୁବିଧାର ସମ୍ମୁଖୀନ ହେଉଛନ୍ତି ତାହା ଟାଇମସ୍ ଅଫ୍ ଇଣ୍ଡିଆ ଖବରକାଗଜର ୨୯ ଅଗଷ୍ଟ ତାରିଖରେ ପ୍ରକାଶିତ ହୋଇଛି । ପ୍ରକାଶିତ ସୂଚନା ଅନୁସାରେ ଉପଯୁକ୍ତସଂଖ୍ୟକ ଶିକ୍ଷକ ଓ ଶ୍ରେଣୀଗୃହର ଅଭାବ କାରଣରୁ ସ୍ମିତା ପରି ଅନେକ ଛାତ୍ରଛାତ୍ରୀ ସେଠାରେ ଠିକ୍‌ଭାବେ ଅଧ୍ୟୟନ କରିପାରୁ ନାହାନ୍ତି । ସେଠାରେ ନିୟମିତ କ୍ଲାସ୍ ହେଉ ନାହିଁ କି ଏକ ଭଲ ଗ୍ରନ୍ଥାଗାରକୁ ଯାଇ ତାହାକୁ ଉପଯୋଗ କରିବାର ସୁବିଧା ନାହିଁ ।

ଏହା ସାଙ୍ଗକୁ ପିଲାଙ୍କ ତୁଳନାରେ ଶିକ୍ଷକମାନଙ୍କର ଅଭାବ, ସେମାନଙ୍କ ପାଇଁ ଛାତ୍ରାବାସର ଅଭାବ, ପ୍ରତ୍ୟହ ୧୨୬ କ୍ଲାସ୍ ପରିବର୍ତ୍ତେ ୮୦ଟି କ୍ଲାସକୁ ପରିଚାଳନା କରିବା, ଜୁନିଅର କଲେଜର ୨୦ରୁ ଅଧିକ ଛାତ୍ରୀଙ୍କୁ ଛାତ୍ରାବାସରେ ରହିବାର ବ୍ୟବସ୍ଥା ହୋଇ ନ ଥିବା ସୁବିଧା ନ ଥିବା, ଦଶ ହଜାର ପୁସ୍ତକ ବିଶିଷ୍ଟ ଗ୍ରନ୍ଥାଗାରକୁ ଆଉ ଏକ ବଡ଼ ଗ୍ରନ୍ଥାଗାରରେ ପରିଣତ କରିବା ପାଇଁ ସୁବିଧା ନଥିବା, ବିଜ୍ଞାନ ବିଭାଗରେ ଆଟେଣ୍ଡାଣ୍ଟ, ଡେମୋନ୍‌ଷ୍ଟ୍ରେଟର ମାନଙ୍କର ଅଭାବ । ଅଣଶିକ୍ଷକମାନଙ୍କର ଅଭାବ ଜୁନିଅର କଲେଜର ସ୍ୱତନ୍ତ୍ର ଗୃହ ନିର୍ମାଣ ପାଇଁ ସରକାର ଜମି ଯୋଗାଇ ନ ଦେବା ଆଦି ଅନେକ ସମସ୍ୟା ରହିଛି । [୩]

ଅନ୍ୟପକ୍ଷରେ ଅନେକ ବୈଷୟିକ ଅନୁଷ୍ଠାନମାନ ନିଜର ପୁଞ୍ଜି ବିନିଯୋଗ କରି ଉନ୍ନତ ଭିତ୍ତିଭୂମି (infrastructure) ସୃଷ୍ଟି କରିବା ଠାରୁ ଆରମ୍ଭ କରି ଲାଇବ୍ରେରୀ/ଗ୍ରନ୍ଥାଗାର ପାଇଁ ଅଧିକ ପୁସ୍ତକ ଓ ପତ୍ରପତ୍ରିକା କିଣୁଛନ୍ତି, କଂପ୍ୟୁଟର ଓ ଇଣ୍ଟରନେଟ ସେବା ଏପରିକି ମନୋରଞ୍ଜନ ମାଧ୍ୟମମାନ ଛାତ୍ରଛାତ୍ରୀମାନଙ୍କୁ ଯୋଗାଇ ଦେଇ ସେମାନଙ୍କ ମନକୁ ଆକର୍ଷଣ କରୁଛନ୍ତି ଓ ଶିକ୍ଷା ପ୍ରଦାନ କରୁଥିବା ଶିକ୍ଷକମାନଙ୍କ ଉନ୍ନତ ହାରରେ ଦରମା ଦେଉଛନ୍ତି । ଗୋଟିଏ ପିଲା ସେହିସବୁ ଅନୁଷ୍ଠାନମାନଙ୍କରୁ ବୈଷୟିକ ଶିକ୍ଷା ସମାପ୍ତ କରି ଆସିଲା ବେଳକୁ ସେ ଅତି କମ୍‌ରେ ୧୫ ଲକ୍ଷ ଟଙ୍କା ଖର୍ଚ୍ଚ କରୁଛି । କେବଳ ସ୍ୱଚ୍ଛଳବର୍ଗର ପିଲାଙ୍କ ବ୍ୟତୀତ ଏହା ସମସ୍ତଙ୍କ କ୍ଷେତ୍ରରେ ସମ୍ଭବ ହେଉନି ।

କଥାରେ ଅଛି– (Money talks but it can not sing or dance) ଅର୍ଥାତ୍ ଅଧିକ ପୁଞ୍ଜି ବିନିଯୋଗ କଲେ ଭିତ୍ତିଭୂମି ଉନ୍ନତ ହୋଇପାରିବ, ଗ୍ରନ୍ଥାଗାର ପାଇଁ ଆବଶ୍ୟକୀୟ ପୁସ୍ତକ ଓ ପତ୍ରପତ୍ରିକା କିଣାଯାଇପାରିବ, ଖାଲି ପଡ଼ିଥିବା କିମ୍ବା ଆବଶ୍ୟକ ସଂଖ୍ୟକ ଅଧ୍ୟାପକ ଅଧ୍ୟାପିକା ନିଯୁକ୍ତ କରାଯାଇପାରିବ କିମ୍ବା ଅଧ୍ୟାପକମାନଙ୍କୁ ପ୍ରଶିକ୍ଷଣ ଦିଆଯାଇ

ସେମାନଙ୍କ ଯୋଗ୍ୟତାକୁ ବୃଦ୍ଧି କରାଯାଇପାରିବ ଇତ୍ୟାଦି ଇତ୍ୟାଦି । କିନ୍ତୁ ପ୍ରଶ୍ନ ଉଠୁଛି– ସେହି ପୁଞ୍ଜି ଉପଯୁକ୍ତଭାବେ ବିନିଯୋଗ ହେବା ଫଳରେ ଶିକ୍ଷାର ଗୁଣାତ୍ମକ ବିକାଶ ହୋଇପାରିବ କି ନାହିଁ । କାରଣ ଶିକ୍ଷାର ଗୁଣାତ୍ମକ ବିକାଶ ଅର୍ଥ ଉପରେ ଯେତିକି ନିର୍ଭର କରେ ନାହିଁ, ତା ଠାରୁ ଅଧିକ ନିର୍ଭର କରେ ମାନବିକ ଚିନ୍ତାଧାରା ଉପରେ । ଏହାର କାରଣ ହେଉଛି ଶିକ୍ଷକତା ଏକ ବ୍ୟବସାୟ ନୁହେଁ । ଏହା ଏକ ବ୍ୟକ୍ତି ଜୀବନର ଲକ୍ଷ୍ୟ (mission) । ଅଧିକ ପୁଞ୍ଜି ବିନିଯୋଗ କଲେ ସେହି ଲକ୍ଷ୍ୟ ଆସିପାରେ କି ନାହିଁ ତାହାହିଁ ଏକ ଆହ୍ୱାନ ବୋଲି ମନେହୁଏ ।

ସଂପ୍ରତି ଉଚ୍ଚଶିକ୍ଷା କ୍ଷେତ୍ରରେ ଯେଉଁସବୁ ଅଭାବ ପରିଲକ୍ଷିତ ହେଉଛି, ସେ ସଂପର୍କରେ ପୂର୍ବାଞ୍ଚଳ କୁଳପତିମାନଙ୍କ ସମାବେଶ ଯାହା ଭୁବନେଶ୍ୱରଠାରେ ଅନୁଷ୍ଠିତ ହୋଇଥିଲା ସେଠାରେ ଆଲୋଚିତ ହୋଇଛି । ପୂର୍ବ ଭାରତର ୩୦ଟି ବିଶ୍ୱ ବିଦ୍ୟାଳୟର କୁଳପତିମାନେ ଏକତ୍ର ହୋଇ ଉଚ୍ଚଶିକ୍ଷା କ୍ଷେତ୍ରରେ ରହିଥିବା ଯେଉଁ ଅଭାବକୁ ଲକ୍ଷ୍ୟ କରିଛନ୍ତି ସେ ବିଷୟଗୁଡ଼ିକ ହେଉଛି : ୧– ଗୁଣୀ ଶିକ୍ଷକମାନଙ୍କ ଅଭାବ (shortage of quality teachers), ୨– ଅର୍ଥର ଅଭାବ (lack of funds), ୩–ପୁରାତନ ପାଠ୍ୟକ୍ରମ (obsolete curriculum), ୪– ତ୍ରୁଟିପୂର୍ଣ୍ଣ ସରକାରୀ ନୀତି (wrong govt. policies)

ଉଚ୍ଚଶିକ୍ଷା କ୍ଷେତ୍ରରେ ଥିବା ଅଭାବକୁ ଲକ୍ଷ୍ୟ କରି ଭାରତୀୟ ବିଶ୍ୱବିଦ୍ୟାଳୟ ସଂଘ (Association of Indian Universities) ର ସଭାପତି କହନ୍ତି– ଆମ ଦେଶର ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟମାନଙ୍କରେ ପ୍ରାୟ ୫୦ ପ୍ରତିଶତ ପଦବୀ ଖାଲି ପଡ଼ିଛି । ବହୁସଂଖ୍ୟକ ଶିକ୍ଷକ ସରକାରଙ୍କ ତ୍ରୁଟିପୂର୍ଣ୍ଣ ନୀତି ପାଇଁ ଚାକିରିଛାଡ଼ି ପଳାଇ ଯାଉଛନ୍ତି ଓ ତ୍ରୁଟିପୂର୍ଣ୍ଣ ଚୟନ ପ୍ରକ୍ରିୟା କାରଣରୁ ଅଧିକାଂଶ ବିଶ୍ୱବିଦ୍ୟାଳୟମାନଙ୍କରେ ଗୁଣୀ ଶିକ୍ଷକଙ୍କ ଅଭାବ ଦେଖା ଦେଇଛି । ନେସନାଲ ଏଲିଜିବିଲିଟି ଟେଷ୍ଟ (National Eligibility) ଏବଂ ସ୍ୟାଟ (SAT)ର ଚୟନ ପ୍ରକ୍ରିୟାରେ ଥିବା ତ୍ରୁଟିକୁ ନିର୍ଦ୍ଦେଶ କରି ଭାରତୀୟ ବିଶ୍ୱବିଦ୍ୟାଳୟ ସଂଘର ସଭାପତି ପି.ଟି. ଚାନ୍ଦେ କହନ୍ତି– ଉତ୍ତମ ମାନର ଶିକ୍ଷାଦାନ ଓ ଶିକ୍ଷା ଗ୍ରହଣ ପ୍ରକ୍ରିୟାରେ ଶିକ୍ଷକମାନେ ବୃତ୍ତିଗତ ଗୋଷ୍ଠୀ (community) ସୃଷ୍ଟି କରନ୍ତି ନାହିଁ । ଅନ୍ୟପକ୍ଷରେ ସେମାନେ ଛାତ୍ରଛାତ୍ରୀ ଓ ଶିକ୍ଷକମାନଙ୍କ ଭିତରେ ହେଉଥିବା ଭାବ ଆଦାନ ପ୍ରଦାନରେ ସଂଶ୍ଳିଷ୍ଟ ହୁଅନ୍ତି । ନେସନାଲ ଏଲିଜିବିଲିଟ ଟେଷ୍ଟ ଓ ସ୍ୟାଟ କେବଳ ପ୍ରାର୍ଥୀ ଓ ପ୍ରାର୍ଥୀନୀମାନଙ୍କ ବୁଦ୍ଧିମତ୍ତା (Brilliance) ପରୀକ୍ଷା କରନ୍ତି କିନ୍ତୁ ସେମାନଙ୍କ ଯୋଗାଯୋଗ ଦକ୍ଷତା (communication abilities) ଉପରେ ପରୀକ୍ଷା କରନ୍ତି ନାହିଁ । ତେଣୁ ସେ ପ୍ରତି ଅଗ୍ରାଧିକାର ଦିଆଯିବା ଉଚିତ ।

କେତେକ କୁଳପତିମାନେ କେନ୍ଦ୍ର ରାଜ୍ୟ ବିଶ୍ୱବିଦ୍ୟାଳୟମାନଙ୍କ ପ୍ରତି ବୈମାତୃକ ଭାବ (step-motherly attitude) ପରିପ୍ରକାଶ କରି ପର୍ଯ୍ୟାପ୍ତ ପରିମାଣର ଅର୍ଥ ଦେଉ ନାହାନ୍ତି ବୋଲି ଅଭିଯୋଗ କରିଥିଲେ ଏବଂ ୟୁନିଭରସିଟି ଗ୍ରାଣ୍ଟସ୍ କମିଶନ ଆଇନର ୧୨B ପରିଚ୍ଛେଦ (ଯାହା ବିଶ୍ୱବିଦ୍ୟାଳୟମାନେ ଅର୍ଥ ପାଇବା ପାଇଁ ଦରକାର ହେଉଥିବା ଯୋଗ୍ୟତା ବିଷୟରେ ସୂଚନା ଦିଏ) ତାହାକୁ ଉଚ୍ଛେଦ କରିବାକୁ ଦାବି କରିଥିଲେ । ସେହିପରି ଅନେକ ନୂଆ ବିଶ୍ୱବିଦ୍ୟାଳୟ ଯେଉଁମାନେ ଅନେକ ପ୍ରାରମ୍ଭିକ ଅସୁବିଧା (teething troubles)ର ସମ୍ମୁଖୀନ ହେଉଛନ୍ତି ୟୁଜିସି ସେମାନଙ୍କୁ ନିୟମାନୁସାରେ ପ୍ରସ୍ତୁତି ହେବା ପାଇଁ ଏକ ସମୟସୀମା ଦେବା ପାଇଁ ଦାବି କରିଥିଲେ ।[୪]

ଏହିପରି ଅନେକ ସମସ୍ୟା ଉଚ୍ଚଶିକ୍ଷା କ୍ଷେତ୍ରରେ ପରିଲକ୍ଷିତ ହେଉଛି । ତେଣୁ ସେ ସବୁକୁ ଦୂର କରିବା ପାଇଁ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାର ଚେଷ୍ଟା କରିବା ଦରକାର । ଏହା ସହିତ ଶିକ୍ଷକ ଓ ଛାତ୍ରମାନେ ଯେଉଁମାନେ ପ୍ରକୃତପକ୍ଷେ ଉଚ୍ଚଶିକ୍ଷାକୁ ଏକ ବଳିଷ୍ଠ ରୂପରେଖ ଦେବାକୁ କାର୍ଯ୍ୟ କରୁଛନ୍ତି ସେମାନେ ଏ ଦିଗରେ ସମୁଚିତ ପଦକ୍ଷେପ ଦେବା ଉଚିତ ।

୧. Govt. of Orissa, Planning & co-ordination department– Economic Survey 2009-10, P-264

୨. ବୈଦ୍ୟନାଥ ମିଶ୍ର– ଶିକ୍ଷାର ମୂଲ୍ୟାୟନ – ଯୋଜନା, ସେପ୍ଟେମ୍ବର–୨୦୦୫ରେ ପ୍ରକାଶିତ ପୃଷ୍ଠା–୪

୩. Jaiswal, Binita– infrastructure woes ail Ravenshaw Junior College T0L– Aug 29, 2011

୪. T0L – VC meet highlights higher education lacunac– Sept-3, 2011



ଏ. ଏମ୍.– ୮
ଭୀମଟାଙ୍ଗୀ ହାଉସିଂ ବୋର୍ଡ଼, ଭୁବନେଶ୍ୱର

# ଉତ୍କଳର ଜଳଯାତ୍ରା ଓ ନୌବାଣିଜ୍ୟ

ହେମନ୍ତ କୁମାର ନାୟକ

ଓଡ଼ିଶାର ପ୍ରାଚୀନ ନାମ ଉଡ୍ର, ଉତ୍କଳ ଓ କଳିଙ୍ଗ ଭାବରେ ପରିଚିତ ଥିଲା ବୋଲି ସମସ୍ତଙ୍କୁ ଜଣା । ଆମ ରାଜ୍ୟର ଇତିହାସକୁ ଅବଲୋକନ କଲେ ଜଣାଯାଏ ଯେ, ସମ୍ରାଟ ଖାରବେଳଙ୍କ ରାଜତ୍ୱ କାଳରେ ଏହା ଏକ ସମୃଦ୍ଧ ରାଜ୍ୟରେ ପରିଣତ ହୋଇଥିଲା । ସେତେବେଳର ଉତ୍କଳୀୟମାନଙ୍କ ଦୃଢ଼ ଇଚ୍ଛା ଶକ୍ତି ଓ ଦୁଃସାହସିକ କାର୍ଯ୍ୟ ଯୋଗୁଁ ଏହା ସମ୍ଭବପର ହୋଇପାରିଥିଲା । ଇତିହାସ ପ୍ରତି ଅବଲୋକନ କଲେ ପ୍ରାଚୀନ ଉତ୍କଳର ଜଳଯାତ୍ରା ସମ୍ବନ୍ଧରେ ଅନେକ ତଥ୍ୟ ମିଳେ । ପ୍ରତ୍ୟେକ ଜାତି ନିଜର ଇତିହାସକୁ ନେଇ ସର୍ବଦା ଗର୍ବ ଅନୁଭବ କରିଥାଏ । ତେଣୁ ଯେଉଁ ଜାତିର ଇତିହାସ ଯେତେ ବ୍ୟାପକ ସେ ଜାତି ସେତେ ଉନ୍ନତ ଓ ସମୃଦ୍ଧିଶାଳୀ । ସେ ଦୃଷ୍ଟିରୁ ଉତ୍କଳର ଜଳଯାତ୍ରା ପ୍ରସଙ୍ଗରେ ଆଲୋଚନା କଲାବେଳେ ଉତ୍କଳର ଇତିହାସ, ଅର୍ଥନୀତି, ରାଜନୈତିକ ପରିବେଶ, ଭୌଗୋଳିକ ସ୍ଥିତି, ଧର୍ମୀୟ ଭାବଧାରା, ସାଂସ୍କୃତିକ ଚିତ୍ର, ସାହିତ୍ୟାଦି ପ୍ରସଙ୍ଗକୁ ନେଇ ଆଲୋଚନା କରିବା ଅଧିକ ପ୍ରାସଙ୍ଗିକ ହେବ ବୋଲି ମୋର ଦୃଢ଼ ଧାରଣା ।

ଐତିହାସିକମାନଙ୍କ ମତରେ ଯେଉଁ ଦେଶର ଜଳଯାତ୍ରାର ସୁବିଧା ଯେତେ ଅଧିକ ସେ ଦେଶ ସେତେ ସମୃଦ୍ଧିଶାଳୀ ଓ ଜଳଯାତ୍ରାରେ ସେତେ ପାରଙ୍ଗମ । ଏଥିପାଇଁ ଭୌଗୋଳିକ ସ୍ଥିତି ମୁଖ୍ୟତଃ ଦାୟୀ । ଉଦାହରଣସ୍ୱରୂପ ଇଂଲଣ୍ଡ, ଆମେରିକା ଇତ୍ୟାଦି ଦେଶରେ ସମୁଦ୍ର ଚାରିଆଡ଼େ ଘେରି ରହିଛି, ତେଣୁ ସେ ଦେଶର ଲୋକମାନେ ସମୁଦ୍ର ଯାତ୍ରା କରିବାକୁ ବାଧ୍ୟ । ଆମ ଦେଶର ତିନି ପାଖରେ ସମୁଦ୍ର ଘେରି ରହିଛି । ତେଣୁ ଭାରତୀୟମାନେ ନୌଯାତ୍ରା ସମ୍ବନ୍ଧରେ ଅଧିକ ସଚେତନ । ଏହା ଆମ ସାମାଜିକ ଓ ସାଂସ୍କୃତିକ ପରଂପରାର ଏକ ଅଙ୍ଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଶାର ସୁଦୀର୍ଘ ୪୮୦ କି.ମି. ଉପକୂଳ ଅତୀତର ଉତ୍କଳୀୟମାନଙ୍କୁ ଜଳଯାତ୍ରା ଓ ନୌବାଣିଜ୍ୟ କରିବା ପାଇଁ ପ୍ରେରଣା ଯୋଗାଇଥିବା ଇତିହାସରୁ ପରିଲକ୍ଷିତ ହୋଇଛି ।

ପ୍ରାଚୀନ କାଳରେ ଓଡ଼ିଶାର ସୀମା ଗଙ୍ଗାନଦୀଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । ଏହି ଦୁଇ ନଦୀର ମୁହାଣ ମଧ୍ୟରେ କଳିଙ୍ଗ ସାଗରରେ ବହୁ ପ୍ରାକୃତିକ ବନ୍ଦର ଥିଲା । ବନ୍ଦରମାନଙ୍କ ମଧ୍ୟରେ ତାମ୍ରଲିପ୍ତ, ଅଜିତା, ପିପିଲି, ଦଶାର୍ଣ, ଚେଲିତୋଳ, ଦନ୍ତପୁରୀ, ମାଣିକପାଟଣା, ପାଲୁର, ଗଞ୍ଜାମ ପ୍ରଭୃତି ଅନ୍ୟତମ । ପୁରୀ, ବାଲେଶ୍ୱର, ମାଣିକପାଟଣା ଇତ୍ୟାଦି ସ୍ଥାନରୁ ପ୍ରାଚୀନ ବୈଦେଶିକ ମୁଦ୍ରା ମିଳିଥିବାରୁ ଉତ୍କଳୀୟମାନଙ୍କର ସମୁଦ୍ରପାରି ଦେଶମାନଙ୍କ ସହ ଖ୍ରୀଷ୍ଟପୂର୍ବ କାଳରୁ ସାମୁଦ୍ରିକ ବାଣିଜ୍ୟ ସଂପର୍କ ଥିବା ଜଣାଯାଏ । ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀର ଅନ୍ତିମ ଭାଗରେ ମଗଧ ଶାସକ ଚନ୍ଦ୍ରଗୁପ୍ତଙ୍କ ଅର୍ଥ ମନ୍ତ୍ରୀ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରୁ ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ସଂପର୍କରେ ସୂଚନା ମିଳେ । ଚାଣକ୍ୟଙ୍କ ପୋତ ନିର୍ମାଣ ସଂପର୍କରେ ସୂଚନା ଓ ନୌଯାତ୍ରା ନିମନ୍ତେ ଆଷାଢ଼ମାସଠାରୁ କାର୍ତ୍ତିକ ମାସ ପର୍ଯ୍ୟନ୍ତ ସମୟ ଉପଯୁକ୍ତ ବୋଲି ବିଭିନ୍ନ ଆଲେଖ୍ୟରୁ ସ୍ପଷ୍ଟ ଅନୁମେୟ ହୁଏ । ମଗଧ ଦେଶ ମଧ୍ୟ ଉତ୍କଳ ଦେଶର ବନ୍ଦର ଉପରେ ନିର୍ଭର କରୁଥିଲା ବୋଲି ଐତିହାସିକମାନେ ମତ ପୋଷଣ କରିଛନ୍ତି । ଉତ୍କଳର ନୌଯାତ୍ରା ଓ ନୌବାଣିଜ୍ୟ ଖ୍ରୀଷ୍ଟପୂର୍ବ କାଳରୁ ଅବ୍ୟାହତ ଥିଲା, ଯାହାକି ସୁଦୀର୍ଘ ପରମ୍ପରାରେ ପରିଣତ ହୋଇଯାଇଛି । ଚାଣକ୍ୟଙ୍କ ମତରେ 'ସପ୍ତାହ ବୃତ୍ତମାଷାଢ଼ାଂ କାର୍ତ୍ତିକ୍ୟଂ ଚାନ୍ତରାତରଃ', ଅର୍ଥାତ୍ ଆଷାଢ଼ ସପ୍ତମୀଠାରୁ କାର୍ତ୍ତିକମାସ ପର୍ଯ୍ୟନ୍ତ ଜଳଯାତ୍ରା କରିବା ସୁବିଧାଜନକ । ଏହି ସମୟରେ ଉପକୂଳ ଅଞ୍ଚଳରେ ନଦନଦୀ ସବୁ ଜଳପୂର୍ଣ୍ଣ ଥାଏ । ଏଥି ସହ ମୌସୁମୀ ବାୟୁ ଦକ୍ଷିଣ-ପଶ୍ଚିମ ଦିଗରୁ ପ୍ରବାହିତ ହେଉଥିବାରୁ ନୌକାଗୁଡ଼ିକ ପ୍ରତ୍ୟାବର୍ତ୍ତନ କରିବା ପାଇଁ ସହଜ

ହୋଇଥାଏ । ଯାତ୍ରାରମ୍ଭ ଓ ପ୍ରତ୍ୟାବର୍ତ୍ତନ ସମୟରେ ଓଡ଼ିଶାର ସାଧବବୋହୂମାନେ ଅର୍ଘ୍ୟଥାଳୀ ନେଇ ହୁଳହୁଳି ପକାଇ ବୋଇତ ବନ୍ଦାଉଥିଲେ । ସଂପ୍ରତି ଓଡ଼ିଆଙ୍କ ସାମୁଦ୍ରିକ ଜଳଯାତ୍ରା ଓ ନୌବାଣିଜ୍ୟ ବନ୍ଦ ହୋଇଯାଇଥିଲେ ହେଁ ପୂର୍ବଗୌରବର ପରମ୍ପରା ରହିଯାଇଛି । ବୋଇତ ବନ୍ଦାଣ ଉତ୍ସବ ପାରିବାରିକ, ବ୍ୟକ୍ତିଗତ ତଥା ସାର୍ବଜନୀନଭାବେ ପାଳିତ ହୋଇ ଉତ୍କଳୀୟ ମହୋତ୍ସବରେ ପରିଣତ ହୋଇଛି ।

ଅତୀତରେ ବ୍ରହ୍ମଦେଶ, ଥାଇଲାଣ୍ଡ, ଶ୍ରୀଲଙ୍କା, ଜାଭା, ସୁମାତ୍ରା ,କାମ୍ବୋଡ଼ିଆ, ବୋର୍ଣ୍ଣିଓ, ରୋମ, ଚୀନ ଏପରିକି ଆଫ୍ରିକା ମହାଦେଶ ପର୍ଯ୍ୟନ୍ତ ଉତ୍କଳୀୟମାନେ ବାଣିଜ୍ୟିକ, ଆଧ୍ୟାତ୍ମିକ ଓ ସାଂସ୍କୃତିକ ସଂପର୍କ ରଖି ପାରିଥିଲେ । ଏସବୁର ପ୍ରମାଣ ଅଦ୍ୟାବଧି ଏହିସବୁ ଦେଶମାନଙ୍କରେ ଦେଖିବାକୁ ମିଳେ । ଆମ ସାଧବପୁଅର ବାଣିଜ୍ୟିକ ଦକ୍ଷତାର ପ୍ରମାଣ ବିଭିନ୍ନ ସାହିତ୍ୟ, ଗଳ୍ପ ଓ କବିତାରୁ ଜଣାପଡ଼େ ।

ଉତ୍କଳୀୟ ନୌବାଣିଜ୍ୟର ଐତିହ୍ୟ ଓ ପରମ୍ପରା ଆମ ରାଜ୍ୟର ପବିତ୍ର ଆଧ୍ୟାତ୍ମିକ ଚେତନା, ଧର୍ମୀୟ ଭାବନା ଓ ପର୍ବପର୍ବାଣୀମାନଙ୍କୁ ପ୍ରତିଫଳିତ ହୋଇଥାଏ । କାର୍ତ୍ତିକ ପୂର୍ଣ୍ଣମୀ ଦିନ ସମଗ୍ର ରାଜ୍ୟରେ ବୋଇତ ବନ୍ଦାଣ ପର୍ବ ପାଳନ କରାଯାଏ । ସଂପ୍ରତି ଦେଶର ରାଜଧାନୀ ନୂଆଦିଲ୍ଲୀରେ ମଧ୍ୟ ବୋଇତ ବନ୍ଦାଣ ଉତ୍ସବ ଆୟୋଜନ କରାଯାଉଛି ।

ସାହସିକ ଉତ୍କଳବାସୀଙ୍କ ଜଳଯାତ୍ରା ଓ ନୌବାଣିଜ୍ୟ ଥିଲା ଜୀବନର ଏକ ଅଂଶବିଶେଷ । ପ୍ରାଚୀନ ଉତ୍କଳର ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଜୀବନର ପ୍ରାଣକେନ୍ଦ୍ର ଥିଲା ବୋଇତ । ଏହା ଆମ ସମୃଦ୍ଧ ଉତ୍କଳର ଐତିହାସିକ ନୌବାଣିଜ୍ୟର ମୂକସାକ୍ଷୀ କହିଲେ କିଛି ଭୁଲ ହେବ ନାହିଁ । ବୋଇତ ଦ୍ୱାରା ବିଶ୍ୱର ବିଭିନ୍ନ ଦେଶର ସାଂସ୍କୃତିକ, ଭାଷା ଓ ଭାବଗତ ବିନିମୟ ଉତ୍କଳୀୟମାନଙ୍କର ସମ୍ଭବ ହୋଇପାରୁଥିଲା । ପ୍ରାଚୀନ ଉତ୍କଳର ସେହି ଐତିହ୍ୟସଂପନ୍ନ ଗୌରବମୟ ସ୍ମୃତିକୁ ବହନ କରୁଛି ଆଜିର ବୋଇତ ବନ୍ଦାଣ ଉତ୍ସବ । ସେତେବେଳର ସାହସୀ ଓଡ଼ିଆଙ୍କ ପ୍ରାଚୁର୍ଯ୍ୟ, ସାହସିକତା, ବୈଦେଶିକ ସଂପର୍କ, ବାଣିଜ୍ୟ, ଦେଶାନ୍ତର ଯାତ୍ରା ସମ୍ବନ୍ଧରେ ସୂଚନା ପ୍ରଦାନ ସହ ବିଶ୍ୱପ୍ରେମ, ବିଶ୍ୱଭାବନା ଓ ଉନ୍ନତ ଚିନ୍ତାଧାରାର ସ୍ୱାକ୍ଷର ବହନ କରେ । ଆଜିର ଯୁବପିଢ଼ି ଆମର ପୂର୍ବ ପରମ୍ପରାକୁ ବଜାୟ ରଖିବା ସହ ସମଗ୍ର ଦେଶରେ ଆମ ରାଜ୍ୟକୁ ଏକ ଅଗ୍ରଣୀ ରାଜ୍ୟରେ ପରିଣତ କରିବାକୁ ମୁଁ ଆହ୍ୱାନ ପ୍ରଦାନ କରୁଛି ।



ସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର

# ପ୍ରାଚୀନ ଭାରତର ଦୁର୍ଗ– ଏକ ଅନୁଶୀଳନ

**ବ୍ରଜ ପାଇକରାୟ**

ପ୍ରାଚୀନ ଭାରତରେ ପ୍ରଜାମାନଙ୍କ ଧନ, ଜୀବନର ସୁରକ୍ଷା ଓ ନିରାପତ୍ତା ପାଇଁ ଏବଂ ବାହ୍ୟଶତ୍ରୁ ଆକ୍ରମଣର ମୁକାବିଲା ଉଦ୍ଦେଶ୍ୟରେ ଦୁର୍ଗ ନିର୍ମାଣର ଆବଶ୍ୟକତା ଅପରିହାର୍ଯ୍ୟ ଥିଲା । କାରଣ ଆଧୁନିକ ଯୁଗରେ ଆଇନର ଶାସନ ଏବଂ ଶାନ୍ତିପୂର୍ଣ୍ଣ ଜୀବନ ଉପଭୋଗ କରୁଥିବା ନାଗରିକମାନଙ୍କଠାରୁ ପ୍ରାଚୀନ ଭାରତର ସାଧାରଣ ପ୍ରଜାମାନଙ୍କ ଜୀବନ ଯାପନ ପ୍ରଣାଳୀ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଓ ଭିନ୍ନ ଥିଲା । ୟୁରୋପ ଭଳି ଭାରତ ବର୍ଷରେ ସେ ସମୟରେ କୌଣସି ବିଶାଳ ସାମ୍ରାଜ୍ୟ ପରିଦୃଷ୍ଟ ହେଉ ନ ଥିଲା । ଅନ୍ୟ ପକ୍ଷରେ ଗ୍ରୀସ୍ ଭଳି ଭାରତରେ ଅନେକ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ରହିଥିଲା ଏବଂ ଉକ୍ତ ରାଜ୍ୟଗୁଡ଼ିକର ଶାସକଗଣ ଅଖଣ୍ଡ କ୍ଷମତା ହାସଲ ପାଇଁ ସର୍ବଦା ପରସ୍ପର ମଧ୍ୟରେ ଯୁଦ୍ଧ କରୁଥିଲେ । ଏତଦ୍ ବ୍ୟତୀତ ଜଙ୍ଗଲର ହିଂସ୍ରଜନ୍ତୁଙ୍କ ଆକ୍ରମଣ, ଡକାୟତି ଏବଂ ବାହ୍ୟ ଶତ୍ରୁମାନଙ୍କ ଘନ ଘନ ଆକ୍ରମଣ ଯୋଗୁଁ ପୁରାତନ କାଳରେ ଭାରତୀୟ ଜନଜୀବନ ଅତ୍ୟନ୍ତ ନିରାପତ୍ତାବିହୀନ ଥିଲା । ତେଣୁ ପ୍ରାଚୀନ ଭାରତବର୍ଷରେ ପ୍ରାୟ ପ୍ରତ୍ୟେକ ଜନପଦ ଏବଂ ନଗରଗୁଡ଼ିକ ଆତ୍ମରକ୍ଷା ଉଦ୍ଦେଶ୍ୟରେ ନିରାପତ୍ତା ବଳୟମାନ ସୃଷ୍ଟି କରିଥିଲେ ଏବଂ ତା'ରି ଫଳସ୍ୱରୂପ ବିବିଧ ପ୍ରାଚୀନ ଦୁର୍ଗଗୁଡ଼ିକ ନିର୍ମାଣ କରାଯାଇଥିଲା ।

ପ୍ରାଚୀନ ଭାରତରେ ରଚିତ ଅର୍ଥଶାସ୍ତ୍ର, ଶୁକ୍ରନୀତି ସାର , ଯୁକ୍ତି କଳ୍ପତରୁ ଇତ୍ୟାଦି ପୁସ୍ତକରୁ ଦୁର୍ଗ ନିର୍ମାଣ ସମ୍ବନ୍ଧୀୟ ବହୁ ତଥ୍ୟ ମିଳିଥାଏ । ଋଗ୍‌ବେଦ କାଳରେ ''ଶତଭୂଜି'' (with a hundred walls) ନାମିତ ବିଶାଳ ଦୁର୍ଗ ବିଦ୍ୟମାନ ଥିବାର ଜଣାଯାଏ । ଏତଦ୍ ବ୍ୟତୀତ ବୈଦିକ କାଳରେ ପୃଥ୍ୱୀ (Prithvi) ଏବଂ ଉର୍ବି (Urbi) ନାମରେ ଦୁଇ ପ୍ରକାର ଦୁର୍ଗ ସଂପର୍କରେ ପ୍ରାଚୀନ ଶାସ୍ତ୍ରରେ ଉଲ୍ଲେଖ କରାଯାଇଛି । ପୁରାଣବର୍ଣ୍ଣିତ ଇନ୍ଦ୍ର ଦୁର୍ଗ ଧ୍ୱଂସ କରିବାରେ ବିଶେଷ ପାରଦର୍ଶିତା ପ୍ରଦର୍ଶନ କରିଥିବାରୁ ତାଙ୍କୁ ''ପୁରନ୍ଦର'' ନାମରେ ନାମିତ କରାଯାଇଛି । 'ଉପନିଷଦ୍' ଏବଂ 'ବ୍ରାହ୍ମଣ'ରେ 'ପୁର' ଓ 'ମହାପୁର' ଶବ୍ଦକୁ ଦୁର୍ଗ ଅର୍ଥରେ ବ୍ୟବହାର କରାଯାଇଛି । ରାମାୟଣରେ ନଦ୍ୟ (River Fort), ପାର୍ବତୀୟ (Hill Fort), ବନଦୁର୍ଗ (Forest Fort) ଏବଂ କୃତ୍ରିମ ଦୁର୍ଗ (Artificial Fort) ସମ୍ବନ୍ଧରେ ଉଲ୍ଲେଖ ରହିଛି । ମହାଭାରତର 'ଶାନ୍ତିପର୍ବ'ରେ ମଧ୍ୟ ବିଭିନ୍ନ ପ୍ରକାର ଦୁର୍ଗ ସମ୍ବନ୍ଧରେ ଉଲ୍ଲେଖ କରାଯାଇଛି । ସେଗୁଡ଼ିକ ହେଲା ୧. ଜଳଦୁର୍ଗ (Water citadels), ୨. ବନଦୁର୍ଗ (Forest citadels), ୩. ମାନବ ଦୁର୍ଗ (Human citadels) । ବୌଦ୍ଧ ଜାତକରେ ବର୍ଣ୍ଣିତ ନଗରଗୁଡ଼ିକରେ ବିଶାଳ ପ୍ରବେଶ ଦ୍ୱାର, ଶତ୍ରୁ ନିରୀକ୍ଷଣ ଗମ୍ବୁଜ, ଭୂତଳ କୋଠରି ଏବଂ ଶକ୍ତ ପ୍ରସ୍ତର ନିର୍ମିତ ବହୁତଳ ପ୍ରାସାଦ ଇତ୍ୟାଦି ବିଦ୍ୟମାନ ଥିବା ଜଣାଯାଏ । ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ଆଲେକଜାଣ୍ଡାରଙ୍କ ଭାରତ ଆକ୍ରମଣ ସମୟରେ ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ବହୁ ଦୁର୍ଗ ଏବଂ ସାମରିକ ଘାଟି ରହିଥିବା ସମ୍ପର୍କରେ ପ୍ରାଚୀନ ଲେଖକମାନଙ୍କ ରଚନାରୁ ଜଣାଯାଏ । ତତ୍‌କାଳୀନ ଭାରତବର୍ଷର ସୁଦକ୍ଷ କୂଟନୀତିଜ୍ଞ ଏବଂ ସାମରିକ ବିଶେଷଜ୍ଞ କୌଟିଲ୍ୟ ଦୁର୍ଗର ଅବସ୍ଥିତି ଅନୁଯାୟୀ ସେଗୁଡ଼ିକୁ ମୋଟ ଚାରି ଭାଗରେ ବିଭକ୍ତ କରିଛନ୍ତି । ଯଥା– ୧– ପାର୍ବତ୍ୟ ବା ଗିରିଦୁର୍ଗ, ୨– ଔଦକ ବା ଜଳଦୁର୍ଗ, ୩– ବନଦୁର୍ଗ ଏବଂ ୪– ମରୁଦୁର୍ଗ ।

**୧. ପାର୍ବତ୍ୟ ଦୁର୍ଗ–** ଉଚ୍ଚ ପର୍ବତର ପଥୁରିଆ ଚଟାଣ ଉପରେ ନିର୍ମିତ ଅଥବା ଚତୁଃପାର୍ଶ୍ୱ ପର୍ବତ ଘେରି ରହିଥିବା ଉପତ୍ୟାକାର ମଧ୍ୟ ଭାଗରେ ନିର୍ମିତ ଦୁର୍ଗଗୁଡ଼ିକ 'ପାର୍ବତ୍ୟ' ବା 'ଗିରିଦୁର୍ଗ' ନାମରେ ପରିଚିତ ଥିଲା ।

**୨. ଔଦକ ଦୁର୍ଗ–** କୌଣସି ନଦୀ ଶଯ୍ୟାର ମଧ୍ୟ ଭାଗରେ ଅବସ୍ଥିତ ଦ୍ୱୀପ କିମ୍ବା ଚତୁର୍ଦ୍ଦିଗରେ ଜଳ ଘେରି ରହିଥିବା ସମତଳ ଭୂମି ଉପରେ ନିର୍ମିତ ଦୁର୍ଗକୁ 'ଔଦକ' ବା 'ଜଳଦୁର୍ଗ' ବୋଲି କୁହାଯାଉଥିଲା ।

**୩. ବନଦୁର୍ଗ–** ଗୁଳ୍ମ, ଲତା ଏବଂ ଅଭେଦ୍ୟ ବୃକ୍ଷରାଜି ମଧ୍ୟରେ ଅବସ୍ଥିତ ଏବଂ ନିର୍ମିତ ଦୁର୍ଗ ବନଦୁର୍ଗ (Forest Fort) ନାମରେ ପରିଚିତ ଥିଲା ।

**୪. ମରୁଦୁର୍ଗ–** ମରୁ ଅଞ୍ଚଳ ତଥା ଜଳକ୍ଳିଷ୍ଟ ଜଙ୍ଗଲ ଅଞ୍ଚଳର କେନ୍ଦ୍ରସ୍ଥଳରେ ବିଦ୍ୟମାନ ଦୁର୍ଗକୁ 'ମରୁଦୁର୍ଗ' (Desert Fort) ବୋଲି କୁହାଯାଉଥିଲା ।

ନଗର ଏବଂ ଜନପଦର ସୁରକ୍ଷା ପାଇଁ ପ୍ରାକୃତିକ ପ୍ରତିବନ୍ଧକ ସମୂହକୁ ଉପଯୁକ୍ତ ନିରପତ୍ତା ବଳୟ ଭାବେ ବିବେଚନା କରା ନ ଯାଇ ବିଶାଳ ପ୍ରାଚୀର ନିର୍ମାଣ ଏବଂ ଗଡ଼ଖାଇ ଖନନ ଇତ୍ୟାଦି କରାଯାଉଥିଲା । କୌଟିଲ୍ୟ ତାଙ୍କ ଅର୍ଥଶାସ୍ତ୍ରରେ ନଗରର ସୁରକ୍ଷା ଏବଂ ଦୁର୍ଗ ନିର୍ମାଣ ସମ୍ପର୍କରେ ବିଶଦ ବିବରଣୀ ପ୍ରଦାନ କରିଛନ୍ତି । କୌଟିଲ୍ୟଙ୍କ ଦୁର୍ଗନିର୍ମାଣ ସଂପର୍କୀୟ ତଥ୍ୟ ଅନୁଯାୟୀ ପ୍ରତ୍ୟେକ ନଗରର ପ୍ରାଚୀରଗୁଡ଼ିକ ସୁଉଚ୍ଚ ହେବା ନିତାନ୍ତ ଆବଶ୍ୟକ ଯେପରିକି ବାହ୍ୟ ଶତ୍ରୁଗଣ ଉକ୍ତ ପ୍ରାଚୀର ଅତିକ୍ରମ କରିବା ବିଶେଷ କଷ୍ଟସାଧ୍ୟ ହେବ । ବ୍ରହ୍ମବୈବର୍ତ୍ତ ପୁରାଣରେ ଉଲ୍ଲେଖ ଅଛି ଯେ ନଗରର ପ୍ରାଚୀରଗୁଡ଼ିକ ନିତାନ୍ତ ପକ୍ଷେ କୋଡ଼ିଏ ହାତ ଉଚ୍ଚ ହେବା ଆବଶ୍ୟକ । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ଅନୁଯାୟୀ ନଗର ପ୍ରାଚୀରର ସୁରକ୍ଷା ପାଇଁ ପ୍ରାଚୀରର ବାହ୍ୟ ପ୍ରଦେଶରେ କଣ୍ଟକପୂର୍ଣ୍ଣ ବୃକ୍ଷଲତା ରୋପଣ, ଶତ୍ରୁର ଗତିରୋଧ ପାଇଁ ମାଟିସ୍ତୂପ ନିର୍ମାଣ, ବାଲି ଓ ଜଳପୂର୍ଣ୍ଣ ଗଭୀର ଗର୍ତ୍ତ ଖନନ ଏବଂ ଦୁର୍ଗ ରାସ୍ତାକୁ ତୀକ୍ଷ୍ଣ କଣ୍ଟକାଚ୍ଛନ୍ନ କରାଯିବା ନିତାନ୍ତ ଆବଶ୍ୟକ । ଏତଦ୍‌ବ୍ୟତୀତ ନଗର ଓ ଦୁର୍ଗ ପ୍ରାଚୀର ଶୀର୍ଷଦେଶର କେନ୍ଦ୍ରସ୍ଥଳରେ ଗଦା, ଚକ୍ର, ବର୍ଚ୍ଛା, ରଣକୁଠାର ଇତ୍ୟାଦି ମାରଣାସ୍ତ୍ର ସହ ଯଥେଷ୍ଟ ପରିମାଣର ପ୍ରସ୍ତରଖଣ୍ଡ ରଖାଯିବା ଆବଶ୍ୟକ । ନଗର ଏବଂ ଦୁର୍ଗର ବାହ୍ୟ ଏବଂ ଅଭ୍ୟନ୍ତର ପ୍ରଦେଶରେ ଥିବା ପ୍ରବେଶ ପଥ ଗୁଡ଼ିକ ସୁବିଶାଳ ହେବା ଆବଶ୍ୟକ ଯେପରିକି ସଶସ୍ତ୍ର ସୈନିକମାନଙ୍କ ଯାତାୟତ ସୁଗମ ହୋଇପାରିବ । କୌଟିଲ୍ୟଙ୍କ ମତରେ ପ୍ରତି ନଗର ଦୁର୍ଗର ତିନିଗୋଟି ଗଡ଼ଖାଇ ରହିବା ଦରକାର । ଗଡ଼ଖାଇଗୁଡ଼ିକ ସର୍ବଦା ଜଳପୂର୍ଣ୍ଣ ରହିବା ସହ ଏଥିରେ ମଗର, କୁମ୍ଭୀର ଇତ୍ୟାଦି ହିଂସ୍ର ଜଳଜନ୍ତୁ ରଖାଯିବା ଆବଶ୍ୟକ । ଏତଦ୍‌ବ୍ୟତୀତ ଗଡ଼ଖାଇଗୁଡ଼ିକ ନିକଟବର୍ତ୍ତୀ ନଦୀ ସହ ସଂଯୁକ୍ତ ହେବା ବିଧେୟ । ଦୁର୍ଗ ପ୍ରାଚୀର ଚତୁଃପାର୍ଶ୍ୱ କଣ୍ଟକପୂର୍ଣ୍ଣ ଲତା ଦ୍ୱାରା ଆଚ୍ଛାଦିତ ହେଲେ ଦୁର୍ଗ ଅଭେଦ୍ୟ ହୋଇଥାଏ । ଦୁର୍ଗର ମଧ୍ୟଭାଗରେ ରାଜପ୍ରାସାଦ ନିର୍ମିତ ହେଉଥିଲା ଏବଂ ରାଜପ୍ରାସାଦର ଉତ୍ତର ଦିଗରେ ମୁଖ୍ୟତଃ ଧର୍ମଯାଜକ (Priest), ଶିକ୍ଷକ ଏବଂ ମନ୍ତ୍ରୀମାନଙ୍କ ବାସଭବନ ନିର୍ମାଣ କରାଯାଉଥିଲା । ରାଜପ୍ରାସାଦର ଦକ୍ଷିଣ ଦିଗରେ ହସ୍ତୀଶାଳ, ଭଣ୍ଡାର ଘର ଓ ରାଜକୀୟ ରନ୍ଧନଶାଳା ରହୁଥିଲା ଏବଂ ପୂର୍ବ ଦିଗରେ ମୁଖ୍ୟତଃ ବ୍ୟବସାୟୀ ଏବଂ ସୈନିକଗଣ ବାସ କରୁଥିଲେ । ନଗର ଅଭ୍ୟନ୍ତରରେ ଚିକିତ୍ସାଳୟ, ସଙ୍ଗୀତାଳୟ, ଗୋଚର ଜମି ଏବଂ ଶ୍ମଶାନ ଇତ୍ୟାଦି ରହୁଥିଲା । ଏତଦ୍‌ବ୍ୟତୀତ ଦୁର୍ଗରେ ଦୈନିକ ଆବଶ୍ୟକ ହେଉଥିବା ଖାଦ୍ୟପଦାର୍ଥ ଏବଂ ପ୍ରଚୁର ପରିମାଣର ଜଳ ଗଚ୍ଛିତ ହୋଇ ରହୁଥିଲା ।

ପ୍ରାଚୀନ ଭାରତର ବୈଦିକ ଯୁଗରୁ କୌଟିଲ୍ୟଙ୍କ ସମୟ ପର୍ଯ୍ୟନ୍ତ ଏବଂ ତତ୍ ପରବର୍ତ୍ତୀ ଏକ ସହସ୍ର ବର୍ଷ ପରେ ମଧ୍ୟ ଦୁର୍ଗ ନିର୍ମାଣ ଶୈଳୀର ବିଶେଷ କିଛି ପରିବର୍ତ୍ତନ ଘଟି ନଥିଲା ଯଦିଓ ସମୟକ୍ରମେ ଦୁର୍ଗ ପ୍ରାଚୀରର ଉଚ୍ଚତା ଓ ଆକାର ଏବଂ ଗଡ଼ଖାଇର ଗଭୀରତା କ୍ରମଶଃ ବୃଦ୍ଧିପ୍ରାପ୍ତ ହୋଇଥିଲା ।

ଭାରତୀୟ ଶାସକମାନେ ଅନ୍ୟପ୍ରକାର ଦୁର୍ଗ ଅପେକ୍ଷା ଗିରିଦୁର୍ଗ ନିର୍ମାଣ କରିବାରେ ଅଧିକ ଆଗ୍ରହ ପ୍ରକାଶ କରୁଥିଲେ । ଦୁର୍ଗ ନିର୍ମାଣ ପାଇଁ ମୁଖ୍ୟତଃ ଏଭଳି ପର୍ବତ ବଛାଯାଉଥିଲା ଯାହା ବିଶେଷ ଟାଖ ହୋଇଥିବ ଏବଂ ଉକ୍ତ ପର୍ବତର ଏକ କିମ୍ବା ଏକାଧିକ ପାର୍ଶ୍ୱ କୌଣସି ନଦୀ ସନ୍ନିକଟ ହୋଇଥିବ । ଏତଦ୍‌ବ୍ୟତୀତ ପର୍ବତର ଅନ୍ୟ ପାର୍ଶ୍ୱଗୁଡ଼ିକ ଅଭେଦ୍ୟ ଏବଂ ଶତ୍ରୁ ପ୍ରବେଶ ପାଇଁ କଷ୍ଟସାଧ୍ୟ ହୋଇଥିବ । ପର୍ବତର ଶିଖର ଦେଶରେ ମୁଖ୍ୟତଃ ଗିରିଦୁର୍ଗ ନିର୍ମିତ ହେଉଥିଲା ।

ଅଷ୍ଟାଦଶ ଶତାବ୍ଦୀରେ ଟିଗିରିଆର ରାଜା ଗୋପୀନାଥ ତୁଙ୍ଗଙ୍କ ରଚିତ ବୀରସର୍ବସ୍ୱ ଗ୍ରନ୍ଥରେ ଦୁର୍ଗ ନିର୍ମାଣ ପ୍ରଣାଳୀ ସଂପର୍କୀୟ ବହୁ ତଥ୍ୟ ସନ୍ନିବେଶିତ ହୋଇଛି । ଉକ୍ତ ଗ୍ରନ୍ଥରେ ଦୁର୍ଗ ନିର୍ମାଣ ପାଇଁ ଉଦ୍ଦିଷ୍ଟ ସ୍ଥାନକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇଛି । ଯଥା– ୧. ଅନୁପ (Marshy and watery lands), ୨. ଜଙ୍ଗଲ ଓ ପାର୍ବତ୍ୟ ଅଞ୍ଚଳ, ୩. ସାଧାରଣ ଭୂମି । ଏତଦ୍‌ବ୍ୟତୀତ ଦୁର୍ଗର ବିଭିନ୍ନ ଆକାର (size) ସମ୍ବନ୍ଧରେ ମଧ୍ୟ ସୂଚନା ପ୍ରଦାନ କରାଯାଇଛି । ସେଗୁଡ଼ିକ ହେଲା ୧. ବର୍ତ୍ତୁଳାକାର (Round), ୨. ଚତୁଃକୋଣ ବିଶିଷ୍ଟ (Rectangular), ୩.ତ୍ରିକୋଣ ବିଶିଷ୍ଟ (Triangular), ୪. ଅର୍ଦ୍ଧ ବର୍ତ୍ତୁଳାକାର (Semi-Circular) । ଲେଖକ ଗୋପୀନାଥ ତୁଙ୍ଗ ଦୁର୍ଗର କାନ୍ଥ ଶକ୍ତ କରାଯିବା ଏବଂ ଦୁର୍ଗର ପ୍ରବେଶଦ୍ୱାରକୁ ଶକ୍ତିଶାଳୀ କବାଟ ଦ୍ୱାରା ସୁରକ୍ଷିତ କରାଯିବା ସମ୍ବନ୍ଧରେ ବୀରସର୍ବସ୍ୱ ପୁସ୍ତକରେ ଉଲ୍ଲେଖ କରିଛନ୍ତି । ଗ୍ରହ ଅବସ୍ଥିତିକୁ ବିଚାରକୁ ନେଇ ଏକ ବିଶେଷ ମୁହୂର୍ତ୍ତରେ ଦୁର୍ଗ ନିର୍ମାଣ କାର୍ଯ୍ୟ ଆରମ୍ଭ କରାଯାଉଥିଲା ଏବଂ ନବନିର୍ମିତ ଦୁର୍ଗକୁ ରାଜ୍ୟର ରାଜା ପ୍ରଥମେ ପ୍ରବେଶ କରୁଥିବା ସମୟରେ ଦେବଦେବୀମାନଙ୍କୁ ପୂଜାନୈବେଦ୍ୟ ଅର୍ପଣ କରାଯାଉଥିଲା । ଲେଖକ କାମନ୍ଦକ ଉଲ୍ଲେଖ କରିଛନ୍ତି ଯେ ପ୍ରାଚୀନ କାଳରେ ଔଦକ, ପାର୍ବତ୍ୟ, ବାରିଜ, ବୈଷ୍ଣବ ଏବଂ ଧାନକ୍ୟ ନାମରେ ପାଞ୍ଚ ପ୍ରକାର ଦୁର୍ଗ ଥିଲା ।

ଏତଦ୍‌ବ୍ୟତୀତ ଅନ୍ୟ କେତେକ ଦୁର୍ଗକୁ କୋଟ ଆଖ୍ୟା ଦିଆଯାଇଥିଲା ଯାହାକି ଆଠ ଭାଗରେ ବିଭକ୍ତ ଥିଲା । ସେଗୁଡ଼ିକ ହେଲା ୧. ମୃମୟକୋଟ, ୨. ଜଳକୋଟ, ୩. ଗ୍ରାମକୋଟ, ୪. ଗିରି ଗହ୍ୱରକୋଟ, ୫. ଡମର କୋଟ, ୬. ବକ୍ରଭୂମିକୋଟ, ୭. ଗିରିକୋଟ, ୮. ବିଷମ କୋଟ । ଉପରୋକ୍ତ ଦୁର୍ଗଗୁଡ଼ିକ କ୍ଷୁଦ୍ର ଗିରି ଦୁର୍ଗ ଥିବା ଜଣାଯାଏ । ଓଡ଼ିଶାର ବିଷମ କଟକ ନାମରୁ ଉକ୍ତ ସ୍ଥାନରେ ଏକ କ୍ଷୁଦ୍ର ଦୁର୍ଗ ଥିବାର ଅନୁମାନ କରାଯାଏ ।

ଲେଖକ କାମନ୍ଦକଙ୍କ ମତ ଅନୁଯାୟୀ ଦୁର୍ଗ ନିର୍ମାଣ ଉଦ୍ଦିଷ୍ଟ ସ୍ଥାନକୁ ଚତୁଃକୋଣ ଆକାରରେ (Rectangular) ମାପ କରାଯିବା ଆବଶ୍ୟକ । ଦୁର୍ଗର ଚତୁଃପାର୍ଶ୍ୱରେ ଗଭୀର ଗଡ଼ଖାଇ ଖନନ କରାଯିବା ସହ ଉଚ୍ଚ ପ୍ରାଚୀର ନିର୍ମିତ ହେବା ଜରୁରୀ ଅଟେ । ଦୁର୍ଗର ପ୍ରତି କୋଣରେ ଉଚ୍ଚ ନିରୀକ୍ଷଣ ଗମ୍ବୁଜ (High watch tower) ଏପରି ହେବା ଆବଶ୍ୟକ ଯେମିତିକି ଉକ୍ତ ଗମ୍ବୁଜର ଶୀର୍ଷଦେଶରୁ ଦୂରରେ ଥିବା ଶତ୍ରୁମାନଙ୍କ ଗତିବିଧି ଲକ୍ଷ୍ୟ କରାଯାଇପାରିବ । ଦୁର୍ଗର ପ୍ରବେଶ ଦ୍ୱାର ଲୌହ ଚାଦର ଆଚ୍ଛାଦିତ ଶକ୍ତିଶାଳୀ କବାଟ ଦ୍ୱାରା ସୁରକ୍ଷିତ ରହିବା ନିତାନ୍ତ ଆବଶ୍ୟକ । ଦୁର୍ଗ ମଧ୍ୟରେ କୂପ, ପୁଷ୍କରିଣୀ ଏବଂ ପ୍ରମୋଦ ଉଦ୍ୟାନ ରହିବା ଜରୁରୀ ଅଟେ । ଦୁର୍ଗ ଅଭ୍ୟନ୍ତରର ପୂର୍ବ ଦିଗରେ ସେନାପତିଙ୍କ ବାସଗୃହ, ଦକ୍ଷିଣ-ପୂର୍ବ କୋଣରେ ଅଗ୍ନିଦେବତାଙ୍କ ଉଦ୍ଦେଶ୍ୟରେ ନିର୍ମିତ ମନ୍ଦିର, ଉତ୍ତର-ପୂର୍ବ ଦିଗରେ ମନ୍ତ୍ରୀଙ୍କ ବାସଗୃହ, ଦକ୍ଷିଣ ଦିଗରେ ରାଜାଙ୍କ ଆତ୍ମୀୟସ୍ୱଜନମାନଙ୍କ ବାସଗୃହ, ପଶ୍ଚିମ ଦିଗରେ ସୈନିକମାନଙ୍କ ବାସଗୃହ ଏବଂ ଉତ୍ତର-ପଶ୍ଚିମ ଦିଗରେ ଅତିଥି ଭବନ ରହିବା ଆବଶ୍ୟକ । ଦୁର୍ଗର ଚାରି କୋଣରେ ଚାରିଟି ଦେଉଳ ଯଥା- ହନୁମାନ, କାଳିକା, ବେତାଳ ଏବଂ ଭୈରବଙ୍କ ଉଦ୍ଦେଶ୍ୟରେ ସମର୍ପିତ ହେବା ବିଧେୟ । ଉତ୍ତର ପୂର୍ବ ଓ ଉତ୍ତର-ପଶ୍ଚିମ ଦିଗରେ ଶସ୍ୟଗୋଲା, ଅସ୍ତ୍ରାଗାର ଏବଂ ରାଜକୋଷ ରହିବା ଦରକାର । ଏତଦ୍‌ବ୍ୟତୀତ ରାଜାଙ୍କ ରାଜପ୍ରାସାଦ ଦୁର୍ଗର ଅଭ୍ୟନ୍ତର ପ୍ରଦେଶରେ ନିର୍ମିତ ହେବା ଉଚିତ ।

ବ୍ରହ୍ମଯାମଳା ଗ୍ରନ୍ଥରେ ଦୁର୍ଗକୁ ମୁଖ୍ୟତଃ ୧. ଜଳଜ ବା ଯେଉଁ ଦୁର୍ଗର ଚତୁଃପାର୍ଶ୍ୱ ଜଳଦ୍ୱାରା ପୂର୍ଣ୍ଣ, ୨. ଆଦ୍ରିଜ ବା ଚାରି ପାର୍ଶ୍ୱରେ ପର୍ବତ ବେଷ୍ଟିତ ହୋଇ ରହିଥିବା ଦୁର୍ଗ, ୩. ସ୍ଥଳଜ ବା ସାଧାରଣ ଭୂମି ଉପରେ ନିର୍ମିତ ଦୁର୍ଗ ଭାବରେ ବିଭକ୍ତ କରାଯାଇଛି । ବ୍ରହ୍ମଯାମଳା ପୁସ୍ତକ ପ୍ରଣେତାଙ୍କ ମତରେ ଆଦ୍ରିଜ ଦୁର୍ଗ ହିଁ ସର୍ବଶ୍ରେଷ୍ଠ ଅଟେ ।

ପ୍ରାଚୀନ ଓ ମଧ୍ୟଯୁଗରେ ମୁଖ୍ୟତଃ ଆକ୍ରମଣ ପରିବର୍ତ୍ତେ ଆତ୍ମରକ୍ଷା ଉଦ୍ଦେଶ୍ୟରେ ସାମରିକ ଘାଟି (Military strong holds) ସ୍ଥାପନ କରାଯାଉଥିଲା । ଦୁର୍ଗର ଦରଜାକୁ ଯୁଦ୍ଧହସ୍ତୀ ସାହାଯ୍ୟରେ ଭଙ୍ଗା ଯାଉଥିବାରୁ ରାଜପୁତ, ମରହଟ୍ଟା ଏବଂ ମୋଗଲ ମାନଙ୍କ ଦ୍ୱାରା ନିର୍ମିତ ଦୁର୍ଗଗୁଡ଼ିକ ତୀକ୍ଷଣ ଲୌହ କୀଳକ ଆଚ୍ଛାଦିତ ଧାତୁ ନିର୍ମିତ କବାଟ ଦ୍ୱାରା ସୁରକ୍ଷିତ ଥିଲା । ଦୁର୍ଗ ଧ୍ୱଂସ ପାଇଁ ଅଗ୍ନି ପ୍ରୟୋଗ କରାଯାଉଥିଲା । ଏ ସଂପର୍କରେ କୌଟିଲ୍ୟଙ୍କ ସୂଚନା ବିଶେଷ ପ୍ରଣିଧାନଯୋଗ୍ୟ । ଦୁର୍ଗ ପ୍ରାଚୀରରେ ବାସ କରୁଥିବା ବିଭିନ୍ନ ପକ୍ଷୀ ଯଥା – କାଉ, ପାରା, ଶାଗୁଣା, ଶୁଆ ଏବଂ ମଇନାକୁ ଧରାଯାଇ ସେମାନଙ୍କ ଲାଞ୍ଜରେ ଦହନଯୋଗ୍ୟ ପଦାର୍ଥ ସଂଯୋଗ କରି ଉଡ଼ାଇ ଦିଆଯାଉଥିଲା । ଏତଦ୍‌ବ୍ୟତୀତ ନେଉଳ, ମାଙ୍କଡ଼, ବିରାଡ଼ି ଏବଂ କୁକୁର ଇତ୍ୟାଦି ପଶୁଙ୍କ ଲାଞ୍ଜରେ ଦହନଯୋଗ୍ୟ ପଦାର୍ଥ ଲଗାଇ ଗୁପ୍ତଚରମାନେ ଦୁର୍ଗରେ ଅଗ୍ନି ସଂଯୋଗ କରିବାରେ ସଫଳ ହେଉଥିଲେ ।

ଦୁର୍ଗଜୟ କରିବା ପାଇଁ ସାଧାରଣତଃ ଦୁର୍ଗ ଅବରୋଧ କରିବା ଅନ୍ୟତମ ସହଜ ଉପାୟ ଥିଲା । ଦୁର୍ଗ ଅବରୋଧ କରିବା ଫଳରେ ଦୁର୍ଗ ଅଭ୍ୟନ୍ତରରେ ବାସ କରୁଥିବା ଅନ୍ତେବାସୀଗଣ ଖାଦ୍ୟ ଅଭାବରେ ଉପବାସ ରହି ଆତ୍ମସମର୍ପଣ କରିବା ପାଇଁ ବାଧ୍ୟ ହେଉଥିଲେ । ଅନ୍ୟ ଉପାୟରେ ମଧ୍ୟ ଦୁର୍ଗ ଅବରୋଧ କରାଯାଉଥିଲା । କାଷ୍ଠ ନିର୍ମିତ ଦୁଇ ବା ତତୋଽଧିକ ମହଲା ଗମ୍ବୁଜରେ (Tower) ଥାଇ ଶତ୍ରୁପକ୍ଷ ସୈନ୍ୟମାନେ ଦୁର୍ଗ ଆକ୍ରମଣ ଏବଂ ଅବରୋଧ କରୁଥିଲେ । ଦୁର୍ଗ ନିକଟରେ ଗଭୀର ଗର୍ତ୍ତ ଖନନ କରି ଭୂମିତଳ ଟନେଲ ସାହାଯ୍ୟରେ ଶତ୍ରୁମାନେ ଦୁର୍ଗମଧ୍ୟକୁ ପ୍ରବେଶ କରୁଥିଲେ । ଶତ୍ରୁମାନଙ୍କର ଏଭଳି ପ୍ରଚେଷ୍ଟାକୁ ବିଫଳ କରିଦେବା ପାଇଁ ବିଷାକ୍ତ ଗ୍ୟାସ ଏବଂ ପାଣିର ସାହାଯ୍ୟ ନିଆଯାଉଥିଲା । ଦୁର୍ଗ ଅବରୋଧକାରୀ ଶତ୍ରୁମାନଙ୍କ ଆକ୍ରମଣକୁ ପ୍ରତିହତ କରିବା ପାଇଁ ଦୁର୍ଗରେ ପୂର୍ବରୁ ଗଚ୍ଛିତ ବଡ଼ ବଡ଼ ପ୍ରସ୍ତର ଖଣ୍ଡକୁ ନିମ୍ନକୁ ନିକ୍ଷେପ କରି ଶତ୍ରୁମାନଙ୍କୁ ହତ୍ୟା କରାଯାଉଥିଲା ।



ଆଡଭୋକେଟ୍ ଏବଂ ନୋଟାରୀ ପବ୍ଲିକ୍
ଭୁବନେଶ୍ୱର କୋର୍ଟ, ଭୁବନେଶ୍ୱର-୧୪

# ଅକ୍ଷୟ ସାହିତ୍ୟ କୀର୍ତ୍ତି ଓ ସାଧକ କୃଷ୍ଣପ୍ରସାଦ ବସୁ

ଅଧ୍ୟାପକ ଦାମୋଦର ବେହେରା

ଅକ୍ଷୟ ସାହିତ୍ୟ କୀର୍ତ୍ତି ଓ ଭାସ୍ୱର ଜୀବନର ପ୍ରତିଛବି କାଳ ଖଣ୍ଡର ପରିବେଶ, ପରିବେଷ୍ଟନୀ ତଥା ନିୟତିର ସୀମାକୁ ଅତିକ୍ରମ କରି ଏକ ଦିବ୍ୟ ଚେତନାର ସ୍ତରକୁ ମାନବକୁ ନିମନ୍ତ୍ରଣ କରେ । ବାଗ୍‌ଦେବୀଙ୍କର ବରପୁତ୍ର ସାର୍ଥକ ଜୀବନର ପ୍ରୟାସୀ ଜୀବନ୍ତ ଗାନ୍ଧର୍ବ, ଆଲୋକ ସାମାନ୍ୟ ବ୍ୟକ୍ତି ସତ୍ତା ଓଡ଼ିଆ କଳା ସାହିତ୍ୟ ସଂସ୍କୃତିର ଉଜ୍ଜ୍ୱଳ ଜ୍ୟୋତିଷ୍କ କବିମଂଜୁଳ କୃଷ୍ଣ ପ୍ରସାଦ ବସୁ ଥିଲେ ଜଣେ ଭାସ୍ୱର ପ୍ରତିଭା ଯାହାଙ୍କ ଅବର୍ତ୍ତମାନହିଁ ଏ ମାଟିପାଇଁ ଅନେକ କିଛି ହରାଇ ଦେବାର ସ୍ପନ୍ଦନ ସୃଷ୍ଟି କରିଛି । ଜଣାଯାଏ (୨୧.୧୦.୧୯୯୪ରୁ ୧୮.୦୮.୧୯୬୮) ସମୟ ସୀମାର ନିର୍ଣ୍ଣୟରେ ବସୁ କୃଷ୍ଣପ୍ରସାଦ ଏ ମାଟିପାଇଁ ଆଣିଥିଲେ ଏକ ସ୍ୱତନ୍ତ୍ର ପରିଚୟ । ତୀର୍ଥରାଜ, ଐତିହାସିକ, ଶାକ୍ତ, ଶୈବ, ବୌଦ୍ଧ କ୍ଷେତ୍ର ଯାଜପୁରର କୁଆଁସରପୁରଠାରେ ଥିବା ଗୋଟିଏ ପରିଚ୍ଛନ୍ନ ପ୍ରଭାବ ବିସ୍ତାରୀ ଧନୀ ଜମିଦାର ପରିବାରରେ ତାଙ୍କର ଜନ୍ମ ଘଟିଥିଲା । ମୌଳିକ ଭାବରେ ବସୁଙ୍କ ପୂର୍ବ ପୁରୁଷମାନେ ପଶ୍ଚିମବଙ୍ଗର ବର୍ଦ୍ଧମାନ ଅଂଚଳରେ ବସବାସ କରୁଥିବାର ଜଣାଯାଏ । ସ୍ୱର୍ଗତ ଗୋବିନ୍ଦ ପ୍ରସାଦ ଓ ବିଷ୍ଣୁପ୍ରିୟା ଥିଲେ ଏହି ମହାନ୍ ପ୍ରତିଭାଙ୍କର ଜନ୍ମଦାତ୍ରୀ । ପରେ ପରେ କୃଷ୍ଣପ୍ରସାଦଙ୍କ ଉତ୍କର୍ଷ ଜୀବନଧାରା ପ୍ରତିଭାର ଦିଗନ୍ତ ବିସ୍ତାରୀ ଅକ୍ଷୟ କୀର୍ତ୍ତି ଜନ ମାନସକୁ ଆନ୍ଦୋଳିତ କଲାବେଳକୁ ଯେଉଁ କାଳଖଣ୍ଡର ସ୍ଥିତିକୁ ଧରିରଖିବାକୁ ହୁଏ ମନେହୁଏ ତାହାହିଁ ଥିଲା କବିମଂଜୁଳଙ୍କ ଉତ୍ତୀର୍ଣ୍ଣ ଜୀବନଧାରାର ଭିତ୍ତିଭୂମି । ଏହାକୁ ଅନାୟାସରେ କୁହାଯାଇପାରେ ଗୋଟିଏ ମହାନ୍ ଅମୃତମୟ ଆତ୍ମାକୁ ତୋଳିଧରିବାର ସମର୍ପିତ ପ୍ରସ୍ତୁତି କରଣ । ସେହି ସମସ୍ତ ପରିବେଶର ପୂର୍ଣ୍ଣ ଅଗ୍ରଗତିହିଁ ବସୁଙ୍କ ପରିବାରର ଥିଲା ତପସ୍ୟା । କାରଣ ମଣିଷ ଭିତରେ ସେ ଜାଣୁ ବା ନ ଜାଣୁ ତା ନିଜର ଚୈତ୍ୟ ସତ୍ତା ତାକୁ ଆଗକୁ ଠେଲି ଠେଲି ନେଇଯାଏ । ଚରୈବେତି, ଚରୈବେତି– ଆଗେଇଚାଲ ଆଗେଇଚାଲ – ଅଗ୍ନିମୀଡ଼େ ପୁରୋହିତେ । ଏହି ଅଭୀପ୍ସାହିଁ ଗତି । ତାହାକୁ ଜାଗ୍ରତ ଭାବନାରେ ରଖି ମୃତ୍ୟୁଲୋକରୁ ଅମୃତଲୋକ ଆଡ଼କୁ ଆଗେଇଚାଲ ।

ଏହି ସୂତ୍ରରେ ଓଡ଼ିଆ ସାହିତ୍ୟ ତଥା ସଂଗୀତ ଯୁଗର ସ୍ୱତନ୍ତ୍ର ଏକ ବାର୍ତ୍ତାବହ ଥିଲେ କୃଷ୍ଣପ୍ରସାଦ । ସେ ଥିଲେ ଜଣେ ଅସାଧାରଣ ଧୀଶକ୍ତି ସମ୍ପନ୍ନ କବି, ନାଟ୍ୟକାର, ସଂଗୀତଜ୍ଞ, ଅଭିନେତା, ଗୀତିକାର, ସୁରକାର ଓ ସେବକପ୍ରାଣ । ଅନେକାନେକ କାର୍ଯ୍ୟଧାରାର ସେ ମଧ୍ୟ ଥିଲେ ସୂତ୍ରଧର । ସେତେବେଳେ ଓଡ଼ିଶାର ଯାତ୍ରା ଓ ପାଲା ସଂସ୍କୃତି ଯେଉଁ ଔଜ୍ଜ୍ୱଲ୍ୟ ପ୍ରଭାରେ ବିମଣ୍ଡିତ ହେବାର ସୁଯୋଗ ପାଇଥିଲା ସର୍ବାନ୍ତକରଣରେ ବିଚାର କରି କୁହାଗଲା ଯେ ବାସ୍ତବରେ କବିମଂଜୁଳ ହେଉଛନ୍ତି ଏହି ସ୍ୱତନ୍ତ୍ର ସାଂସ୍କୃତିକ ନବ ଯୁଗର ଭଗୀରଥ । ତାଙ୍କର ଅସାଧାରଣ ଜ୍ଞାନର ପରିବ୍ୟାପ୍ତିକୁ କୌଣସି ସୀମା ସରହଦରେ ବାନ୍ଧିହୁଏ ନାହିଁ । ସେ ଥିଲେ ବିଜ୍ଞାନର ମେଧାବୀ ଛାତ୍ର ଓ ବିପ୍ଳବୀ, ଇଂରାଜୀ ସଂସ୍କୃତ ଓଡ଼ିଆ ବଂଗଳା ହିନ୍ଦୀ ଭାଷାରେ ସୁପଣ୍ଡିତ । ସେତେବେଳକାର ଅଗମ୍ୟ ଆଦିବାସୀଙ୍କ ଭାଷା, ଉର୍ଦ୍ଦୁ, ତେଲୁଗୁ ଜାଣି ଜାଣି ସେ ସେଥିରେ ପାରଂଗମ ହୋଇଯାଇଥିଲେ । ବିଶେଷକରି ସାହିତ୍ୟ ଓ ସଂଗୀତ କ୍ଷେତ୍ରରେ ତାଙ୍କର ଗବେଷଣା ନିରବଚ୍ଛିନ୍ନ ଭାବରେ ଅଗ୍ରଗତି କରିଥିଲା ।

ଆଜି ଅଗଣିତ ଉତ୍ତର ସାଧକ ଆଗ୍ରହୀ ସାରସ୍ୱତ ଅନ୍ୱେଷୀଙ୍କ ପାଇଁ ଗୋଟିଏ ସୁମହାନ ଐତିହ୍ୟ ତଥା ଆଦର୍ଶର ନୂତନ ଆଲୋକିତ ସରଣୀଟିଏ କୁ କବି ମଂଜୁଳହିଁ ଯଥାଯଥ ଭାବରେ ଛାଡ଼ି ଯାଇଛନ୍ତି । ବସୁ ମହାଶୟ କିପରି ସେ ସମୟର ସକଳ ସାମାଜିକ ସଂକଟକୁ ସମ୍ମୁଖୀନ ହୋଇ ବିଦେଶୀ ସରକାରଙ୍କ କୁପିତ ଦୃଷ୍ଟିରେ ପଡ଼ିଥିଲେ, ତାଙ୍କ ଭିତରେ କିପରି ବିପ୍ଳବର ଦୁନ୍ଦୁଭି ବାଜି ଉଠିଥିଲା, ବିଜ୍ଞାନର କୃତି ଛାତ୍ର ହୋଇ ସେ କିପରି ଯଶସ୍ୱୀ ସାହିତ୍ୟରଥୀ, ଶିଳ୍ପୀ କଳାକାର ହୋଇଥିଲେ

ତାହା ଗବେଷଣା ସାପେକ୍ଷ ତଥା ଅସୀମ ଅନ୍ୱେଷୀ ଅନୁସଂଧାନର ବାର୍ତ୍ତା– ଦୀର୍ଘ କାହାଣୀ ଅଟେ ।

ଏହା ସତ୍ୟ ଯେ ଜୀବନ ଏକ ଯଜ୍ଞ, ଏକ ସାଧନା, ଏକ ତପସ୍ୟା, ଏକ ଆରୋହଣ, ଏକ ଅଂଗୀକାର । ଏହାର ଯଥାର୍ଥ ମୂଲ୍ୟାଙ୍କନ କରିବା ତଥା ଏ କ୍ଷେତ୍ରରେ ଏକ ସମର୍ପିତ ଦୃଷ୍ଟିଭଂଗୀ ପ୍ରୟୋଗ କରିବା ବ୍ୟକ୍ତି ପାଇଁ ହେବ ସଫଳତାର ପ୍ରସଂଗ । ଏହି ରହସ୍ୟକୁ ଉଦ୍‌ଘାଟନ କରିବାହିଁ ବ୍ୟକ୍ତି ଜୀବନର ସବୁଠାରୁ ବଡ଼ ଆହ୍ୱାନ । ଏହି ଦୃଷ୍ଟିକୋଣରୁ କିଛି ନୂତନ ସୃଷ୍ଟି କରିବାରେ ଯେଉଁ ଦୃଷ୍ଟିଭଂଗୀର ଆବଶ୍ୟକ ହେଉଥିଲା, ନିଜ ଭିତରେ ସୃଷ୍ଟି ଆବେଗର ଯେଉଁ ଉନ୍ମୁଖତା ଥିଲା ସଂଗୀତ, ଯାତ୍ରା, ପାଲା, ନାଟକ, ସକଳ କ୍ଷେତ୍ରରେ ଏକ ପରିଚ୍ଛନ୍ନ ପରୀକ୍ଷା ନିରୀକ୍ଷା କରି କବିମଂଜୁଳ ତାଙ୍କ ସମସାମୟିକ ପ୍ରତିଭାବାନଙ୍କଠାରୁ ବରାବର ଆଗେଇ ଯାଇଥିଲେ । ତାଙ୍କ ଭିତରେ ଅପୂର୍ବ ଚୈତନ୍ୟ ପ୍ରକଟ ହୋଇଥିଲା ଏବଂ ଅଭୂତପୂର୍ବ ଜାଗରଣର ମୁହୁର୍ମୁହୁଃ ସ୍ପନ୍ଦନରେ ଜାଗିଉଠିଥିଲେ ସେ ।

କବିମଂଜୁଳଙ୍କ ଜୀବନଚକ୍ର ଅମ୍ଳାନ ଆଶୀର୍ବାଦର ଥିଲା ରସଧାରା । ଏକାଦିକ୍ରମେ ମା ଲକ୍ଷ୍ମୀ ଆଉ ବାଗ୍‌ଦେବୀଙ୍କର ଶୁଭ ଦୃଷ୍ଟିରେ ଶ୍ରେୟ ପୋଷିତ ହୋଇ ଧନ ମନ ଯଶ ଖ୍ୟାତି ଚତୁର୍ବର୍ଗ ଫଳଦାୟୀ ହେବାର ସୁଯୋଗ ପାଇଥିଲେ । ସେ ଓସ୍ତାଦ୍ କା ଓସ୍ତାଦ୍ ବନି ସତ୍ୟ ଶିବ ସୁନ୍ଦରର ଉପାସକ ଭାବରେ ଅମୃତମୟ ଜୀବନଧାରାର ଆରାଧକ ହୋଇଉଠିଥିଲେ । ଜଣାଯାଏ କୃଷ୍ଣପ୍ରସାଦ ରଚନା କରିଥିଲେ ପ୍ରାୟ ତିରିଶଟି ଛନ୍ଦକାବ୍ୟ (ଯାହା ପାଲାର ସ୍ୱୀକୃତି ଲାଭ କରିଛି) କୋଡ଼ିଏ ଗୋଟି ନାଟକ, ଏକହଜାରରୁ ଅଧିକ ଗୀତ, ଅନେକ ଗଳ୍ପ, କବିତା, ପ୍ରବନ୍ଧ ରଚନାରେ ମଧ୍ୟ ତାଙ୍କର ଆଗ୍ରହ ବିଶେଷ ଭାବରେ ଜନାଦୃତ ହୋଇଛି । ଯେହେତୁ ପ୍ରତିଭାର ଦିଗ ପରିବ୍ୟାପ୍ତ ତାହା ସୃଷ୍ଟିକ୍ରିୟାର ହିସାବ ନିକାଶ ପାଇଁ କୌଣସି ଭାବନା ରଖେ ନାହିଁ । ଏହି ପରିପ୍ରେକ୍ଷୀରେ କବିମଂଜୁଳଙ୍କୁ ଆଉ ଏକ ସ୍ୱତନ୍ତ୍ର ପରିଚୟ ଆଣିଦେଲା ତାଙ୍କର ଧାରାବାହିକ ରମ୍ୟରଚନାବଳୀ । ଲୋକଜୀବନ ଲୋକ ଚରିତ୍ରର ବହୁବିଧ ଦିଗକୁ ସେ ମର୍ମେ ମର୍ମେ ଅନୁଭବ କରି ତାହାର ସଂସ୍କାର ଦ୍ୟୋତନାକୁ ସାବ୍ୟସ୍ତ କରିବାପାଇଁ ଧାରାବାହିକ ଭାବରେ ସୃଷ୍ଟି କରିଚାଲିଥିଲେ ଆଖଡ଼ାଘରେ ବୈଠକ । ବାସ୍ତବରେ ସେ ସମୟରେ କବିମଂଜୁଳଙ୍କର ଲେଖନୀ ନିସୃତ ଏହି ରମ୍ୟ ସାହିତ୍ୟ ଏତେ ବାସ୍ତବ ସତ୍ୟର ନିକଟବର୍ତ୍ତୀ ଥିଲା ଯେ ଆଖଡ଼ାଘରେ ବୈଠକରେ ସମାଜର ପ୍ରତିଟି ବ୍ୟକ୍ତିର ମୁହଁ ସ୍ୱଚ୍ଛ ଦିଶି ଯାଉଥିଲା । ସେ ସମୟରେ ସାହିତ୍ୟ ପତ୍ରିକା ଭାବରେ ଝଂକାର ଥିଲା ଚର୍ଚ୍ଚିତ ଅଗ୍ରସାରଥୀ । ସେହି ଝଂକାର ପୃଷ୍ଠାରେ କବିମଂଜୁଳଙ୍କର ଆଖଡ଼ାଘରେ ବୈଠକ ରଚନା ସମୂହ ଦୀର୍ଘ ୧୭–୧୮ ବର୍ଷ ଧରି ପ୍ରକାଶ ପାଇଥିଲା । ସେ ନିରୁତା ଅନୁଭବର ସାହିତ୍ୟ ଆଜି ଦୁର୍ଲଭ ତଥା ଆମ ଭାଷା ସାହିତ୍ୟ ପାଇଁ ଜାତୀୟ ସଂପତ୍ତି ରୂପେ ପରିଗଣିତ ହେଉଛି ।

ଏଠାରେ ପ୍ରକାଶ ଥାଉକି ଏହି ଆଲୋଚନାରେ ପ୍ରଥମେ ସୂଚନା ଦିଆଯାଇଛି ଯେ କବିମଂଜୁଳ ଥିଲେ ଅଜସ୍ରସ୍ରାବୀ କରିତ୍‌କର୍ମା ମସୀସଂଗ୍ରାମୀ । ତାଙ୍କପାଇଁ ସୃଷ୍ଟି ଉନ୍ମୁଖତା ଏକ ଅପୂର୍ବ ଆବେଗ ଥିଲା । ତାଙ୍କର ବ୍ୟାପ୍ତ ଚିନ୍ତନକୁ କବି କେବେବି ସଂକ୍ଷିପ୍ତ ବା ସୀମିତ କରିପାରିନଥିଲେ । କବିମଂଜୁଳ ତତ୍‌କାଳୀନ ଜନ ଜୀବନର ଅତି ବାସ୍ତବ ଦିଗ ତଥା ସମସ୍ୟା ସଂକୁଳ ମାର୍ମିକ ପଟ୍ଟଚିତ୍ରଟିକୁ ବାରଂବାର ଅନୁଭବ କରିବାର ସୁଯୋଗ ପାଇଥିଲେ । ଯେହେତୁ ହସ କାନ୍ଦ ଲୁହ ଆନନ୍ଦ, ବେପଥୁ ସକଳ ଜୀବନପାଇଁ ସତ୍ୟ, ତାହାକୁ ସ୍ୱୀକାର କରିବାକୁ ହେବ । ଭାରାକ୍ରାନ୍ତ ଜୀବନର ସ୍ଥିତାବସ୍ଥାକୁ ଟିକିଏ ରସାଳ କରି ତୋଳିବାପାଇଁ ବସୁଙ୍କ ଲେଖନୀରୁ ସୃଷ୍ଟି ହୋଇଥିଲା ଅତି ଚମତ୍କାର ହାସ୍ୟ ରସାତ୍ମକ ସୃଜନ କୃଷ୍ଟି ଯାହାର ନାମକରଣ ରଖାଯାଇଥିଲା ଫରୁଆ ବୁଟି । ଏହା ହାସ୍ୟ ସାହିତ୍ୟର ଥିଲା ଏକ ନୂତନ ଦିଗ, ଧାରା । ସେ ସମୟର ସମୃଦ୍ଧ ସାହିତ୍ୟ ପତ୍ରିକା ଆସନ୍ତା କାଲି ରେ ଏହା ଧାରାବାହିକ ଭାବରେ ପ୍ରକାଶଲାଭ କରିବାର ମଧ୍ୟ ସୁଯୋଗ ପାଇଥିଲା ।

କେବଳ ସେତିକି ନୁହେଁ ଏହି ମହିମ ଅଦ୍ଭୁତକର୍ମା କବି ମଂଜୁଳଙ୍କ ଜୀବନ ଥିଲା ସୃଷ୍ଟି ବା ନିର୍ମାଣର ଏକ ମହାନ୍ ଉତ୍ସ । ଝରଣାର ଅବିଶ୍ରାନ୍ତ ଗତି ଯାହା ଅମୃତ ଆବେଗରେ କେବଳ ନାଚି ନାଚି ବୋହିଯିବାର ମନ୍ତ୍ର ହାସଲ କରିଥିଲା । ସେହି ସୂତ୍ରରେ କୃଷ୍ଣପ୍ରସାଦ ଯାଜପୁରଠାରେ ଗଠନ କରିଥିଲେ ଗୋଟିଏ ଯାତ୍ରାଦଳ ଯାହାର ନାମ ଥିଲା ବିରଜା ଅପେରା । ୧୯୧୮ରୁ ୧୯୪୩ ଦୀର୍ଘ ପଥ ଯାହା ପଚାଶ ବର୍ଷ ଧରି ତାହାର କାର୍ଯ୍ୟକ୍ରମକୁ ଚଳାଇ ରଖିଥିଲା । ସେ ସମୟରେ ଲୋକ ଜୀବନ ଓ ଗଣନାଟ୍ୟ ପରଂପରା ଏକ ଏବଂ ଅଭିନ୍ନ ହୋଇ

ସମାଜ ଜୀବନକୁ ପରିପୁଷ୍ଟ କରୁଥିଲା । ନାଟ୍ୟକାର ତାଙ୍କ ସୃଷ୍ଟି ପାଇଁ ଲୋକ ଜୀବନରୁ ଯଥେଷ୍ଟ ପ୍ରେରଣା ହାସଲ କରୁଥିଲେ । ଯାହାକୁ ଆମେ ଆଧାର ଓ ଆଧେୟ ନ୍ୟାୟରେ ସ୍ୱୀକାର କରିପାରିବା । ହୁଏତ ସମୟର ବିବର୍ତ୍ତନ ସହିତ ମଣିଷ ରୁଚିର ପରିବର୍ତ୍ତନ ଘଟିଛି ମାତ୍ର ସାଧାରଣ ମଣିଷର ଆଶା ଆକାଂକ୍ଷା, ହସ, କାନ୍ଦ, ଅଭାବ ଅନଟନ, ନୀତି, ଅନୀତି, ନ୍ୟାୟ ଅନ୍ୟାୟ, ପାପ ପୁଣ୍ୟ, ଧର୍ମ ଅଧର୍ମ ସ୍ୱପ୍ନ ବାସ୍ତବତା ସବୁର ପରିପ୍ରକାଶ ଯେହେତୁ ନାଟକର ଥିଲା ଶରୀର ତାକୁ ଆଦର କରିବାରେ ବା ଜୀବନଛନ୍ଦରେ ନିବିଡ଼ ଆଶ୍ଳେଷରେ ଚଳାଇ ନେବାରେ କୌଣସି ଦ୍ୱିଧା, ବାଧା ବନ୍ଧନ କେବେବି ନ ଥିଲା । ସେଇଥିପାଇଁ କବି କୃଷ୍ଣପ୍ରସାଦ ବସୁଙ୍କର ସାର୍ଥକ ପୁଂଜି ଏହି ବିରଜା ଅପେରା ଟି ବଂଗ, ବିହାର, ଓଡ଼ିଶା ତଥା ଅନ୍ୟ ଅନେକ ପୂରପଲ୍ଲୀରେ ତାର କାର୍ଯ୍ୟକ୍ରମ ଚଳାଇରଖି ବେଶ୍ ଚର୍ଚ୍ଚିତ ହୋଇ ସାରିଥିଲା । ସେ ନିଜେ ନାଟକ ରଚନା କରୁଥିଲେ ଓ ଅପେରାକୁ ସୁଷ୍ଠୁ ପରିଚାଳନା ମଧ୍ୟ କରୁଥିଲେ । ସେ ସମୟରେ ବାଲେଶ୍ୱର ଜିଲ୍ଲାର ଏଡତାଳ ଅଂଚଳରେ ଜଣେ ଜଣାଶୁଣା ଶିଳ୍ପପତି ଥିଲେ ଭୂୟାଁ ଭାସ୍କର ଚନ୍ଦ୍ର ମହାପାତ୍ର । ତାଙ୍କର ଏକ ଥିଏଟର ଥିଲା ଆର୍ଟ ଥିଏଟର । ଏହି ସମୃଦ୍ଧ ଦୁଇଗୋଟି ନାଟ୍ୟାନୁଷ୍ଠାନରେ କୃଷ୍ଣପ୍ରସାଦ ବସୁ ଏକାଦିକ୍ରମେ ଅଭିନୟ ତଥା ପରିଚାଳକ ଭାବରେ କାର୍ଯ୍ୟକରି ଯଶ ଓ ପ୍ରତିଷ୍ଠା ଲାଭ କରିଥିଲେ ।

ଗୋଟିଏ ପାରିବାରିକ ଉଜ୍ଜ୍ୱଳ ଭିତ୍ତିଭୂମି ପରବର୍ତ୍ତୀ ପିଢ଼ିମାନଙ୍କୁ ବିଭିନ୍ନ କ୍ଷେତ୍ରରେ ସାମର୍ଥ୍ୟବାନ କରାଇ ତାଙ୍କ ପ୍ରତିଭାର ଔଜ୍ଜ୍ୱଲ୍ୟ ଦିଗରେ ଆଗେଇ ନେଇଥାଏ । ଏହାହିଁ ବସୁଙ୍କ ପରିବାରରେ ପ୍ରମାଣିତ ହୋଇଛି । ସ୍ୱର୍ଗତ ଗୋପୀନାଥ ବସୁ (୧୮୪୭-୧୯୧୮) ବଂଗଦେଶର ଚବିଶ ପ୍ରଗଣା ଜିଲାର ମାହି ନଗରରେ ନିବାସ କରି ରହିଥିଲେ । ସେ ସ୍ଥାନ ବର୍ତ୍ତମାନ କେତେନା କେତେ ପରିବର୍ତ୍ତନର ସ୍ରୋତରେ ରୂପାନ୍ତର ହୋଇ ଉଠିଚି । ସୁଭାଷଗ୍ରାମ ଷ୍ଟେସନଠାରୁ ମାତ୍ର ପାଞ୍ଚ କିଲୋମିଟର ଦୂରତାରେ ସେ ଗ୍ରାମଟି ଅବସ୍ଥିତ । ପିତାମହ ଗୋପୀନାଥ ପବସୁ କଲିକତାରୁ ଶିକ୍ଷା ସମାପ୍ତ କରି ବାଲେଶ୍ୱରରେ ଓକିଲାତି କରୁଥିଲେ- ବ୍ୟାସକବି ଫକୀର ମୋହନ ସେନାପତି କବିବର ରାଧାନାଥ ରାୟ, ବଂକିମଚନ୍ଦ୍ର ଚଟ୍ଟୋପାଧ୍ୟାୟ ତାଙ୍କର ବଂଧୁ ଥିଲେ । ପରେ ପରେ ବିରଜା କ୍ଷେତ୍ର ଏଇ ଯାଜପୁରଠାରେ ସ୍ୱତନ୍ତ୍ର ଭାବରେ କୋର୍ଟ କାର୍ଯ୍ୟ ପରିଚାଳିତ ହେବାରୁ ବସୁଙ୍କ ପରିବାର ଯାଜପୁରକୁ ହିଁ ନିଜର ସଂସାର ଓ ସାଧନାର ସଦାକାଳର ପୀଠ ଭାବରେ ସ୍ୱୀକୃତି ଦେଲେ । ଅବାରିତ ନଦୀର ସ୍ରୋତପରି ଯେହେତୁ ପ୍ରତିଭା ଅଭିମନ୍ତ୍ରିତ ହୋଇ ପରଂପରାକୁ ଛୁଇଁ ଛୁଇଁ ଯାଏ କୃଷ୍ଣପ୍ରସାଦଙ୍କ ଉପରେ ଅଖଣ୍ଡ ପ୍ରଭାବ ବିଂଚିଦେଲା ତାଙ୍କ ପିତାମହ ସତ୍ୟନିଷ୍ଠ ତେଜସ୍ୱୀ ପୁରୁଷ ଗୋପୀକାନ୍ତ ବସୁଙ୍କ ଅଲୋକ ସାମାନ୍ୟ ପ୍ରଭା । କବି ସମ୍ରାଟ ଉପେନ୍ଦ୍ରଙ୍କ ଜୀବନରେ ତାଙ୍କ ପୂର୍ବ ବଂଶଜଙ୍କର ଯେପରି ଅମ୍ଳାନ ଧାରାଟିଏ ମାଠି ମୁଠି ଉପେନ୍ଦ୍ରଙ୍କୁ ଯଶସ୍ୱୀ କରିଥିଲା ତାହାର ଏକ ଶୁଦ୍ଧ ସଂସ୍କରଣ ଯେପରି କବିମଂଜୁଳଙ୍କ ଜୀବନରେ ପ୍ରତିଭାତ ହୋଇଉଠିଲା ।

କବିମଂଜୁଳଙ୍କ ପିତା ଗୋବିନ୍ଦ ପ୍ରସାଦ (୧୮୭୦-୧୯୪୫) ଥିଲେ ଜଣେ ପ୍ରବୀଣ ପାଖୋୟାଜ ଓ ମୃଦଙ୍ଗ ବାଦକ । ଏହି ଭିତ୍ତିଭୂମି ଓ ପରିସର ବାସ୍ତବରେ କବିମଂଜୁଳଙ୍କ ପାଇଁ ଥିଲା ଆଲୋକ ବର୍ତ୍ତିକା ପରି । ତାଙ୍କପାଇଁ ସ୍ପନ୍ଦିତ ଆହ୍ୱାନର ଅନୁକୂଳ ଆବେଶ ଯାହା କେବଳ ପ୍ରକାଶିତ ହେବାକୁ ଚାହେଁ- ସମର୍ପିତ ହେବାକୁ ଚାହେଁ । କୃଚ୍ଛ୍ର ସାଧନାର ବଳଗଣ୍ଡି ମଧ୍ୟରେ ଅନୁକୂଳ ପାଣିପାଗର ସଂଯୋଗ ଭୂମି କୃଷ୍ଣପ୍ରସାଦଙ୍କ ପାଇଁ ଆଣିଦେଲା ଅସୀମ ସୁଯୋଗ । ସେ ଓଡ଼ିଆ ପାଲା ସାହିତ୍ୟର ସ୍ରଷ୍ଟା, ରମ୍ୟରଚନାର ସଂଗୀତଜ୍ଞ, ଔପନ୍ୟାସିକ, ରେକର୍ଡ କଂପାନୀର ଗାୟକ, ନାଟ୍ୟକାର, କାବ୍ୟକାର, କଣ୍ଠଶିଳ୍ପୀ, ନିର୍ଦ୍ଦେଶକ, ଅଭିନେତା, ସ୍ୱାଧୀନତା ସଂଗ୍ରାମୀ, ବହୁ ଶାସ୍ତ୍ରବିତ୍, ଆଦର୍ଶ ବିଜ୍ଞାନ ଶିକ୍ଷକ । ତାଙ୍କ ଜୀବନ ଧୀରେ ଧୀରେ ହୋଇ ଉଠିଲା ସାଧାନର ଏକ ସ୍ରୋତସ୍ୱିନୀ ଧାରା । ସେଇଥିପାଇଁ ତ ଆଜିର ତତ୍‌କାଳୀନ ଗୁଣଗ୍ରାହୀ ରାଜା ବ୍ରଜସୁନ୍ଦର ଦେବ ୧୯୩୯ ମସିହାରେ କୃଷ୍ଣପ୍ରସାଦ ବସୁଙ୍କୁ କବିମଂଜୁଳ ଉପାଧି ପ୍ରଦାନ କରିଥିଲେ । ଅନ୍ୟପକ୍ଷରେ ନାଟ୍ୟ ସାହିତ୍ୟରେ ଓସ୍ତାଦ୍ ଥିବାର ଅନୁଭବ କରି ମୟୁରଭଂଜର ରାଜା ପୂର୍ଣ୍ଣଚନ୍ଦ୍ର ଭଂଜଦେଓ ବସୁମହାଶୟଙ୍କୁ ଉତ୍କଳଗନ୍ଧର୍ବ ଉପାଧିରେ ଭୂଷିତ କରିଥିଲେ । କିନ୍ତୁ ଏ ସମସ୍ତର ଉର୍ଦ୍ଧ୍ୱରେ ଆଞ୍ଚଳିକତାର ହିସାବ ପୃଷ୍ଠାରୁ ସେ ବ୍ୟତିକ୍ରମ ହୋଇ ଆମ ଭାଷା ସାହିତ୍ୟ କଳା ସଂସ୍କୃତିର ଏକ ବଳିଷ୍ଠ ତପସ୍ୱୀ ହୋଇଗଲେ । ଯାଜପୁରର କେବଳ ନୁହେଁ ସମଗ୍ର ଦେଶ ଓ ଜାତିର ଯଶସ୍ୱୀ ପ୍ରତିଭା ରୂପେ ତାଙ୍କୁ ଶୁଦ୍ଧ ଚିତ୍ତରେ ଗ୍ରହଣ କରିନିଆଗଲା ।

ଏହା ସତ୍ୟ ଯେ କବିମଂଜୁଳଙ୍କ ଅଜସ୍ର ରଚନାବଳୀ ଆଜି ଓଡ଼ିଆଭାଷା ସାହିତ୍ୟ ପାଇଁ ଉଚ୍ଚତର ସଂପତ୍ତି

ହୋଇଉଠିଛି । ସେ ଯାତ୍ରା ଗୀତିକବିତା, ପାଲା, ପ୍ରବନ୍ଧ, ଉପନ୍ୟାସ, ଦେଶାତ୍ମବୋଧକଗୀତ, ରମ୍ୟରଚନା, ଅନୁବାଦ, ସକଳ କ୍ଷେତ୍ରରେ ଲେଖନୀ ଚାଳନା କରି ପ୍ରତିଷ୍ଠାର ଶୀର୍ଷ ଛୁଇଁ ଯାଇଛନ୍ତି । ପାଲା ଗାୟକ ମାନଙ୍କପାଇଁ ସେ କେବଳଛତିଶଗୋଟି ଖଣ୍ଡକାବ୍ୟ ରଚନା କରିଥିଲେ । ସେଗୁଡ଼ିକ ମଧ୍ୟରୁ ଖାଣ୍ଡବଦହନ, ପ୍ରଭାସ ଯଜ୍ଞ, ଗାନ୍ଧୀଚରିତ, ହିମାଦ୍ରିଜେମା, ସନ୍ନ୍ୟାସୀ, ମାତୃପୂଜା, ଦେବବ୍ରତ, ଛତ୍ରପତି ଶିବାଜୀ, ବ୍ରାହ୍ମଣ ହରିଶ୍ଚନ୍ଦ୍ର, ତ୍ରିବିକ୍ରମ, ନିକୁମ୍ଭିଲା ଇତ୍ୟାଦି ଅତ୍ୟନ୍ତ ଚିତ୍ତାକର୍ଷକ ସୃଷ୍ଟିର ମାନ୍ୟତା ପାଇଛି । କବିମଂଜୁଳଙ୍କ ନାଟକ ରଚନା ମଧ୍ୟରେ ଯଯାତି କେଶରୀ, ଗୟାସୁରବଧ, ଶକୁନ୍ତଳା, ଦକ୍ଷଯଜ୍ଞ, ଅଛୁଆଁ ଝିଅ, ରମାଇଦେଓ, ଭୁୟାଁପୀଢ଼, ନିମାଇଁସନ୍ୟାସୀ, ମେଘନାଦ ବଧ, ବାମନାବତାର, ବିଲ୍ୱମଙ୍ଗଳ, ରୋସେନା ଓ ସମାନ, ମିଠାମହୁରା, ଅତ୍ୟନ୍ତ ଚମତ୍କାର ସୃଷ୍ଟି ଅଟେ । ତାଙ୍କର ଅନେକ ରଚନା ସମୂହରେ ବିଦେଶୀ ଶାସକମାନଙ୍କ ବିରୋଧରେ ଥିଲା ଯଥାର୍ଥ ଉଦ୍‌ଘୋଷଣା । ଏହାହିଁ କବିମଂଜୁଳଙ୍କ ସ୍ୱଦେଶ ପ୍ରୀତିର ଯଥାର୍ଥ ପରିଚୟ ଆଣିଥାଏ । ବସୁ ସାହିତ୍ୟ ମନ୍ଦିର ଯାଜପୁର ଆନୁକୂଲ୍ୟରେ କବି ମଂଜୁଳରଚନାବଳୀ ପୁସ୍ତକଟି ବିଶ୍ୱେଶ୍ୱର ବସୁଙ୍କ ସତ୍ତ୍ୱାଧିକାରରେ ପ୍ରକାଶ ପାଇଛି । ଏହାର ପ୍ରଥମ ଭାଗରେ ଏଗାରଟି ଛନ୍ଦକାବ୍ୟକୁ ଗ୍ରନ୍ଥିତ କରାଯାଇଅଛି । ଦେବବ୍ରତ, ବଭ୍ରୁବାହନ, କବି ନର୍ତ୍ତକୀ (ବିଲ୍ୱମଂଗଳ) ନିକୁମ୍ଭିଲା ଯଜ୍ଞାଗାର, ଜନ୍ମାଷ୍ଟମୀ, ନଳଦମୟନ୍ତୀ, ଚଣ୍ଡାଶୋକ, ପାତକୀ, ହିମାଦ୍ରିଜେମା, ପୁଷ୍ପାଞ୍ଜଳି, କଚ ଓ ଦେବଯାନୀ ଇତ୍ୟାଦି । ଏଠାରେ କବିମଂଜୁଳଙ୍କ ସୃଷ୍ଟିଧାରାର ସାମାଜିକ ଆବେଦନ ସଂପର୍କରେ ନିବେଦନ ଶୀର୍ଷକରେ ଆପଣା ବକ୍ତବ୍ୟ ଉଦ୍ଧାର କରାଯାଇପାରେ । କାରଣ ଏହି ସ୍ୱୀକାରୋକ୍ତିହିଁ କବିମଂଜୁଳଙ୍କ ସମୟର ସାମାଜିକ ଜୀବନରେ ଲୋକମାନସର ଉତ୍କର୍ଷର ପରିଚୟ ଥିଲା ।

ଦେଖାଗଲା– ଦେଶର ଅଭ୍ୟୁଦୟ ସଂଗେ ଗୁଣ୍ଡୁଚି ମୂଷାର ଏ ଧୂଳିଝଡ଼ା ପ୍ରତି ସର୍ବସାଧାରଣଙ୍କର ଆଗ୍ରହ ଓ ଆଶୀର୍ବାଦ ବଢ଼ିବାରେ ଲାଗିଛି । ତଥାପି ଆମେ ଏତିକିରେ ସ୍ଥିର ରହିପାରୁନା– ଆହୁରି ମାର୍ଜିତ ବହୁଧା ସଂସ୍କୃତ କରିବାର ଅଛି । ଯଦ୍ଦ୍ୱାରା ଜନରଂଜନ ବ୍ୟାପାରରେ ଆମର କଳାକାରମାନେ ସମାଧିକ ବିଜ୍ଞ ହୋଇ ଅଧିକତର ସୃଷ୍ଟୁଭାବେ କୃତକର୍ମା ହେବେ । ତଦ୍‌ବିଷୟମାନଙ୍କରେ ଅଧିକ ଇଂଗିତ ଓ ଉପଦେଶ ଦେବା ଆମର କର୍ତ୍ତବ୍ୟ ବୋଲି ଭାବୁଛୁ ।

ସ୍ଥୂଳତଃ ଦେଖିବାକୁ ଗଲେ ଜନରଂଜନ ବ୍ୟାପାରେ ଛନ୍ଦକବିତା ଆଲୋଚନାରେ ମଧ୍ୟ ମେଜିକ୍ ଦରକାର । ସେ ମେଜିକ୍ ଲାଗି ପୂର୍ବରୁ କରିଛୁ ଚରିତ୍ର ବିଶ୍ଳେଷଣ ଓ ଭାବ ପ୍ରସାରଣର ପ୍ରଭାବ କଥା ।

ଅଭିନୟ ମୁଖଭଙ୍ଗୀ, ବାକ୍‌ଚାତୁରୀ, ଗରମ ଉଚ୍ଚାରଣ, ଯଥାଯଥ ସ୍ୱର ଓ ତାଳାନୁଗ କରି ସ୍ୱରବିନ୍ୟାସର ବା କେଉଁ ସ୍ୱର ପ୍ରୟୋଗ କଲେ ସଭାସ୍ଥଳ ଅଧିକରୁ ଅଧିକ ଜମକ୍‌ଦାର ହୋଇ ଶୀର୍ଷ (climax) ସ୍ଥାନକୁ ଯିବ, ଏ ବିଷୟରେ ବହୁ ବିଷୟ ଶିକ୍ଷା ଦେବାର ଅଛି ।

ଭଗବାନ ମୋତେ ଜରାଗ୍ରସ୍ତ ରୋଗଶଯ୍ୟାଶାୟୀ ବୃଦ୍ଧ କରିଦେଲେ । ମନର ଆବେଗ ଓ ଆଗ୍ରହ କିଛି ଚରିତାର୍ଥ କରିବାର ବା ଏକ୍‌ସପେରିମେଣ୍ଟ ଦେଖାଇବାକୁ ଏକାନ୍ତ ଅକ୍ଷମ ହୋଇଗଲିଣି, ତଥାପି ଶେଷଶ୍ୱାସଯାଏ ସେବା କରୁଥିବି ।

ଦେଖିଲିଣି–ପୁରାଂଗନା ବହୁ ଝିଅ ନାତୁଣୀଙ୍କ ମଧ୍ୟେ ଅବସର ବିନୋଦନ ଉପନ୍ୟାସ ପ୍ରାୟ ଏଥିର ଆଦର ଓ ଆଲୋଚନା ଚାଲିଛି । ଗୁଣୁଗୁଣୁ କରି ଗାଉଛନ୍ତି ସୁଲକ୍ଷଣା । ସେମାନଙ୍କୁ କହିବାର ଖାସ୍ ତୁମର ଲାଗିତ ଖଞ୍ଜି ରଖୁଛି ବିଶେ ରଙ୍ଗରସଗୁଡ଼ିକ । ପେଟେ ହସ, ଟୋପେ କାନ୍ଦ, ଅସଲ ଶିକ୍ଷାଗୁଡ଼ିକୁ ହୃଦୟଂଗମ କର ।– ସେ ହିଁ ମୋର ଲକ୍ଷ୍ୟ । ହୃଦୟର ସ୍ପର୍ଶ ଓ ସୁସ୍ପଷ୍ଟତା ଦୁଇ ଦିଗକୁ ଲକ୍ଷ୍ୟକରି ଚାଲିଛି ।

ପାଶ୍ଚାତ୍ୟ ସଭ୍ୟତାର ଶତ ପ୍ରବାହେ ସିନେମା ଥିଏଟରର ଶତ କାମିନା କାଞ୍ଚନର ଛାୟା ଚିତ୍ରରେ କୁଳକନ୍ୟା କୁଳଭୁଆସୁଣୀ ମାନଙ୍କର ଆର୍ଯ୍ୟରୁଚି ପ୍ରାଣର ନିଗରଜ ଆହ୍ୱାନ ବଦଳି ନାହିଁ, ବଦଳି ପାରେନି ।

ଦେଢ଼ହଜାର ଦୁଇ ହଜାର ବର୍ଷତଳେ ଲେଖା ଏ ଗ୍ରନ୍ଥମାନ ବଂଚିଛି କିପରି ? ଗ୍ରୀସ, ରେମ୍, ମେସିଡୋନ୍ କେଉଁଠି ତ ଏତେକାଳ ବଂଚିନି–

କଲ୍ୟାଣୀୟ ଓ କଲ୍ୟାଣୀୟାମାନେ ! ଧନ୍ୟ ହୁଅ– ଭାରତର ନିଜସ୍ୱ ଅବଦାନଗୁଡ଼ିକୁ ଶ୍ରୀଅଙ୍ଗର କଣ୍ଠହାର କର ।

(ନିବେଦନ–ପୃ.–୨, କବିମଂଜୁଳ ରଚନାବଳୀ ଦ୍ରଷ୍ଟବ୍ୟ)

ସ୍ୱୟଂ କବିମଂଜୁଳଙ୍କର ଉପରୋକ୍ତ ଅଭିମତଟି ପାଠ କଲାପରେ ଜଣାଯାଏ ଯେ ଏ ଉକ୍ତିଟି ମଧ୍ୟରେ ଗୋଟିଏ ଯୁଗ ଚେତନାର ସାହିତ୍ୟ ସଂସ୍କୃତିର ରୁଚିବୋଧ ସଂପର୍କରେ

ଏକ ଯଥାର୍ଥ ଅନୁଭବର ବାର୍ତ୍ତା ବେଶ୍ ମାତ୍ରାରେ ନିରୂପିତ ହୋଇଛି । ଓଡ଼ିଆ ଭାଷାର ପ୍ରାଚୀନ ସୃଷ୍ଟି ସଂପଦ ଲୋକମାନସରେ ଯେଉଁ ସାତ୍ତ୍ୱିକ ବିଭବ ହୋଇ ଉଠିଥିଲା ତାହାର ପ୍ରତିଛବିହିଁ ଏହି ଉଦ୍ଧୃତାଂଶର ଅନ୍ତଃସ୍ୱର ଅଟେ । କବିମଂଜୁଳଙ୍କର ଏ ବୟାନଟି ମଧ୍ୟରେ ଗୋଟିଏ ସମୟଖଣ୍ଡର ପରିଚ୍ଛନ୍ନ ଆବେଦନ ହିଁ ସୂଚାଇ ଦିଏ ଯେ ଏ ଜାତି ତଥା ମାନବ ଚେତନାର ସମର୍ପଣ ଥିଲା କେତେ ପ୍ରଖର । ତାହା ଆଜିର ପରିପ୍ରେକ୍ଷୀରେ ବ୍ୟତିକ୍ରାନ୍ତ ଅଟେ ।

ଯେପରି ସାରଳାଦାସଙ୍କର ରଚନା ସମୂହ ଉତ୍କଳୀୟ ଜନଜୀବନର ଭାଷ୍ୟ ଓ ଜୀବନ୍ତ ପ୍ରତିଛବି ହୋଇ ଉଠଇଥିଲା ଠିକ୍ ସେହିପରି କବିମଂଜୁଳଙ୍କ ରଚନା ପ୍ରମୁଖରେ ଗୋଟିଏ ଜାତିର ଯଥାର୍ଥ ପରିଚୟ, ରୀତି, ନୀତି, ଭାବ ଭାବନା ବାଣୀ ବିତାନର ଧ୍ୱନି ପ୍ରତିଧ୍ୱନି ହୋଇ ଆଜି ଆମପାଇଁ ଏକ ସାର୍ଥକ ଜ୍ଞାନଭଣ୍ଡାରର ସ୍ରୋତସ୍ୱିନୀ ସୃଷ୍ଟିକରିଛି, ଏ ପଦକ୍ଷେପ ତାଙ୍କର ଥିଲା ଏକ ସମର୍ପିତ ପଦଧ୍ୱନି । ମନ୍ଦ୍ର ମଧୁର ସୃଷ୍ଟି ମୁଖୀନତା ଭିତରେ କବିମଂଜୁଳଙ୍କ ସାଧନାମୟ ଜୀବନ କେବଳ ଯେ ସ୍ରଷ୍ଟା ବା ଲେଖକର ପରିଚୟରେ ବରଣୀୟ ହୋଇଉଠିଥିଲା ତା ନୁହେଁ ସେ ଥିଲେ ସର୍ବଗୁଣ ସଂପନ୍ନ ଜଣେ ଚଳଚଞ୍ଚଳ ବ୍ୟକ୍ତିର ଊର୍ଦ୍ଧ୍ୱରେ ଅନୁଷ୍ଠାନ । ଲେଖିବା ଗାଇବା ନାଚିବା ଅଭିନୟ କରିବା ସ୍ୱର ସଂଯୋଜନା କରିବା ଇତ୍ୟାଦି ବିଶେଷ ଭୂମିକାରେ କବିମଂଜୁଳ ଥିଲେ ସ୍ୱୟଂସିଦ୍ଧ ଓ ସ୍ୱୟଂ ପ୍ରତିଷ୍ଠ । ତାଙ୍କର ଯାତ୍ରା ଥିଲା ଅସୀମ ଅଭିଜ୍ଞତାର ଉପଲବ୍ଧିର ଚିରନ୍ତନ ଉତ୍ସ । ତାଙ୍କ ପାଖରେ ଲୁଚି ରହିଥିଲା କାଳଜୟୀ ସ୍ୱତଃସ୍ଫୂର୍ତ୍ତ ବିଶେଷ ସଂଭାବନା । ଯାହା ଆମପାଇଁ ଏକ ପୁଂଜି ବା ସାଇତା ସ୍ୱାକ୍ଷର ହୋଇ ରହିଅଛି ।

ଆଜି ପ୍ରଯୁକ୍ତି ବିଦ୍ୟାର ଅବାରିତ ବିକାଶଧାରା, ବିଜ୍ଞାନ ଓ ଟେକ୍‌ନୋଲୋଜିର ଅନନ୍ୟ ପ୍ରଭାବ ଆମ ପାରଂପରିକ କଳା ବିଭବର ନାନ୍ଦନିକ ସୌନ୍ଦର୍ଯ୍ୟକୁ ଅପହରଣ କରିନେଇ ତା ସ୍ଥାନରେ ନୂତନ ଶିଳ୍ପବୋଧକୁ ଦୃଢ଼ଭାବରେ ସାବ୍ୟସ୍ତ କରିଚାଲିଛି । ଏହାର ସ୍ଥାୟିତ୍ୱ ଲୋକମାନସରେ କେଉଁ କାଳଯାଏ ଉଦ୍ଦୀପ୍ତ ହୋଇ ରହିବ ଏହା ପ୍ରଶ୍ନବାଚୀର ଅପେକ୍ଷା ରଖେ ମାତ୍ର କବିମଂଜୁଳଙ୍କ ସାହିତ୍ୟର ଅପୂର୍ବ ରସଝର୍ଣ୍ଣା ତାର ଲଳିତ ମଧୁର ତାନ ବିତାନ ଉତ୍କଳର ପ୍ରାଚୀନ କାବ୍ୟମୋଦୀ ପାଠକମାନଙ୍କ ମନ ପ୍ରାଣ ହୃଦୟରେ ଯେ ଅଖଣ୍ଡ ଦୀପର ପ୍ରଭାଗୁଣ ହୋଇ ଝଟକୁଥିବ ଏହା ସତ୍ୟ ଓ ବାସ୍ତବ ଅଟେ ।



ଓଡ଼ିଆ ବିଭାଗ
ଯୁଣଭଦ୍ରା କଲେଜ, ଯାଜପୁର

# ବିଶ୍ୱ ଉତ୍ତପ୍ତୀକରଣର ଶିକାର ଓଡ଼ିଶା

ନିକୁଞ୍ଜ ବିହାରୀ ସାହୁ

ପ୍ରାକୃତିକ ସମ୍ପଦରେ ଭରପୂର ଆମ ରାଜ୍ୟ ଓଡ଼ିଶା ଏକ ଅନୁପମ ଭୌଗୋଳିକ ଭୂଖଣ୍ଡ । ମାତ୍ର ଘୋର ପରିତାପର ବିଷୟ ଯେ ଏବେ ଏହାର ମାଧୁର୍ଯ୍ୟ ଓ ମାଦକତା ଆଉ ନାହିଁ । ବିଶ୍ୱ ଉତ୍ତପ୍ତୀକରଣ ଜନିତ ଜଳବାୟୁ ପରିବର୍ତ୍ତନ ଯୋଗୁଁ ଏହା ପାଲଟି ଯାଇଛି ଶ୍ରୀହୀନ ଓ ମାଦକତାଶୂନ୍ୟ । ଉଜୁଡ଼ା ଜଙ୍ଗଲ, ଟାଙ୍ଗରା ଭୂଇଁ ଓ ଶୁଖିଲା ନଇ ହିଁ ଏହାର ପ୍ରମାଣ । ମୌସୁମୀ ଆଜି ଅନିୟମିତ ଓ ଛନ୍ଦହୀନ । ଶୀତ ଦିନେ ଶୀତ କୁଆଡ଼େ ଉଭେଇ ଗଲାଣି । ମାର୍ଗଶୀର ମାସରେ ଆମ୍ବ ଗଛରେ ବଉଳ ଧରିଲାଣି । ଦାରୁଣ ଗ୍ରୀଷ୍ମ ପ୍ରବାହରେ ଜଗତ ତ୍ରାହି ତ୍ରାହି ଡାକିଲାଣି । ଆଉ ମାଡ଼ି ଆସିଲାଣି ସମୁଦ୍ର । ବନ୍ୟା, ବାତ୍ୟା, ମରୁଡ଼ି ଭଳି ପ୍ରାକୃତିକ ଦୁର୍ବିପାକ ଓଡ଼ିଶା ଆକାଶରେ ଧୂମକେତୁ ସାଜିଲେଣି । ଏହାଦ୍ୱାରା ବିଗତ ଚାରିବର୍ଷ ମଧ୍ୟରେ ପ୍ରାୟ ୩୦୦୦ ଲୋକଙ୍କ ପ୍ରାଣହାନି ଘଟିବା ସାଙ୍ଗକୁ ରାଜ୍ୟର ଅର୍ଥନୀତି ଭୁଷୁଡ଼ି ପଡ଼ିଲାଣି ।

### ବାତ୍ୟାର ତାଣ୍ଡବ

ଜଳବାୟୁ ପରିବର୍ତ୍ତନ ଯୋଗୁଁ ବିଗତ ଦିନମାନଙ୍କରେ ବଙ୍ଗୋପ ସାଗରରେ ଅଶାନ୍ତ ଝଡ଼ମାନ ଉଠିଛି । ଭାରତୀୟ ପାଣିପାଗ ବିଭାଗର ତଥ୍ୟ ଅନୁଯାୟୀ ବିଗତ ୯୮ ବର୍ଷ (୧୮୯୧-୧୯୮୮) ମଧ୍ୟରେ ଓଡ଼ିଶା ଉପକୂଳରେ ସୃଷ୍ଟି ହୋଇଥିବା ସମୁଦାୟ ୯୬୪ଟି ଘୂର୍ଣ୍ଣିବାତ୍ୟା ମଧ୍ୟରୁ କେବଳ ଓଡ଼ିଶା ଦେଇ ୪୭୨ଟି ଝଡ଼ ଅତିକ୍ରମ କରିଛି । ଗତ ୧୯୭୧, ୧୯୮୨ ଓ ୧୯୯୯ ମସିହାର ପ୍ରଳୟଙ୍କରୀ ଝଡ଼ସବୁ ଏହାର ପ୍ରମାଣ । ଏ ମଧ୍ୟରୁ ବୋଧହୁଏ ସବୁଠାରୁ ଭୟଙ୍କର ଥିଲା ୧୯୯୯ ମସିହାର ମହାବାତ୍ୟା । ଏହା ୧୪ଟି ଉପକୂଳବର୍ତ୍ତୀ ଜିଲ୍ଲାକୁ ଧ୍ୱସ୍ତବିଧ୍ୱସ୍ତ କରିଥିଲା । ଏହାଦ୍ୱାରା ଦେଢ଼ କୋଟି ଲୋକ କ୍ଷତିଗ୍ରସ୍ତ ହେବା ସାଙ୍ଗକୁ ୧୦,୦୦୦ କୋଟି ଟଙ୍କାର କ୍ଷୟକ୍ଷତି ଘଟିଥିଲା ।

### ବନ୍ୟାର ବିଭୀଷିକା

ବେସୁରା ବର୍ଷା ଯୋଗୁଁ ନଦୀ ଆଜି ଓଡ଼ିଶାର ପ୍ରାଣପ୍ରବାହ ନୁହେଁ ବରଂ ପ୍ରଗଳ୍‌ଭା ଓ ବନ୍ୟାପ୍ରବଣା । ବନ୍ୟା ଏବେ ଓଡ଼ିଶାର ଚିରାଚରିତ ସମସ୍ୟା । ଗତ ୨୦୦୧ ମସିହାର ପ୍ରଳୟଙ୍କରୀ ବନ୍ୟାରେ ଓଡ଼ିଶାର ୩୦ଟି ଜିଲ୍ଲା ମଧ୍ୟରୁ ୨୫ଟି ଜିଲ୍ଲା ପ୍ରଭାବିତ ହୋଇ ସମୁଦାୟ ଏକତୃତୀୟାଂଶ ଜନସଂଖ୍ୟା କ୍ଷୟଗ୍ରସ୍ତ ହୋଇଥିଲା । ପୂର୍ବରୁ ବନ୍ୟାପ୍ରବଣ ନ ଥିବା ପଶ୍ଚିମ ଓଡ଼ିଶାର କିଛି ଜିଲ୍ଲା ମଧ୍ୟ ବନ୍ୟା ପ୍ରକୋପ ବଳୟ ମଧ୍ୟରେ ରହିଥିଲା । ଏଇ ୨୦୧୧ ମସିହାରେ ମହାନଦୀ ଓ ବ୍ରାହ୍ମଣୀ ନଦୀ ସମୂହରେ ଲଗାତାର ବନ୍ୟା ଦ୍ୱାରା ୧୯ଟି ଜିଲ୍ଲାରେ ସମୁଦାୟ ୨୧୨୧ କୋଟି ଟଙ୍କାର କ୍ଷୟକ୍ଷତି ଘଟିଥିବାର ଏକ ନିର୍ଭରଯୋଗ୍ୟ ଆକଳନରୁ ଜଣାପଡ଼େ ।

### ମରୁଡ଼ିର ମଡ଼କ

ମୌସୁମୀର ଅନିୟମିତତା ଯୋଗୁଁ ସ୍ୱଳ୍ପ ବୃଷ୍ଟିପାତ ବାରମ୍ବାର ମରୁଡ଼ିର କାରଣ ହେଲାଣି । ଗତ ୨୦୦୧ ମସିହାର ଭୟଙ୍କର ମରୁଡ଼ିରେ ସମୁଦାୟ ଦୁଇ-ତୃତୀୟାଂଶ ଜିଲ୍ଲାରେ ଶସ୍ୟହାନି ଘଟି ୧.୧ କୋଟି ଚାଷୀ କ୍ଷତିଗ୍ରସ୍ତ ହୋଇଥିଲେ । ପୂର୍ବରୁ କେବେ ମରୁଡ଼ିର ନାଁ ଶୁଣାନଥିବା କେନ୍ଦ୍ରାପଡ଼ା ଓ ସୁନ୍ଦରଗଡ଼ ଜିଲ୍ଲା ମଧ୍ୟ ମରୁଡ଼ିର ଶିକାର ହେଲାଣି । ଏହାଦ୍ୱାରା ଆମ ରାଜ୍ୟର ସମୁଦାୟ ୬୪୨.୮୯ କୋଟି ଟଙ୍କାର ଆର୍ଥିକ କ୍ଷତି ଘଟିଛି ବୋଲି ଜଣାଯାଏ ।

### ଦାରୁଣ ଗ୍ରୀଷ୍ମ ପ୍ରବାହ

ବିଶ୍ୱ ଉତ୍ତପ୍ତୀକରଣର ପ୍ରଭାବରେ ବିଶ୍ୱରେ ବିଗତ ୧୨୫ ବର୍ଷ ମଧ୍ୟରେ ସମୁଦାୟ ୧୧ଟି ଅତି ଉତ୍ତପ୍ତ ବର୍ଷ କେବଳ ଗଲା ୧୭ ବର୍ଷ ମଧ୍ୟରେ ହିଁ ଅନୁଭୂତ ହୋଇଛି । ଓଡ଼ିଶା ଏଥିରୁ ବାଦ ପଡ଼ି ନାହିଁ । ଏକ ଆକଳନ ଅନୁଯାୟୀ ୧୯୫୦ ମସିହାରୁ ୧୯୯୦ ମସିହା ମଧ୍ୟରେ ଆମ ରାଜ୍ୟର ହାରାହାରି ତାପମାତ୍ରା ପ୍ରାୟ ୧ ଡିଗ୍ରୀ ସେଲସିୟସ୍ ବଢ଼ିଛି । ୧୯୯୮ ମସିହାର ଦାରୁଣ ଗ୍ରୀଷ୍ମପ୍ରବାହ ଓ ଅଂଶୁଘାତରେ ଉପକୂଳବର୍ତ୍ତୀ ଜିଲ୍ଲାରେ ୧୫୦୦ରୁ ଊର୍ଦ୍ଧ୍ୱ ଲୋକଙ୍କ ପ୍ରାଣହାନି ଘଟିଛି । ଏକ ନିର୍ଭରଯୋଗ୍ୟ ଆକଳନରୁ ଜଣାପଡ଼ିଛି ଯେ, ଏବେ ଆମ ରାଜ୍ୟର ହାରାହାରି ସର୍ବୋଚ୍ଚ ଓ ସର୍ବନିମ୍ନ

ତାପମାତ୍ରା ଦ୍ରୁତ ବଢ଼ିବାରେ ଲାଗିଛି । ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକ ମଧ୍ୟ ପ୍ରବଳ ଗ୍ରୀଷ୍ମପ୍ରବାହର ଶିକାର ହେଲେଣି । ଏବେ ଖରାଦିନେ ରାଜଧାନୀ ଭୁବନେଶ୍ୱରର ତାପମାତ୍ରା ୪୦ ଡିଗ୍ରୀ ସେଲସିୟସ୍ ଟପୁଛି ଯାହା ଅଭ୍ୟନ୍ତରରେ ଥିବା ସମ୍ବଲପୁର ସହରର ତାପମାତ୍ରା ସଂଗେ ପ୍ରାୟ ସମାନ ।

## ବାଇଶି ପାହାଚେ ଖେଳିବ ମୀନ

ଏକଦା ଦୀର୍ଘ ୪୮୦ କି.ମି. ଉପକୂଳରେଖା ପାଇଁ ଗର୍ବ ଅନୁଭବ କରୁଥବା ଓଡ଼ିଶା ପାଇଁ ସମୁଦ୍ର ଏବେ ଭୟଙ୍କର ବିପତ୍ତି ରୂପେ ମୁଣ୍ଡ ଟେକିଲାଣି । ସମୁଦ୍ର ସ୍ଥଳଭାଗକୁ ମାଡ଼ିଆସିବା ଦ୍ୱାରା ସମୁଦ୍ରକୁ ଜୀବିକା ରୂପେ ଗ୍ରହଣ କରିନେଇଥିବା ସମୁଦ୍ରକୂଳିଆ ଗାଁ ସବୁରେ ଲୋକଙ୍କ ସଂସାର ଉଜୁଡ଼ି ଗଲାଣି । ଜମିରେ ଲୁଣା ପାଣି ମାଡ଼ିଯିବା ଯୋଗୁଁ ମୃତ୍ତିକା ଅନୁର୍ବର ଓ କୃଷି ଅନୁପଯୁକ୍ତ ପାଲଟିଯାଉଥିବାରୁ ଚାଷୀ ମୁଣ୍ଡରେ ହାତ ଦେଲେଣି । ସମୁଦ୍ରପତ୍ତନ ବୃଦ୍ଧି ଯୋଗୁଁ ବୋଧହୁଏ ସବୁଠାରୁ ବେଶି କ୍ଷତିଗ୍ରସ୍ତ ହୋଇଛି କେନ୍ଦ୍ରାପଡ଼ା ଜିଲ୍ଲାର କିଛି ସମୁଦ୍ରକୂଳିଆ ଗାଁ । ସାତୋଟି ଗାଁକୁ ନେଇ ଗଠିତ ସାତଭାୟା ଉପଖଣ୍ଡ ଏହାର ଜ୍ୱଳନ୍ତ ପ୍ରମାଣ । ଏହାର ସମୁଦାୟ ୭ଟି ଗାଁ ମଧ୍ୟରୁ ୫ଟି ଗାଁ ସମୁଦ୍ରଗର୍ଭରେ ସମ୍ପୂର୍ଣ୍ଣ ଲୀନ ହୋଇ ସାରିଲାଣି ଏବଂ ଅବଶିଷ୍ଟ ୨ଟି ଗାଁର ଆୟୁଷ ହାତଗଣତିରେ ମାତ୍ର କେଇ ଦିନ ରହିଯାଇଛି । ସମୁଦ୍ରପତ୍ତନ ବୃଦ୍ଧି ସାଙ୍ଗକୁ ପ୍ରଳୟଙ୍କରୀ ଲହଡ଼ି ମଧ୍ୟ ସମୁଦ୍ରକୂଳିଆ ଅଞ୍ଚଳରେ ବିପଦର କାରଣ ପାଲଟିଲାଣି । ଗତ ୨୦୦୭ ମସିହା ସେପ୍ଟେମ୍ବର ୧୯ ତାରିଖରେ ପୁରୀ ବେଳାଭୂମି ମଧ୍ୟକୁ ମାଡ଼ିଆସି ବନ୍ଧ ଟପିଯାଇଥିବା ଏକ ପ୍ରଳୟଙ୍କରୀ ଲହଡ଼ି ଏହାର ସୂଚନା । ଏହି ଧାରା ଅବ୍ୟାହତ ରହିଲେ ଦିନ ଆସିବ, ସମୁଦ୍ର ପୁରୀ ସହର ମଧ୍ୟରେ ପ୍ରବେଶ କରିବ ଏବଂ ମାଳିକାରେ ଉଲ୍ଲେଖ ଥିବା ବାଇଶି ପାହାଚେ ଖେଳିବ ମୀନ ପ୍ରସଙ୍ଗଟି ସତ୍ୟରେ ପରିଣତ ହେବ । ସମୁଦ୍ର ମାଡ଼ିଆସିବା ଯୋଗୁଁ ପୁରୀ ଜିଲ୍ଲାର ଅସ୍ତରଙ୍ଗ ଓ ପୁରୀ–କୋଣାର୍କ ରାସ୍ତାର ସମୁଦ୍ରକୂଳିଆ ଗାଁଗୁଡ଼ିକ ପ୍ରତି ଆତଙ୍କ ସୃଷ୍ଟି ହେଲାଣି ।

## ଉଜୁଡ଼ା କୃଷି

ଜଳବାୟୁ ପରିବର୍ତ୍ତନ ଯୋଗୁଁ ଫସଲର ଅଭିବୃଦ୍ଧି ହାରରେ ଘୋର ଅନିୟମିତତା ଦେଖାଗଲାଣି । ଉଦ୍ଭିଦର ଫୁଲ ଓ ଫଳ ଧରିବାର ସମୁଦାୟ ବଦଳି ଗଲାଣି । ଏବେ ମାର୍ଗଶୀର ମାସରେ ଆମ୍ବ ଗଛରେ ଅଦିନିଆ ବଉଳ ଧରିଲାଣି । ସେହିପରି ଶହ ଶହ ଆଦିବାସୀଙ୍କୁ ଜୀବିକା ଯୋଗାଉଥିବା ମହୁଲ ଗଛର ମଧ୍ୟ ଜଲ୍‌ଦି ଫୁଲ ଧରୁଛି । ଏହା ସାଙ୍ଗକୁ ଉଷ୍ମ ଜଳବାୟୁରେ ଫସଲର ରୋଗପୋକଙ୍କ ବଂଶବୃଦ୍ଧି ତ୍ୱରାନ୍ୱିତ ହେଉଥିବାରୁ ଉତ୍ପାଦନ ଦ୍ରୁତ ହ୍ରାସ ପାଉଛି । ମୌସୁମୀର ଅନିୟମିତତା ଯୋଗୁଁ ଓଡ଼ିଶାର ଜଳବାୟୁକୁ ନିୟନ୍ତ୍ରଣ କରୁଥିବା ପୂର୍ବଘାଟ ପର୍ବତମାଳାର ଜଙ୍ଗଲ ଏବେ ଅବକ୍ଷୟମୁଖୀ ଏବଂ ଅନେକ ପ୍ରାଣୀ ଓ ଉଦ୍ଭିଦ ପ୍ରଜାତି ବିଲୁପ୍ତ ପାଇଯାଉଛନ୍ତି ।



ଆଞ୍ଚଳିକ ବିଜ୍ଞାନ କେନ୍ଦ୍ର
ପଣ୍ଡିତ ଜବାହରଲାଲ ନେହେରୁ ମାର୍ଗ,
ଭୁବନେଶ୍ୱର

# ବିଶ୍ୱ ମାନବିକ ଅଧିକାର ଓ ଭାରତ

ଡକ୍ଟର ପୁରୁଷୋତ୍ତମ ବିଶ୍ୱାଳ

ଏହି ସଂସାରରେ ଜନ୍ମ ନେଲାବେଳେ ପ୍ରତ୍ୟେକ ମଣିଷ କିଛି ଅଧିକାରକୁ ନେଇ ଜନ୍ମଲାଭ କରିଥାଏ । ତାହାହିଁ ପ୍ରକୃତରେ ତା'ର ଜନ୍ମଗତ ଅଧିକାର ବା ମାନବିକ ଅଧିକାର । ମାନବ ସଭ୍ୟତାର କ୍ରମ ବିକାଶ ସହିତ ମନୁଷ୍ୟ ନିଜର ଅଧିକାର ସମ୍ବନ୍ଧରେ କ୍ରମଶଃ ସଚେତନ ହୁଏ । ମାନବିକ ଅଧିକାରର ଇତିହାସ ବହୁ ପ୍ରାଚୀନ । ଭାରତର ପ୍ରାଚୀନ ଗ୍ରନ୍ଥ ଋକ୍‌ବେଦ ଓ ଯଜୁର୍ବେଦ ଇତ୍ୟାଦିରେ ପ୍ରଜାମାନଙ୍କର ଅଧିକାର ଓ କର୍ତ୍ତବ୍ୟ ସଂପର୍କରେ ସ୍ପଷ୍ଟ ଉଲ୍ଲେଖ ରହିଥିବାର ଜଣାଯାଏ । ପ୍ରାଚୀନ ଗ୍ରୀସ୍ ଓ ରୋମରେ ମଧ୍ୟ ସାଧାରଣ ମଣିଷର ସ୍ୱାଧୀନତା, ମର୍ଯ୍ୟାଦା ଓ ଅଧିକାର ଉପରେ ଗୁରୁତ୍ୱ ପ୍ରଦାନ କରାଯାଉଥିଲା । ଐତିହାସିକ ସ୍ତରରେ ଇଂଲଣ୍ଡର ସମ୍ରାଟ୍ ସାର ଜନ୍‌ଙ୍କ ଦ୍ୱାରା ଜୁନମାସ ୧୫ ତାରିଖ ୧୨୧୫ ମସିହାରେ ପ୍ରଦତ୍ତ ମାଗନା କାର୍ଟା (Magna Carta) ଅନୁସାରେ ଇଂଲଣ୍ଡର ସାମନ୍ତମାନଙ୍କର ବିଶେଷ ଅଧିକାରର ଉଲଙ୍ଘନ କରାଯିବ ନାହିଁ ବୋଲି ସ୍ଥିର ହୋଇଥିଲା । ସେହିଭଳି ଇଂଲଣ୍ଡର ଗୌରବମୟ ବିପ୍ଳବ (୧୬୮୮), ଆମେରିକା ସ୍ୱାଧୀନତା ସଂଗ୍ରାମ (୧୭୭୬) ଏବଂ ଫରାସୀ ବିପ୍ଳବ (୧୭୮୯) ପ୍ରଭୃତି ମାନବିକ ଅଧିକାର ସଂପର୍କରେ ଚିନ୍ତା କରିବା ପାଇଁ ସୁଯୋଗ ସୃଷ୍ଟି କରିଥିଲା ।

ମାଗନା କାର୍ଟା, ଆମେରିକା ବିପ୍ଳବ, ଫରାସୀ ବିପ୍ଳବ ଇତ୍ୟାଦିରେ ଦେଖାଦେଇଥିବା ମାନବିକ ଅଧିକାର ଘୋଷଣାପତ୍ରରେ ଏହା ଥିଲା ନକାରାତ୍ମକ ଅଧିକାର ଭଳି । ମଣିଷର କେତେକ ମୌଳିକ ଅଧିକାରରେ ରାଷ୍ଟ୍ର ହସ୍ତକ୍ଷେପ କରିବ ନାହିଁ ବୋଲି ବ୍ୟବସ୍ଥା ଥିଲା । କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଏ ଦିଗରେ ଏକ ଆନ୍ତର୍ଜାତିକ ବ୍ୟବସ୍ଥା ଗଠନ କରିବା ନିମନ୍ତେ ଉଦ୍ୟମ ହୋଇଥିଲା । ଦୁଇଗୋଟି ବିଶ୍ୱଯୁଦ୍ଧର ବିଭୀଷିକାରେ ଆତଙ୍କିତ ମାନବ ସମାଜ ଯେତେବେଳେ ବଞ୍ଚିବା ନିମନ୍ତେ ସୁରକ୍ଷା ଓ ଶାନ୍ତିର ଅନ୍ୱେଷଣ କରୁଥିଲା ସେତିକିବେଳେ ଜନ୍ମ ନେଇଥିଲା ମିଳିତ ଜାତିସଂଘ । ୧୯୪୮ ମସିହା ଡିସେମ୍ବର ମାସ ୧୦ ତାରିଖ ଦିନ ମିଳିତ ଜାତିସଂଘର ମହାସଭାରେ ମାନବ ଅଧିକାର ସମ୍ବଳିତ ସାର୍ବଜନୀନ ଘୋଷଣାନାମା (Universal Declaration of Human Rights) ଜାରି କରାଯାଇଥିଲା । ସେଥିପାଇଁ ପ୍ରତିବର୍ଷ ଡିସେମ୍ବର ମାସ ୧୦ ତାରିଖକୁ ମାନବାଧିକାର ଦିବସ ଭାବେ ସମଗ୍ର ବିଶ୍ୱରେ ପାଳନ କରାଯାଉଛି ।

ଉକ୍ତ ଐତିହାସିକ ଉଦ୍‌ଘୋଷଣାର ପ୍ରଥମ ଅନୁଚ୍ଛେଦରେ ଉଲ୍ଲେଖ କରାଯାଇଛି ଯେ ସମସ୍ତ ମନୁଷ୍ୟ ମୁକ୍ତ ଭାବରେ ଜନ୍ମ ହୁଅନ୍ତି ଏବଂ ମର୍ଯ୍ୟାଦା ତଥା ଅଧିକାର ଦୃଷ୍ଟିରୁ ସମସ୍ତେ ସମାନ । ମାନବାଧିକାର ସଂପର୍କିତ ସାର୍ବଜନୀନ ଘୋଷଣାପତ୍ରରେ ୩୦ ଗୋଟି ଅନୁଚ୍ଛେଦ ରହିଛି । ଅନୁଚ୍ଛେଦ ୩ରୁ ୨୧ ପର୍ଯ୍ୟନ୍ତ ମଣିଷର ନାଗରିକ ଓ ରାଜନୈତିକ ଅଧିକାର ସମ୍ପର୍କରେ ଆଲୋଚନା କରାଯାଇଛି । ଏହା ମଧ୍ୟରେ ରହିଛି ବଞ୍ଚିବାର ଅଧିକାର, ସ୍ୱାଧୀନତା ଓ ସମ୍ପତ୍ତିର ଅଧିକାର ଇତ୍ୟାଦି । ଅନୁଚ୍ଛେଦ ୨୨ରୁ ୨୭ ପର୍ଯ୍ୟନ୍ତ ସାମାଜିକ, ଆର୍ଥିକ ଏବଂ ସାଂସ୍କୃତିକ ଅଧିକାରର ଆଲେଖ୍ୟ ବହନ କରେ । ଏହା ମଧ୍ୟରେ ଶିକ୍ଷା ପ୍ରାପ୍ତିର ଅଧିକାର, କାମ କରିବାର ଅଧିକାର, ବିଶ୍ରାମ ଓ ଅବକାଶ ପ୍ରାପ୍ତ କରିବାର ଅଧିକାର ଓ ସାମାଜିକ ସୁରକ୍ଷାର ଅଧିକାର ଇତ୍ୟାଦି ସ୍ଥାନ ପାଇଛି । ଅନୁଚ୍ଛେଦ ୨୮ରୁ ୩୦ ପର୍ଯ୍ୟନ୍ତ ସମାଜପ୍ରତି ବ୍ୟକ୍ତିର ଦାୟିତ୍ୱ ଓ କର୍ତ୍ତବ୍ୟ ସମ୍ପର୍କରେ ଉଲ୍ଲେଖ କରାଯାଇଛି । ମାନବିକ ଅଧିକାରକୁ ସାର୍ବଜନୀନ ଓ ସମତାବାଦୀ ଅଧିକାର ଭାବେ ବିବେଚନା କରାଯାଇଛି: କାରଣ ସମାଜରେ ଜନ୍ମ ନେଇଥିବା ପ୍ରତ୍ୟେକ ମଣିଷର ସମାନ ଅଧିକାର ରହିଛି ।

ମାନବାଧିକାର ସଂପର୍କରେ ଜାତିସଂଘ ପକ୍ଷରୁ ଜାରି କରାଯାଉଥିବା ଘୋଷଣାନାମାକୁ ଭାରତ ପକ୍ଷରୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରାଯାଇଛି । ମାନବିକ ଅଧିକାରର ସମସ୍ତ ଅନ୍ତର୍ନିହିତ ଆଦର୍ଶ, ବିଚାର ଓ ମୂଲ୍ୟବୋଧକୁ ଭାରତୀୟ ସମ୍ବିଧାନରେ ସ୍ଥାନିତ କରାଯାଇଛି । ସମ୍ବିଧାନର ପ୍ରାକ୍‌କଥନ, ମୌଳିକ ଅଧିକାର, ରାଷ୍ଟ୍ର ପରିଚାଳନାର ନୀତି ନିର୍ଦ୍ଦେଶ ଓ ମୌଳିକ କର୍ତ୍ତବ୍ୟ ଇତ୍ୟାଦିରେ ମାନବାଧିକାର ପ୍ରତିଫଳିତ

ହୋଇପାରିଛି । ଭାରତବର୍ଷର ଅଗଣିତ ଜନସାଧାରଣଙ୍କ ମାନବିକ ଅଧିକାରକୁ ସୁରକ୍ଷା ଯୋଗାଇବା ଉଦ୍ଦେଶ୍ୟରେ ୧୯୯୩ ମସିହା ସେପ୍ଟେମ୍ବର ମାସ ୨୭ ତାରିଖ ଦିନ ଜାତୀୟ ମାନବାଧିକାର ଆୟୋଗ (N.H.R.C) ପ୍ରତିଷ୍ଠାର ଘୋଷଣା କରାଯାଇଥିଲା । ଏହି ଆୟୋଗ ଦେଶରେ ମାନବିକ ଅଧିକାର ଉଲ୍ଲଙ୍ଘନ ମାମଲାର ବିଚାର କରେ । ଏହା ବ୍ୟତୀତ ରାଜ୍ୟ ସ୍ତରରେ ମାନବାଧିକାର ଆୟୋଗ ଓ ଜିଲ୍ଲା ସ୍ତରରେ ମାନବାଧିକାର ନ୍ୟାୟାଳୟ ପ୍ରତିଷ୍ଠାର ବ୍ୟବସ୍ଥା କରାଯାଇଛି । ଓଡ଼ିଶାରେ ୨୦୦୦ ମସିହା ଜାନୁୟାରୀ ମାସ ୨୭ ତାରିଖରେ ଓଡ଼ିଶା ମାନବାଧିକାର ଆୟୋଗ ଗଠନ କରାଯାଇଥିଲା । ଏହା ୨୦୦୩ ମସିହା ଜୁଲାଇ ମାସ ୧୧ ତାରିଖରୁ କାର୍ଯ୍ୟ କରୁଅଛି ।

ମାନବିକ ଅଧିକାର ଘୋଷଣାନାମାର ତେଷଠି ବର୍ଷ ଅତିକ୍ରାନ୍ତ ହୋଇସାରିଲାଣି । ତଥାପି ବିଶ୍ୱର ପ୍ରାୟ ପ୍ରତ୍ୟେକ ରାଷ୍ଟ୍ରର ପ୍ରତି ମୁହୂର୍ତ୍ତରେ ମାନବାଧିକାର ଉଲ୍ଲଙ୍ଘନର ଦୃଷ୍ଟାନ୍ତମାନ ଲୋକଲୋଚନକୁ ଆସୁଛି । ସମଗ୍ର ବିଶ୍ୱରେ ମୋଟ ଜନସଂଖ୍ୟାର ପ୍ରାୟ ଅର୍ଦ୍ଧେକ ହେଉଛନ୍ତି ମହିଳା । ପୁରୁଷପ୍ରାଧାନ୍ୟ ସମାଜରେ ମହିଳାମାନେ ସେମାନଙ୍କ ଅଧିକାର ସାବ୍ୟସ୍ତ କରିପାରୁ ନାହାନ୍ତି । ଦୀର୍ଘ ଚାରି ଦଶନ୍ଧିର ଅବିରତ ସଂଗ୍ରାମ ପରେ କୁଏଟ୍‌ର ମହିଳାମାନେ ନିର୍ବାଚନରେ ଭୋଟ ଦେବା ଓ ପ୍ରାର୍ଥୀ ହେବାର ଅଧିକାର ପାଇଲେ ମାତ୍ର ଛଅ ବର୍ଷ ତଳେ ୨୦୦୫ ମସିହାରେ । ଭାରତରେ ବି ମହିଳାମାନଙ୍କ ନିର୍ଯାତନାର ବିବରଣୀ କିଛି କମ୍ ନୁହେଁ । ମହିଳାମାନେ ସବୁ ସମୟରେ ଭ୍ରୁଣହତ୍ୟା, ଘରୋଇ ହିଂସା, ଯୌନ ଶୋଷଣ, ଶାରୀରିକ ଉତ୍ପୀଡ଼ନ, ମାନସିକ ନିର୍ଯାତନା ଓ ବଳାତ୍କାର ଇତ୍ୟାଦିର ଶିକାର ହେଉଥିବାର ସମ୍ବାଦ ଗଣମାଧ୍ୟମରେ ପ୍ରଚାରିତ ହେଉଛି । ଆମ ଦେଶର ବହୁ ଅଞ୍ଚଳରେ ବାଲ୍ୟ ବିବାହ, ଯୌତୁକଜନିତ ହିଂସା ଓ ମହିଳା ଚାଲାଣ ଇତ୍ୟାଦି ଅବୈଧ କାର୍ଯ୍ୟ ଏବେ ମଧ୍ୟ ଚାଲିଛି । ମହିଳାମାନଙ୍କ ପ୍ରାକ୍ ବୈବାହିକ ସତୀତ୍ୱ ସୁନିଶ୍ଚିତ କରିବା ପାଇଁ ଯୌନାଙ୍ଗ ଉଚ୍ଛେଦ (FGM) ଭଳି ଘୃଣ୍ୟ ବ୍ୟବସ୍ଥା ଏବେ ମଧ୍ୟ ପ୍ରଚଳିତ ହେଉଛି । କର୍ମଜୀବୀ ମହିଳାମାନେ କର୍ମକ୍ଷେତ୍ରରେ ନିଜକୁ ସୁରକ୍ଷିତ ରଖିପାରୁ ନାହାନ୍ତି ।

ବିଶ୍ୱାୟନ ଯୁଗରେ ଶିଳ୍ପାୟନ ବୃଦ୍ଧି ପାଉଥିବାରୁ ଭୂମି ଅଧିଗ୍ରହଣ ବ୍ୟବସ୍ଥା ଅପରିହାର୍ଯ୍ୟ ହୋଇପଡ଼ିଛି । ଏକବିଂଶ ଶତାବ୍ଦୀର ଭାରତରେ ବ୍ରିଟିଶ ସରକାରଙ୍କ ଦ୍ୱାରା ପ୍ରଣୀତ ଅଧିନିୟମ ଅନୁଯାୟୀ ଜମି ମାଲିକ ଓ କୃଷକମାନଙ୍କ ଅନିଚ୍ଛା ସତ୍ତ୍ୱେ ବଳପ୍ରୟୋଗପୂର୍ବକ ଜମି ଅଧିଗ୍ରହଣ ପ୍ରକ୍ରିୟା ଚାଲୁରହିଛି । ସେଥିପାଇଁ ସଂପ୍ରତି ଆମ ଦେଶର ବିଭିନ୍ନ ରାଜ୍ୟରେ କୃଷକମାନେ ମାନବାଧିକାରରୁ ବଞ୍ଚିତ ହେଉଛନ୍ତି । ପ୍ରକଳ୍ପ ପ୍ରତିଷ୍ଠା ଯୋଗୁଁ ବିସ୍ଥାପିତ ହେଉଥିବା ଦରିଦ୍ର ଜନସାଧାରଣ ଉପଯୁକ୍ତ ନ୍ୟାୟ ଓ ସୁବିଧା ପାଇପାରୁ ନାହାନ୍ତି । ଲକ୍ଷ ଲକ୍ଷ ସଂଖ୍ୟାରେ କୃଷକ ଋଣ ପରିଶୋଧ କରିନପାରି ଆତ୍ମହତ୍ୟା କରିବାକୁ ବାଧ୍ୟ ହେଉଛନ୍ତି ।

ୟୁନିସେଫ୍ ଦ୍ୱାରା ପ୍ରକାଶିତ ଏକ ରିପୋର୍ଟ ଅନୁଯାୟୀ ତୃତୀୟ ବିଶ୍ୱର ପ୍ରାୟ ୨୦ କୋଟି ଶିଶୁ ନିଜର ଜୀବିକା ନିଜେ ଚଳାଇବା ପାଇଁ ବାଧ୍ୟ ହେଉଛନ୍ତି । ବିଶ୍ୱର ସବୁଠାରୁ ବେଶି ଶିଶୁ ଶ୍ରମିକ ଭାରତରେ ରହିଛନ୍ତି, ଯେଉଁମାନଙ୍କ ସଂଖ୍ୟା ପ୍ରାୟ ୧୩ ନିୟୁତରୁ ବେଶି ହେବ । ଦେଶର ଭବିଷ୍ୟତ ଅଗଣିତ ଶିଶୁମାନେ ଉପଯୁକ୍ତ ଶିକ୍ଷା ପାଇବାର ଅଧିକାରରୁ ବଂଚିତ ହୋଇ ଶିଶୁ ଶ୍ରମିକ ଭାବେ କାଳାତିପାତ କରିବାକୁ ବାଧ୍ୟ ହେଉଛନ୍ତି । ସମ୍ଭାବନାମୟ ଶୈଶବ ପରିବର୍ତ୍ତେ ସେମାନଙ୍କ ଜୀବନ ବିପର୍ଯ୍ୟସ୍ତ ଓ ଅଭିଶପ୍ତ ହୋଇଯାଇଛି ।

ଆଜିର ବିଶ୍ୱରେ ମାନବିକ ଅଧିକାରର ପରମଶତ୍ରୁ ଭାବେ ଦେଖା ଦେଇଛି ଆନ୍ତର୍ଜାତିକ ଆତଂକବାଦ । ଓସମା ବିନ ଲାଦେନର ମୃତ୍ୟୁ ହୋଇସାରିଥିଲେ ମଧ୍ୟ ଆତଙ୍କବାଦ ଧରା ପୃଷ୍ଠରେ ଏବେବି ଜୀବିତ ରହିଛି । ଶାନ୍ତିକାମୀ ଭାରତବର୍ଷ ଆତଙ୍କବାଦୀମାନଙ୍କ ହିଂସାତ୍ମକ ଓ ଧ୍ୱଂସାତ୍ମକ କାର୍ଯ୍ୟକଳାପ ଯୋଗୁ ବିଶେଷ ଭାବେ କ୍ଷତିଗ୍ରସ୍ତ ହେଉଛି । ବାରମ୍ବାର ସଂଘଟିତ ହେଉଥିବା ହିଂସାକାଣ୍ଡ, ବିସ୍ଫୋରଣ ଓ ରକ୍ତପାତ ଫଳରେ ସାଧାରଣ ନାଗରିକମାନଙ୍କ ଧନ ଜୀବନ ଅସୁରକ୍ଷିତ ହୋଇପଡ଼ିଛି ।

ବିଶ୍ୱର ଅନେକ ଦେଶରେ ଏବେ ମଧ୍ୟ ଫାଶି ଦଣ୍ଡାଦେଶର ବ୍ୟବସ୍ଥା ରହିଛି । ଋଷ, ଆମେରିକା, ଚୀନ, ଭାରତ, ସାଉଦି ଆରବ, ପାକିସ୍ତାନ, ଭାରତ ଭଳି ଗୁରୁତ୍ୱପୂର୍ଣ୍ଣ ଦେଶମାନଙ୍କରେ ଏହି ବ୍ୟବସ୍ଥା ଆଜି ପର୍ଯ୍ୟନ୍ତ ରହିଛି । ବିଶ୍ୱର ଅନେକ ରାଷ୍ଟ୍ର ଏହି ଘୃଣ୍ୟ ବ୍ୟବସ୍ଥାର ପରିସମାପ୍ତି ଘଟାଇ ସାରିଛନ୍ତି । ଅପରାଧର ତଦନ୍ତ ବେଳେ ଅନେକ ଲୋକ ପୋଲିସ ହାଜତରେ ମୃତ୍ୟୁବରଣ କରୁଛନ୍ତି । ଏନକାଉଣ୍ଟର ନାମରେ ନିରୀହ ଲୋକମାନଙ୍କୁ ମାରି ଦିଆଯାଉଥିବାର ଦୃଷ୍ଟାନ୍ତ

ଆଜିର ସଭ୍ୟ ସମାଜରେ ମାନବିକ ଅଧିକାରର ଚରମ ଉଲଙ୍ଘନ । ତାହା ବ୍ୟତୀତ ବେଆଇନ୍ ଗିରଫ, ହାଜତରେ ବଳାତ୍କାର, ଅଶାଳୀନ ବ୍ୟବହାର, ମିଥ୍ୟା ଦୋଷାରୋପ ଭଳି ପୋଲିସ ବାହିନୀର କ୍ଷମତାର ଅପବ୍ୟବହାରର ବହୁ ଉଦାହରଣ ରହିଛି । ତାହା ସହିତ ଆମ ସମାଜରେ ନିଯୁକ୍ତି ସୁଯୋଗରେ ଅସମାନତା, ଜାତିଆଣ ଭେଦଭାବ, ଭିନ୍ନକ୍ଷମଙ୍କ ପ୍ରତି ଅବହେଳା ଓ ନିର୍ଯାତନା ଭଳି ବହୁଘଟଣା ପ୍ରତିଦିନ ଘଟୁଛି ଯାହା ସାଧାରଣ ମଣିଷର ମାନବିକ ଅଧିକାରକୁ ଉଲ୍ଲଙ୍ଘନ କରୁଛି । ମାନବାଧିକାରର ପ୍ରଧାନଶତ୍ରୁ ହେଉଛି ଆମ ସମାଜରେ ଥିବା ଆର୍ଥିକ ବୈଷମ୍ୟ ଓ ଦାରିଦ୍ର୍ୟ । ଦଳିତ ଓ ଆଦିବାସୀମାନେ ସବୁ କ୍ଷେତ୍ରରେ ଶୋଷିତ ଓ ନିର୍ଯାତିତ ହେଉଛନ୍ତି । ସଂଖ୍ୟାଲଘୁ ସଂପ୍ରଦାୟଙ୍କ ଉପରେ ଅନ୍ୟାୟ ଓ ଅତ୍ୟାଚାର ଏବେ ମଧ୍ୟ କମି ନାହିଁ ।

୨୦୧୦ ମସିହାର ନୋବେଲ ଶାନ୍ତି ପୁରସ୍କାର ମାନବାଧିକାର ପ୍ରତିଷ୍ଠା ପାଇଁ ସଂଘର୍ଷ ଜାରି ରଖିଥିବା ଚୀନର ଜଣେ ଲେଖକ ଓ ସାହିତ୍ୟ ଅଧ୍ୟାପକ ଲିଉ ଜିଆବୋଙ୍କୁ ପ୍ରଦାନ କରାଯାଇଥିଲା । ତାଙ୍କ ପୁରସ୍କାର ଘୋଷଣା କରିବା ବେଳେ ନୋବେଲ କମିଟି ଦୃଢ଼ ଭାବରେ ମତପୋଷଣ କରିଥିଲେ ଯେ ମାନବିକ ଅଧିକାର ସହିତ ବିଶ୍ୱଶାନ୍ତିର ନିବିଡ଼ ସଂପର୍କ ରହିଛି । ଏହି ୫୫ ବର୍ଷୀୟ ସମାଜକର୍ମୀ ଚୀନର ମାନବିକ ଅଧିକାର ଓ ଗଣତନ୍ତ୍ରର ପ୍ରତିଷ୍ଠା ପାଇଁ ଆନ୍ଦୋଳନ ଜାରିରଖି ଜେଲଦଣ୍ଡ ଭୋଗୁଛନ୍ତି ।

ସେହିଭଳି ୧୯୯୧ ମସିହାରେ ବିଶ୍ୱଶାନ୍ତି କ୍ଷେତ୍ରରେ ନୋବେଲ ପୁରସ୍କାର ବିଜେତା ମିଆଁମାରର ଗଣତନ୍ତ୍ର ସପକ୍ଷବାଦୀ ନେତ୍ରୀ ଅଙ୍ଗ ସାନ୍ ସୁକି ମାନବିକ ଅଧିକାର ପାଇଁ ସଂଗ୍ରାମ କରି ପନ୍ଦରବର୍ଷ ଧରି ଗୃହବନ୍ଦୀ ଭାବେ ଜୀବନ ଅତିବାହିତ କରୁଥିବାବେଳେ ୨୦୧୦ ମସିହା ନଭେମ୍ବର ମାସରେ ସେ ମୁକ୍ତ ହୋଇଥିଲେ । କେବଳ ଜିଆବୋ ବା ସାନସୁକି ନୁହନ୍ତି, ଇତିହାସରେ ମାନବାଧିକାର ପ୍ରତିଷ୍ଠା ପାଇଁ ସଂଗ୍ରାମ କରି ମହାତ୍ମା ଗାନ୍ଧି, ମାର୍ଟିନ୍ ଲୁଥର କିଙ୍ଗ୍, ନେଲସନ ମାଣ୍ଡେଲାଙ୍କ ଭଳି ବହୁ ନେତା ବିଶ୍ୱବିଖ୍ୟାତ ହୋଇପାରିଛନ୍ତି । ସଂପ୍ରତି ଶିଶୁମାନଙ୍କଠାରୁ ଆରମ୍ଭ କରି ମହିଳା, ସଂଖ୍ୟାଲଘୁ ସଂପ୍ରଦାୟ ଦଳିତବର୍ଗ ଓ ବରିଷ୍ଠ ନାଗରିକମାନେ ସମସ୍ତେ ମାନବିକ ଅଧିକାରରୁ ବଞ୍ଚିତ ହେଉଥବା ବେଳେ ଏହି ପବିତ୍ର ଅଧିକାରର ସୁରକ୍ଷା ଦିଗରେ ସବୁ ସ୍ତରରେ ଉଦ୍ୟମ ହେବା ଆବଶ୍ୟକ । ଭାରତବର୍ଷ ଭଳି ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ ପ୍ରତ୍ୟେକ ନାଗରିକ ନିକଟରେ ମାନବିକ ଅଧିକାର ସୁରକ୍ଷିତ ହୋଇପାରିଲେ ଦେଶରେ ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ ନିଶ୍ଚିତ ଭାବେ ସହାୟକ ହେବ । ସାମାଜିକ ନ୍ୟାୟର ପରିସର ବର୍ତ୍ତମାନ ଖାଦ୍ୟ, ଶିକ୍ଷା, ବାସଗୃହ, ସ୍ୱାସ୍ଥ୍ୟସେବା ଓ ଜଙ୍ଗଲ ଅଧିକାର ଭଳି ସମ୍ବେଦନଶୀଳ ପ୍ରସଙ୍ଗକୁ ସଂପ୍ରସାରିତ ହୋଇଛି । ପ୍ରତ୍ୟେକ ମଣିଷ ଚାହେଁ ଅଧିକାର ଓ ନ୍ୟାୟ । କିନ୍ତୁ ପ୍ରଚଳିତ ସାମାଜିକ ଓ ଆର୍ଥିକ ବ୍ୟବସ୍ଥା ସେଥିରେ ପ୍ରତିବନ୍ଧକ ସୃଷ୍ଟି କରୁଛି ।

ଭାରତୀୟ ସଭ୍ୟତା ଓ ସଂସ୍କୃତି ଯୁଗେ ଯୁଗେ ମାନବ କଲ୍ୟାଣ ଓ ବିଶ୍ୱମଙ୍ଗଳର ସନ୍ଦେଶ ପ୍ରଦାନ କରିଆସିଛି । ବସୁଧୈବ କୁଟୁମ୍ବକମ୍ ଓ ସର୍ବେ ଭବନ୍ତୁ ସୁଖୀନଃ ଭଳି ବିଶ୍ୱ ମାନବବାଦୀ ଚିନ୍ତାଧାରା ଭାରତର ପବିତ୍ର ମାଟିରେ ଉଦ୍ରେକ ହୋଇ ସମଗ୍ର ବିଶ୍ୱକୁ ଉଦ୍‌ଜୀବିତ କରିଥିଲା । କିନ୍ତୁ ଏବେ ଭାରତରେ ବିଶ୍ୱାୟନ ଯୁଗରେ ଅନେକ ରାଜନୈତିକ, ସାମାଜିକ, ଆର୍ଥିକ ଓ ସାଂସ୍କୃତିକ ସମସ୍ୟା ଦେଶ ଆଗରେ ଆହ୍ୱାନ ଭାବେ ମୁଣ୍ଡ ଟେକିଛି । ମୁକ୍ତ ମଣିଷର ମାନବିକ ଅଧିକାର ପ୍ରାପ୍ତି ନିମନ୍ତେ ଚାଲିଥିବା ଅବିରତ ସଂଗ୍ରାମ ଓ ଅନ୍ୱେଷଣ ଏକ ସ୍ୱଚ୍ଛ ସାମାଜିକ ବ୍ୟବସ୍ଥା ପ୍ରତିଷ୍ଠା ନିମନ୍ତେ ମାର୍ଗ ଉନ୍ମୋଚିତ କରିବ ବୋଲି ଆଶା କରାଯାଏ ।



ଶାନ୍ତିବଜାର, ଧର୍ମଶାଳା
ଜି. – ଯାଜପୁର

# ଓଡ୍ର ଜାତିର ପ୍ରାଚୀନ ପରିଚୟ

ଦୁର୍ଗାଚରଣ ପଣ୍ଡା

## ଓଡ୍ର ଜାତି

ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଓଡ଼ିଶା ପ୍ରଦେଶ ଗଠିତ ହୋଇଛି । ତେବେ, ଏହି ଓଡ଼ିଆମାନଙ୍କ ପ୍ରାଚୀନ ପରିଚୟ କଣ ? ଓଡ଼ିଆର ମୂଳ ଶବ୍ଦ ହେଉଛି 'ଓଡ଼' ବା ସଂସ୍କୃତରେ 'ଓଡ୍ର' । ପ୍ରାଚୀନ ଅଭିଧାନମାନଙ୍କରେ ଏହି ଓଡ଼ ବା ଓଡ୍ର ଶବ୍ଦର କୌଣସି ଅର୍ଥ ମିଳେ ନାହିଁ । ଅର୍ଥାତ୍ ଏହା ଏକ ମୌଳିକ ଶବ୍ଦ ହୋଇଥିବା ସମ୍ଭବ। ତେବେ ପରବର୍ତ୍ତୀ ସମୟରେ କେତେକ ଅଭିଧାନରେ ଓଡ଼ ବା ଓଡ୍ର, ଉତ୍କଳର ପ୍ରାଚୀନ ଅଧିବାସୀ ବୋଲି ଉଲ୍ଲେଖ ଅଛି । ଓଡ଼ ସାଧାରଣ ଭାବେ ଚାଷ କାର୍ଯ୍ୟ ସମ୍ପର୍କୀୟ ଏକ ଶବ୍ଦ । ପର୍ଯ୍ୟାୟକ୍ରମେ ଚାଷ କାର୍ଯ୍ୟକୁ 'ଓଡ଼ଚାଷ' କୁହାଯାଏ । ଦକ୍ଷିଣ ଓଡ଼ିଶା ସମେତ ପଶ୍ଚିମ ଓଡ଼ିଶାର କେତେକ ଚାଷୀ ସଂପ୍ରଦାୟ ଓଡ଼ିଆ ନାମରେ ପରିଚିତ । ଅନ୍ୟ କେତେକ ସ୍ଥଳେ ଏମାନେ ଖଣ୍ଡାୟତ ଓଡ଼ିଆ, ବାଣାୟତ ଓ କାଳିଞ୍ଜୀ ଓଡ଼ିଆ ଭାବେ ମଧ୍ୟ ଦେଖାଯାଆନ୍ତି । ଏଥିରୁ ପ୍ରତୀୟମାନ ହୁଏ ଯେ, ଏମାନେ ଖଣ୍ଡା ଚାଳନା, ଧନୁର୍ବାଣ ବିନ୍ଧିବାରେ ପାରଙ୍ଗମ ଥିବାବେଳେ କାଳିଞ୍ଜି ଓଡ଼ିଆମାନେ କଳିଙ୍ଗରେ ଯୋଦ୍ଧା ସୈନିକ ଥିଲେ । ଅର୍ଥାତ୍, ଏମାନେ କଳିଙ୍ଗ ଓଡ଼ିଆ । ଗଜପତି ଓ ଗୁଣପୁର ଅଞ୍ଚଳରେ ଏକ ଚାଷୀ ଗୋଷ୍ଠୀ 'ପାଇକ' ନାମରେ ପରିଚିତ । ଖୋରଧା ଓ ନୟାଗଡ଼ ଅଞ୍ଚଳରେ ମଧ୍ୟ ପାଇକ ଜାତି ଅଛନ୍ତି । ଏମାନେ ଯୋଦ୍ଧା ଜାତି ଭାବେ ସୁପରିଚିତ । 'ପାଇକ' ଶବ୍ଦର ଅର୍ଥ ପଦାତିକ ସୈନ୍ୟ । ଯୁଦ୍ଧବେଳେ ଏମାନେ ବିଭିନ୍ନ ଭାବରେ ଭାଗ ନେଉଥିଲେ । ଅର୍ଥାତ୍, ଓଡ୍ରମାନେ ଏକ କୃଷିପ୍ରଧାନ ଯୋଦ୍ଧା ଜାତି ଥିଲେ ।

## ଓଡ୍ର ଦେଶ

ଓଡ଼ମାନେ ବସବାସ କରୁଥିବା ଅଞ୍ଚଳ ପୂର୍ବେ ଓଡ୍ରଦେଶ ଭାବେ ପରିଚିତ ଥିଲା । ତେବେ, ଏହା ସହିତ ଉତ୍କଳ ଓ କଳିଙ୍ଗ ଓତପ୍ରୋତ ଭାବେ ଜଡ଼ିତ । କାରଣ ଏଠାରେ ମଧ୍ୟ ଓଡ଼ମାନେ ବସବାସ କରୁଥିଲେ । ପ୍ରାଚୀନ ଭାରତରେ ଷୋଡ଼ଶ ଜନପଦର ଖ୍ୟାତି ଥିଲା । ଏହି ତାଲିକାରେ ଓଡ୍ର, ଉତ୍କଳ କିମ୍ବା କଳିଙ୍ଗର ନାମ ନାହିଁ । ଅର୍ଥାତ୍, ସେ ସମୟରେ ଏହି ଅଞ୍ଚଳଗୁଡ଼ିକ ଅଖ୍ୟାତ ଥିଲା । ପୁରାଣ ତଥା ପ୍ରାଚୀନ କାବ୍ୟମାନଙ୍କରେ ଓଡ୍ର, ଉତ୍କଳ ଓ କଳିଙ୍ଗ ଭିନ୍ନ ଭିନ୍ନ ଭାବରେ ଉଲ୍ଲେଖ ଥିବାରୁ ଏଗୁଡ଼ିକୁ ଭିନ୍ନ ଭିନ୍ନ ଅଞ୍ଚଳ ଭାବରେ ବିବେଚନା କରାଯାଏ । ଏହା ବ୍ୟତୀତ ପଶ୍ଚିମ ଓଡ଼ିଶା ବା ଦକ୍ଷିଣ କୋଶଳକୁ ମଧ୍ୟ ଓଡ଼ିଶା ଭାବେ ଗ୍ରହଣ କରାଯାଇଛି । ପ୍ରାଚୀନ ଗ୍ରନ୍ଥ ତ୍ରିକାଣ୍ଡ କୋଷରେ ବର୍ଣ୍ଣିତ ଓଡ୍ର ଉତ୍କଳ ନାମାନଃ ବାକ୍ୟଟିକୁ ପଣ୍ଡିତମାନେ ବିଭିନ୍ନ ଭାବରେ ଅର୍ଥ କରିଥାଆନ୍ତି । ଏହା ଉତ୍କଳର ଓଡ୍ରମାନଙ୍କୁ ବୁଝାଏ । ଏଠାରେ ଉତ୍କଳ ଏକ ଦେଶ ଏବଂ ଓଡ୍ର ଏକ ଜାତି । ସ୍କନ୍ଦପୁରାଣର ଉତ୍କଳ ଖଣ୍ଡରେ ଏ ଦେଶର ତୀର୍ଥକ୍ଷେତ୍ରମାନଙ୍କ ବର୍ଣ୍ଣନା ସହ ଦେଶର ସୀମା ମଧ୍ୟ ବର୍ଣ୍ଣିତ ହୋଇଛି ।

ଋଷିକୂଲ୍ୟାଂ ସମାସାଦ୍ୟ ଦକ୍ଷିଣୋଦଧିଗାମିନୀମ୍ ।
ସ୍ୱର୍ଣ୍ଣରେଖା ମହାନଦ୍ୟୋର୍ମଧ୍ୟେ ଦେଶଃ ପ୍ରତିଷ୍ଠିତ ।।
(୬।୨୭)

ଏଥିରୁ ଜଣାଯାଏ ଯେ ଉତ୍ତରରେ ସୁବର୍ଣ୍ଣରେଖା ନଦୀଠାରୁ ମଧ୍ୟଭାଗର ମହାନଦୀ, ସମୁଦ୍ର ଉପକୂଳ ସମେତ ଦକ୍ଷିଣରେ ଋଷିକୂଲ୍ୟା ନଦୀ ପର୍ଯ୍ୟନ୍ତ ଏହି ଦେଶ ପ୍ରତିଷ୍ଠିତ ଥିଲା । ଏହି ପୁରାଣର ତଥ୍ୟକୁ ଅନୁଶୀଳନ କରି ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କହିଛନ୍ତି ଯେ ପୁରାଣ ଲିଖିତ ସମୟ ବେଳକୁ ଶ୍ରୀକ୍ଷେତ୍ର ପୁରୀ ଓ ବିରଜାକ୍ଷେତ୍ର ଯାଜପୁର ଓଡ୍ରଦେଶର ଦୁଇଟି ପ୍ରମୁଖ ତୀର୍ଥକ୍ଷେତ୍ର ଥିଲା । ପୂର୍ବେ ଓଡ୍ରଦେଶ ଏକ ତନ୍ତ୍ରପୀଠଭାବେ ଖ୍ୟାତ ଥିଲା । ଏଠାରେ ଲୋକତନ୍ତ୍ର ତଥା ବୌଦ୍ଧତନ୍ତ୍ରର ବହୁଭାବରେ ବିକାଶ ଘଟିଛି । ଏଣୁ କେତେକ ତନ୍ତ୍ର ଗ୍ରନ୍ଥରେ ଏହି ଦେଶର ସୀମା ସୂଚିତ ହୋଇଛି । ଏଥି ମଧ୍ୟରୁ ବ୍ରହ୍ମଯାମଳ ତନ୍ତ୍ରର ବର୍ଣ୍ଣନା ହୋଇଛି–

ଉଡ୍‌ଡୀୟାନ୍ ପରଂ ପୀଠଂ ଯତ୍ର ବୈତରଣୀ ନଦୀ ।
ଉଡ୍ରଭୂମି ମହାକୌଳ ଯାବତ୍ ମହେନ୍ଦ୍ର ପର୍ବତ ।।

ଅର୍ଥାତ୍, ଓଡ୍ରଦେଶର ତନ୍ତ୍ର ପରମ୍ପରା ବୈତରଣୀ ନଦୀ କୂଳ ବିରଜା କ୍ଷେତ୍ରଠାରୁ ଦକ୍ଷିଣରେ ମହେନ୍ଦ୍ର ପର୍ବତ ପର୍ଯ୍ୟନ୍ତ ଥିଲା । ଏହିପରି ବିଭିନ୍ନ ପୁରାଣ ଓ ଶାସ୍ତ୍ରରୁ ଓଡ୍ରଦେଶ ସୀମା ବର୍ଣ୍ଣନାରେ ପାର୍ଥକ୍ୟ ଦେଖିବାକୁ ମିଳେ ।

ଓଡ୍ରଦେଶ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ରାଜତନ୍ତ୍ର ଦ୍ୱାରା ଶାସିତ ହୋଇଛି । ଏମାନଙ୍କ ଐତିହାସିକ ନଥିପତ୍ର ତଥା ଅଭିଲେଖମାନଙ୍କରେ ଏହି ଦେଶର ବିଭିନ୍ନ ନାମକରଣ ଦେଖିବାକୁ ମିଳେ । ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରେ ରାଜା ହର୍ଷବର୍ଦ୍ଧନ ଓଡ୍ରଦେଶର ଚାରିଗୋଟି ଅଞ୍ଚଳକୁ ନେଇ 'ଓଡ଼ବିଷୟ' ନାମରେ ନାମିତ କରିଥିଲେ । ସେଗୁଡ଼ିକ ଥିଲା ଓଡ୍ର, କଳିଙ୍ଗ, ତୋଷାଳି ଓ କଙ୍ଗୋଦ । (Epigraphica Indica, Vol.XXIII, P. 202) ଲାମା ତାରାନାଥଙ୍କ ବୌଦ୍ଧ ଗ୍ରନ୍ଥ, ରହସ୍ୟମୟ ଗଳ୍ପ ଓ ପନ୍ ସାମ୍-ଜାନ୍-ଇଙ୍ଗ୍ ନାମକ ପୁସ୍ତକରେ ଏହି ଦେଶକୁ 'ଓଡ଼ଡ୍‌ବସ୍' ଭାବରେ ଉଲ୍ଲେଖ କରାଯାଇଛି । ଚୀନ୍ ପରିବ୍ରାଜକ ହୁଏନ୍-ସାଂ ତାଙ୍କ ଭ୍ରମଣ ବୃତ୍ତାନ୍ତରେ ଓଡ୍ରବିଷୟ ନାମରେ ସୂଚିତ କରିଛନ୍ତି । ସେହିପରି ମୁସଲମାନ ରାଜତ୍ୱ ସମୟରେ ଏହି ଦେଶକୁ 'ଓଡ଼ବାଜୀ' ଓ ଓଡ଼ଦେଶ ନାମରେ ନାମିତ କରାଯାଇଥିବା ଜଣାଯାଏ । ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀରେ ଐତିହାସିକ ଆଲବରୁଣି ତାଙ୍କ ପୁସ୍ତକରେ ଓଡ୍ରଦେଶକୁ ଓଡ଼ବସଡ଼ ବୋଲି ଉଲ୍ଲେଖ କରିଛନ୍ତି ।

## ଓଡ୍ର ଭାଷା ଓ ଲିପି

ଓଡ୍ର ବା ଓଡ଼ିଆ ଭାଷାର ସୃଷ୍ଟି କେବେ ଓ କିପରି ତାହା ଜାଣିବା କଷ୍ଟକର ବ୍ୟାପାର । ଖ୍ରୀଷ୍ଟପୂର୍ବ ୧ମ ଖ୍ରୀ. ୧ମ ଶତାବ୍ଦୀରେ ରଚିତ ଭରତ ମୁନିଙ୍କ ନାଟ୍ୟ ଶାସ୍ତ୍ରରେ ଓଡ୍ର ବିଭାଷା, ଓଡ୍ର ପ୍ରବୃତ୍ତି ଓ ଓଡ୍ରମାଗଧୀ ନୃତ୍ୟଶୈଳୀ ବିଷୟରେ ଉଲ୍ଲେଖ ଅଛି । ଏହି ବିଭାଷା ଶବ୍ଦଟି ଭାଷାର ଅପରିପକ୍ୱତା ତଥା ଅଶୁଦ୍ଧତାର ସୂଚନା ଦିଏ । ଅର୍ଥାତ୍ ଖ୍ରୀଷ୍ଟପୂର୍ବ ଶତାବ୍ଦୀ ବେଳକୁ ଓଡ୍ରଭାଷାର ସ୍ଥିତି ଥିଲେ ସୁଦ୍ଧା ଏହା ଏକ ଦୁର୍ବଳ ଭାଷା ଥିଲା । ପ୍ରାକୃତ ସର୍ବସ୍ୱ ଗ୍ରନ୍ଥରେ ଓଡ୍ରବିଭାଷା ସମ୍ପର୍କରେ ଉଲ୍ଲେଖ ଥିବା ତଥ୍ୟର ସଂସ୍କୃତ ଟୀକାରେ କୁହାଯାଇଛି ''ତଦ୍ଦେଶାନାଂ ଓଡ୍ରଦେଶ ପଦାନାଂ ସୌରସେନାଦି ପଦାନାଂଚ ଯୋଗାତ୍ ଶଙ୍କରାବଚ୍ଛାବର୍ଯ୍ୟାମେବ ଔଡ୍ରୀ ସିଧ୍ୟତି'' । ଏହାର ଅର୍ଥ ହେଉଛି ଓଡ୍ରୀ ଏକ ମିଶ୍ରଭାଷା, ଯାହାକି ଓଡ୍ରଦେଶର ଲୌକିକ ଭାଷା ଓ ସୌରସେନୀ, ପୁଣି ଆଦିବାସୀମାନଙ୍କ ଭାଷାର ସଂଶ୍ଳେଷଣ ।

କେତେକ ପ୍ରାଚୀନ ବ୍ୟାକରଣ ଓ ବୌଦ୍ଧ ଗ୍ରନ୍ଥରେ ଓଡ୍ର ଲିପି ବିଷୟରେ ସୂଚନା ମିଳେ । ଏହା ଉପରେ ଭିତ୍ତିକରି ଢ ଜଗବନ୍ଧୁ ସିଂହ ତାଙ୍କ ପ୍ରାଚୀନ ଉତ୍କଳ ପୁସ୍ତକରେ କିଛି ତଥ୍ୟ ଦେଇଛନ୍ତି । ଓଡ଼ିଆ ସାହିତ୍ୟର ଗବେଷକମାନେ ଓଡ଼ିଆ ଭାଷା ଓ ଲିପିର ପ୍ରାଚୀନତା ଦର୍ଶାଇବାକୁ ଯାଇ ଏହି ବିଷୟଟି ଉଲ୍ଲେଖ କରିଥାଆନ୍ତି, ଏହା ହେଉଛି–

''ପ୍ରାକୃତ ଲଙ୍କେଶ୍ୱରୀ ବ୍ୟାକରଣରେ ଶାସ୍ତ୍ରୀୟ ଅଷ୍ଟାଦଶ ଭାଷାର ନାମ ଉଲ୍ଲେଖ ଅଛି । ଏହି ଅଷ୍ଟାଦଶ ଭାଷା ମଧ୍ୟରେ ଉଡ଼ିୟା ବା ଓଡ୍ରିୟା ଭାଷାର ନାମ ଉଲ୍ଲେଖ ଅଛି । ଲଳିତବିସ୍ତର ଗ୍ରନ୍ଥରେ ଲେଖାଅଛି ଯେ ଆଚାର୍ଯ୍ୟ ବିଶ୍ୱାମିତ୍ର ଲିପି ଶିକ୍ଷା ପ୍ରଦାନ କରିବା ପୂର୍ବରୁ ବୁଦ୍ଧଦେବ ୬୪ ପ୍ରକାର ଲିପି ଶିକ୍ଷା କରିଥିଲେ । ବୁଦ୍ଧଦେବ ଯେଉଁ ୬୪ ପ୍ରକାର ଲିପି ଶିକ୍ଷା କରିଥିଲେ ସେଥିମଧ୍ୟରେ  ଉଗ୍ରଲିପି ନାମ ଉଲ୍ଲେଖ ଅଛି । ସମ୍ଭବତଃ ଉଡ୍ରଲିପି ଉଗ୍ରଲିପି ବୋଲି ଲେଖାଅଛି । ଜୈନମାନଙ୍କର ସମବାୟ ସୂତ୍ର ଓ ପ୍ରଜ୍ଞାପନ ସୂତ୍ର ଗ୍ରନ୍ଥରେ ଦାସ ଓଡ଼ିଆ ଓ ଦାସ ପୁରିଆ ଲିପିର ନାମ ଉଲ୍ଲେଖ ଅଛି । ନନ୍ଦିସୂତ୍ର ନାମକ ଅନ୍ୟ ଏକ ଜୈନ ଗ୍ରନ୍ଥରେ ଛତ୍ରିଶ ପ୍ରକାର ଲିପି କଥା ଲେଖା ଅଛି । ସେଥିରେ ଉଡ୍ରୀ ଲିପି ନାମ ଉଲ୍ଲେଖ ଅଛି ।'' (ପ୍ରାଚୀନ ଉତ୍କଳ, ପୃ-୬୦, ୧୯୨୯)

ସୂଚନାଯୋଗ୍ୟ ଯେ, ଗୌତମ ଜ୍ଞାନାର୍ଜନ ନିମନ୍ତେ ବିଭିନ୍ନ ଗୁରୁଙ୍କ ଠାରୁ ଶିକ୍ଷାଲାଭ କରିଥିଲେ । ସେ ସମୟରେ ସଂସ୍କୃତ ଭାଷା ଧର୍ମ ଶିକ୍ଷାର ମାଧ୍ୟମ ଥିଲା । ଏଣୁ ସେ ସଂସ୍କୃତ ଭାଷା ନିଶ୍ଚିତ ଭାବେ ଜାଣିଥିବେ । ଗୌତମ ବୁଦ୍ଧତ୍ୱ ଲାଭ କଲା ପରେ ସେ ତାଙ୍କ ଧର୍ମବାଣୀକୁ ଉତ୍ତର ପୂର୍ବ ଭାରତରେ ପ୍ରଚଳିତ ଥିବା ଲୋକଭାଷା 'ପାଲି'ରେ ପ୍ରଚାର କରିଥିଲେ । ବୁଦ୍ଧ ତାଙ୍କ ଜୀବଦ୍ଦଶା ମଧ୍ୟରେ ଅନ୍ୟ କୌଣସି ଭାଷାରେ ଧର୍ମ ପ୍ରଚାର କରିଥିବା ବିଷୟ ଜଣାଯାଏ ନାହିଁ । ଏହା ବ୍ୟତୀତ ସେ ତାଙ୍କ ଧର୍ମ ବାଣୀଗୁଡ଼ିକ କୌଣସି ଲିପିରେ ଲେଖି ନାହାନ୍ତି । ଏହି ପରିସ୍ଥିତିରେ ଗୌତମ ବୁଦ୍ଧ ୬୪ ଭାଷା ଓ ଲିପି ଜାଣିଥିଲେ ବୋଲି କିପରି ବିଶ୍ୱାସ କରିବା । ଲଙ୍କେଶ୍ୱରୀ ବ୍ୟାକରଣ ଓ ଜୈନ ଗ୍ରନ୍ଥଗୁଡ଼ିକରେ ଯାହା ଲେଖାଥାଉନା କାହିଁକି, ସେଗୁଡ଼ିକର ପ୍ରମାଣ ଆବଶ୍ୟକ । ନିଷ୍ପାପର ଗବେଷଣାରେ ପ୍ରମାଣବିହୀନ ତଥ୍ୟଗୁଡ଼ିକ ମୂଲ୍ୟହୀନ ହୋଇପଡ଼େ । ବୁଦ୍ଧଦେବଙ୍କ ସମୟରେ ଯଦି ଓଡ୍ର ଲିପିର ସ୍ଥିତି ଥାଆନ୍ତା ତେବେ ଏହାର ପ୍ରମାଣ ସାହିତ୍ୟ, ଧର୍ମଶାସ୍ତ୍ର,

ମୃତ୍‌ପାତ୍ର କିମ୍ବା ଅଭିଲେଖମାନଙ୍କରେ ଅବଶ୍ୟ ପ୍ରାପ୍ତ ହୁଅନ୍ତା । ତଥ୍ୟ ଅନୁଯାୟୀ ଖ୍ରୀ.୬ଷ୍ଠ-୭ମ ଶତାବ୍ଦୀରେ ଓଡ଼ିଆ ଲିପି ଅଙ୍କୁରିତ ହୋଇଥିଲେ ସୁଦ୍ଧା ବ୍ରାହ୍ମୀ, ନାଗରୀ ଓ ତା'ର ରୂପାନ୍ତରିତ ଲିପିଠାରୁ ବିଚ୍ଛିନ୍ନ ହୋଇ ଖ୍ରୀ.୧୩ଶ-୧୪ଶ ଶତାବ୍ଦୀ ବେଳକୁ ନିଜସ୍ୱ ରୂପରେ ପୂର୍ଣ୍ଣତା ଲାଭ କଲା । ଏହା ପରେ ପରେ ଓଡ଼ିଆ ଭାଷାରେ ସୃଷ୍ଟି ହେଲା ଲିଖିତ ସାହିତ୍ୟ ।

## ଓଡ୍ର ସଂସ୍କୃତି

ବେଦ ଓ ବୈଦିକ ସାହିତ୍ୟରେ ଓଡ୍ର , ଉତ୍କଳ କିମ୍ବା କଳିଙ୍ଗ ଦେଶର ନାମ ଦେଖିବାକୁ ମିଳେ ନାହିଁ । ମହାଭାରତ ଗ୍ରନ୍ଥରେ ଓଡ୍ର ଓ କଳିଙ୍ଗସେନା ଯୁଦ୍ଧରେ ଭାଗ ନେଇଥିବା ଉଲ୍ଲେଖ ଅଛି । ତେବେ ଏହାର ଗୋଟିଏ ଶ୍ଲୋକରେ ଓଡ୍ରମାନେ ମ୍ଳେଚ୍ଛ ବୋଲି କୁହାଯାଇଛି ।

କିରାତାବର୍ବରାଃ ସିଦ୍ଧା ବିଦେହା ସ୍ତାମ୍ରଲିପ୍ତକାଃ ।
ଓଡ୍ରାମ୍ଳେଚ୍ଛା ସୈରିନ୍ଧ୍ରାଃ ପାର୍ବତୀୟାଶ୍ୱମାରିଷ ।।
(ଭୀଷ୍ମପର୍ବ-୯।୬୭)

ମନୁସ୍ମୃତିରେ ମଧ୍ୟ ଓଡ୍ରମାନେ ମ୍ଳେଚ୍ଛ ଓ ପତିତ କ୍ଷତ୍ରିୟ ବୋଲି ଉଲ୍ଲେଖ ଅଛି । ଜୈନ ହରିବଂଶ ଗ୍ରନ୍ଥରେ କୁହାଯାଇଛି ଯେ ତୀର୍ଥାଟନରେ ଏହି ଦେଶକୁ ଆସିବା ପରେ ପ୍ରାୟଶ୍ଚିତ୍ତ କରିବା ବିଧେୟ । ଚୀନ ପରିବ୍ରାଜକ ହୁଏନ୍-ସାଂ ଖ୍ରୀ.୭ମ ଶତାବ୍ଦୀରେ ଭାରତ ଭ୍ରମଣରେ ଆସିଥିଲେ । ସେ ତାଙ୍କ ଭ୍ରମଣ ବୃତ୍ତାନ୍ତରେ ଲେଖିଛନ୍ତି ଯେ 'ଓଡ୍ରଦେଶର ଉର୍ବର ଭୂମିରେ ସକଳ ପ୍ରକାର ଶସ୍ୟ ହେଉଥିଲା । ଦେଶର ଅଧିକାଂଶ ଅଧିବାସୀ ଅସଭ୍ୟ ଥିଲେ, ମାତ୍ର ବିଦ୍ୟାନୁରାଗୀ ଥିଲେ । ଅନ୍ୟ କେତେକ ସ୍ଥଳରେ ଏମାନଙ୍କୁ 'ବର୍ବର' ବୋଲି ମଧ୍ୟ କୁହାଯାଇଛି । ଓଡ଼ିଶାର କେତେକ ବିଦ୍ୱାନ ବିଭିନ୍ନ ପ୍ରକାର ଯୁକ୍ତି ଦର୍ଶାଇ ମ୍ଳେଚ୍ଛ , ଅସଭ୍ୟ ଓ ବର୍ବର ଶବ୍ଦଗୁଡ଼ିକ ଓଡ୍ର ଜାତିପ୍ରତି ପ୍ରଯୁଜ୍ୟ ନୁହେଁ ବୋଲି କହିଛନ୍ତି । ତେବେ ଇତିହାସ ଗବେଷଣାରେ ପ୍ରାଚୀନ ତଥ୍ୟଗୁଡ଼ିକୁ ଯୁକ୍ତିଦ୍ୱାରା ଖଣ୍ଡନ ନ କରି ବରଂ ତା'ର ପ୍ରମାଣ ଖୋଜାଯାଏ । ଐତିହାସିକ ବ୍ଲନୀଙ୍କ ମତରେ ଓଡ୍ରମାନେ ଶବର ଓ ମୁଣ୍ଡାଭଳି କେତେକ ନିମ୍ନ ଶ୍ରେଣୀର ଆଦିବାସୀଙ୍କ ସହିତ ବସବାସ କରୁଥିଲେ । ଏଣୁ ଏମାନଙ୍କୁ ମ୍ଳେଚ୍ଛ ଓ ବର୍ବର କୁହାଯାଉଥିବା ସମ୍ଭବ । ପରବର୍ତ୍ତୀ ସମୟରେ ଐତିହାସିକ ମଜୁମଦାର ବହୁ ତଥ୍ୟ ଅନୁଶୀଳନ କରି ଓଡ୍ରମାନେ ପୂର୍ବେ ଏକ ଅନୁନ୍ନତ ଜାତି ଥିଲେ ବୋଲି କହିଛନ୍ତି । ଏହାର ପ୍ରମାଣସ୍ୱରୂପ ଯୁଗ ଯୁଗ ଧରି ଓଡ୍ରମାନଙ୍କ ଉପରେ ଶାବର ପ୍ରଭାବ ରହି ଆସିଛି । ଯାହାଦ୍ୱାରା ଶାବର ଦାରୁଦେବତା ଜଗନ୍ନାଥଙ୍କୁ ଏମାନେ ଇଷ୍ଟ ଦେବତା ତଥା ରାଷ୍ଟ୍ରଦେବତା ଭାବେ ଗ୍ରହଣ କରିଛନ୍ତି । ଶାବର ଧର୍ମ ଓ ସଂସ୍କୃତିରେ ତନ୍ତ୍ରପୂଜାର ବଳିଷ୍ଠ ପରମ୍ପରା ରହିଛି । ଏହି ପରମ୍ପରା ଓଡ୍ରଦେଶରେ ପ୍ରଚଳିତ ଥିବାରୁ ଏହି ସ୍ଥାନକୁ ତନ୍ତ୍ରର ଏକ ପ୍ରମୁଖ ପୀଠ ଭାବେ ଗ୍ରହଣ କରାଯାଏ । ପ୍ରମାଣସ୍ୱରୂପ ଯଥାକ୍ରମେ କାଳିକା ପୁରାଣ ଓ ଗନ୍ଧର୍ବ ତନ୍ତ୍ରର ଦୁଇଟି ଶ୍ଳୋକ ଉଲ୍ଲେଖଯୋଗ୍ୟ ।

ଓଡ୍ରାଖ୍ୟଂ ପ୍ରସଙ୍ଗ ପୀଠଂ ଦ୍ୱିତୀୟଂ ଜାଳଶୈଳକମ୍ ।
ତୃତୀୟଂ ପୂର୍ଣ୍ଣପୀଠନ୍ତୁ କାମରୂପଂ ଚତୁର୍ଥକମ୍ ।
(୬୪/୪୩)

ଉଡ୍ଡୀୟାନଂ ମହାପୀଠଂ ଛାୟାପୁରମତଃ ପରମ୍ ।(୧୦/୯୧)

ଭାଗବତ ପୁରାଣ ଓ ଗୀତାର ତଥ୍ୟ ଅନୁସାରେ ଭାରତୀୟ ଧର୍ମାଚରଣ ତିନି ଧାରାରେ ପ୍ରଚଳିତ ଥିଲା । ଉଚ୍ଚ ଶ୍ରେଣୀର ବିଦ୍ୱାନମାନେ ବୈଦିକ ଦେବତାମାନଙ୍କୁ ମଧ୍ୟଶ୍ରେଣୀୟ ଗୋଷ୍ଠୀ ଯକ୍ଷଭଳି ଉପଦେବତାମାନଙ୍କୁ ଓ ନିମ୍ନ ଶ୍ରେଣୀର ଲୋକମାନେ ଭୂତପ୍ରେତ ଓ ପିଶାଚଭଳି ଅପଦେବତାମାନଙ୍କୁ ପୂଜା କରୁଥିଲେ ।

ଯଜନ୍ତେ ସାତ୍ତ୍ୱିକା ଦେବାନ୍ ଯକ୍ଷରକ୍ଷାଂସି ରାଜସାଃ ।
ପ୍ରେତାନ୍ ଭୂତଗଣାଂଶ୍ଚାନ୍ୟେ ଯଜନ୍ତେ ତାମସା ଜନାଃ ।।
(ଶ୍ରୀମଦ୍‌ଭଗବଦ୍‌ଗୀତା- ୧୭/୪)

ଏହା ବ୍ୟତୀତ ବନବାସୀମାନେ ବୃକ୍ଷ ଓ ନାଗଦେବତାଙ୍କୁ ପୂଜା କରୁଥିବା ଜଣାଯାଏ । ପ୍ରାଚୀନ ତୋଶାଳି ଓଡ୍ରଦେଶର ଏକ ପ୍ରମୁଖ ସାଂସ୍କୃତିକ କେନ୍ଦ୍ର ଥିଲା । ଏହି ସ୍ଥାନ ବର୍ତ୍ତମାନ ଭୁବନେଶ୍ୱର ଭାବେ ପରିଚିତ । ଏଠାରୁ ସେ ସମୟର ନାଗ, ନାଗନାଗୀ ଦେବତା ସହିତ କେତୋଟି ଯକ୍ଷ ମୂର୍ତ୍ତି ମଧ୍ୟ ମିଳିଛି । ସେଗୁଡ଼ିକ ଭୁବନେଶ୍ୱରସ୍ଥ ରାଜ୍ୟ ସଂଗ୍ରହାଳୟରେ ରଖାଯାଇଛି । ଏହା ବ୍ୟତୀତ ନିକଟସ୍ଥ ବଡ଼ଗଡ଼ ଓ ପାଞ୍ଚଗାଁରେ ମଧ୍ୟ ଏହି ପ୍ରକାର କେତେକ ମୂର୍ତ୍ତି ରହିଛି । ଏଗୁଡ଼ିକ ଅତି ପ୍ରାଚୀନ ଅର୍ଥାତ୍ ଖ୍ରୀ.ପୂ.୫ମ -୪ର୍ଥ ଶତାବ୍ଦୀର ବୋଲି ଅନୁମାନ କରାଯାଏ ।

ଓଡ୍ର ସଂସ୍କୃତିର ଅନ୍ୟ ଏକ ବଳିଷ୍ଠ ଦିଗ ହେଉଛି ଏହାର ନୃତ୍ୟ ଓ ସଙ୍ଗୀତ କଳା । ଏହାର ସ୍ୱାତନ୍ତ୍ର୍ୟ ଯୋଗୁଁ ନାଟ୍ୟଶାସ୍ତ୍ର ରଚୟିତା ଭରତ ମୁନି ଏହାକୁ ଓଡ୍ର ପ୍ରବୃତି ଓ ଓଡ୍ର ମାଗଧୀ ନୃତ୍ୟଶୈଳୀ ବିଷୟ ଉଲ୍ଲେଖ କରିଛନ୍ତି । ତେବେ ଓଡ୍ରଦେଶରେ ପ୍ରାଚୀନ ନୃତ୍ୟ କଳାର ପ୍ରତ୍ନତାତ୍ତ୍ୱିକ ପ୍ରମାଣ ରହିଥିବାବେଳେ ମଗଧ ବା ବିହାର ପ୍ରଦେଶରେ ସେପରି କୌଣସି ପ୍ରମାଣ କିମ୍ବା ପରମ୍ପରା ନାହିଁ । ମନେହୁଏ ଅଶୋକଙ୍କ ସମୟରେ ଓଡ୍ରଦେଶର ନୃତ୍ୟବିତ୍‌ମାନେ ମଗଧ ଯାଇଥିଲେ । ଏହି ପରମ୍ପରା ସେଠାରେ କିଛିକାଳ ରହିବା ପରେ ଲୋପ ପାଇଯାଇଛି । ଓଡ୍ରଦେଶ ପ୍ରାଚୀନ ନୃତ୍ୟ ସଙ୍ଗୀତର ପ୍ରମାଣ ଏହିକି ସମ୍ରାଟ ଅଶୋକ ତାଙ୍କ ରାଜତ୍ୱ ସମୟରେ ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିର ନିକଟରେ ଏକ ସ୍ତମ୍ଭ ନିର୍ମାଣ କରିଥିଲେ । ଏହି ସ୍ତମ୍ଭର ଉପର ଭାଗରେ ଏକ ସିଂହ ମୂର୍ତ୍ତି ଏବଂ ସ୍ତମ୍ଭ ଚାରିପାଖରେ ଥିବା ରେଲିଙ୍ଗ ବାଡ଼ରେ ବିଭିନ୍ନ ପ୍ରକାର ମୂର୍ତ୍ତି ଖୋଦିତ ହୋଇଥିଲା । ସେଥି ମଧ୍ୟରୁ ଗୋଟିଏ ସ୍ଥାନରେ କେତେକ ବ୍ୟକ୍ତି ବିଭିନ୍ନ ପ୍ରକାର ବାଦ୍ୟ ଯନ୍ତ୍ର ବାଦନ କରୁଥିବା ଦୃଶ୍ୟ ଦେଖିବାକୁ ମିଳେ । ଏହିସବୁ ପ୍ରତ୍ନାବଶେଷଗୁଡ଼ିକ ବର୍ତ୍ତମାନ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ରହିଛି । ଭୁବନେଶ୍ୱରସ୍ଥିତ ଖଣ୍ଡଗିରି, ଉଦୟଗିରି ଗୁମ୍ଫାଗୁଡ଼ିକ ସମ୍ରାଟ ଖାରବେଳଙ୍କ ଖ୍ରୀ.୧ମ ଶତାବ୍ଦୀର କୀର୍ତ୍ତି । ଏଠାରେ ଥିବା ରାଣୀଗୁମ୍ଫାର ମୂର୍ତ୍ତି କଳାରେ ସମ୍ରାଟ ଖାରବେଳଙ୍କ ରାଜଉଆସରେ ହେଉଥିବା ନୃତ୍ୟ, ସଂଗୀତର ଦୃଶ୍ୟ ଓ ଗଣେଶ ଗୁମ୍ଫାରେ ସର୍ବସାଧାରଣ ସ୍ଥାନରେ ନଟନଟୀଙ୍କ ନୃତ୍ୟ ଦୃଶ୍ୟ ଏହାର ପ୍ରକୃଷ୍ଟ ଉଦାହରଣ । ଏହା ବ୍ୟତୀତ ଭୁବନେଶ୍ୱରର ଖ୍ରୀ.୭ମ ଶତାବ୍ଦୀର ପରଶୁରାମେଶ୍ୱର ମନ୍ଦିରର ନର୍ତ୍ତକ ଓ ବାଦକମାନଙ୍କ ମନୋଜ୍ଞ ନୃତ୍ୟକଳା ଦୃଶ୍ୟ ଉଲ୍ଲେଖଯୋଗ୍ୟ । ଏହି ପ୍ରକାର ଗବାକ୍ଷ ମୂର୍ତ୍ତିକଳାରେ କେତେକ ନର୍ତ୍ତକଙ୍କ ଦୃଶ୍ୟ କପିଳେଶ୍ୱର ମନ୍ଦିର ପରିସରରେ ମଧ୍ୟ ରହିଛି ।

ପଥରଖୋଦେଇ ଶିଳ୍ପକଳାରେ ଓଡ୍ରଦେଶ ଶିଳ୍ପୀମାନଙ୍କ ଦକ୍ଷତା ଥିଲା । ପ୍ରଥମେ ସେମାନେ ନିଜ ଗ୍ରାମ ଓ ନଗର ନିମନ୍ତେ ଲୋକଦେବତା, ଯକ୍ଷ, ନାଗନାଗୀ ମୂର୍ତ୍ତିମାନ ନିର୍ମାଣ କରୁଥିଲେ । ମୌର୍ଯ୍ୟସମ୍ରାଟ ଅଶୋକଙ୍କ ସମୟରେ ସେମାନେ ଧଉଳି ପାହାଡ଼ରେ ତାଙ୍କ ଶିଳାଲେଖ ସହିତ ଭାବପୂର୍ଣ୍ଣ ଶାନ୍ତିର ପ୍ରତୀକ ହସ୍ତୀ ମୂର୍ତ୍ତିଟି ଖୋଦନ କରି ନିଜ ଶିଳ୍ପକଳାର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ଏହା ବ୍ୟତୀତ ଖାରବେଳଙ୍କ ସମୟରେ ଖଣ୍ଡଗିରି, ଉଦୟଗିରିର ଗୁମ୍ଫାଖୋଦନ ମଧ୍ୟ ସେମାନଙ୍କ କଳା ଓ ସ୍ଥାପତ୍ୟରେ ନିପୁଣତା ପ୍ରତିପାଦନ କରେ । ପରବର୍ତ୍ତୀ ସମୟରେ ଓଡ୍ର ଶିଳ୍ପୀମାନେ ନିଜସ୍ୱ ଶୈଳୀରେ ମନ୍ଦିରମାନ ନିର୍ମାଣ କରିଥିଲେ । ଏହି ସ୍ୱତନ୍ତ୍ର ଶୈଳୀ କଳିଙ୍ଗ ଶୈଳୀମନ୍ଦିର ଭାବେ ଖ୍ୟାତି ଅର୍ଜନ କରିଛି । ବହୁ କାଳରୁ ଅଦ୍ୟାବଧି ଓଡ଼ିଶା ଏକ ଅନୁନ୍ନତ ତଥା ପଛୁଆ ରାଜ୍ୟଭାବେ ପରିଗଣିତ । ଏହାର ପ୍ରାକୃତିକ ସ୍ଥିତି ଏହା ନିମନ୍ତେ ବହୁ ଭାବରେ ଦାୟୀ । ପ୍ରତିବର୍ଷ ବନ୍ୟା ଓ ସମୟେ ସମୟେ ମରୁଡ଼ି ଲୋକଙ୍କ ମେରୁଦଣ୍ଡ ଭାଙ୍ଗିଦିଏ । ଦୀର୍ଘଦିନ ଦେଶ ସ୍ୱାଧୀନତା ପରେ ମଧ୍ୟ ଏହାର କୋଣ ଅନୁକୋଣରେ ଅଶିକ୍ଷା, ଅଜ୍ଞତା ଅଭାବ ଅନଟନ ଭରିରହିଛି । ଏହାସତ୍ତ୍ୱେ ଓଡ୍ରଦେଶର ମହାନ୍ ଜଗନ୍ନାଥ ସଂସ୍କୃତି ଓ ମନ୍ଦିର କଳା ଓ ସ୍ଥାପତ୍ୟ ପୃଥିବୀରେ ଏହି ଦେଶର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଛି ।



ସିନେମାହଲ ସାହି
ଛତ୍ରପୁର-୭୬୧୦୨୦

# ଡାକ୍ତର ବିକ୍ରମ ଦାସଙ୍କ ସାରସ୍ୱତ ସାଧନା

**ଡକ୍ଟର କୁମୁଦିନୀ ମିଶ୍ର**

ଡାକ୍ତର ବିକ୍ରମ ଦାସ ଓଡ଼ିଶାର ଜଣେ ସ୍ୱନାମଧନ୍ୟ ଡାକ୍ତର, ପାଥୋଲଜି ପ୍ରଫେସର । ଯୁକ୍ତରାଷ୍ଟ୍ର ଆମେରିକାରୁ ସେ ପାଥୋଲଜି ବିଜ୍ଞାନରେ ସ୍ନାତକୋତ୍ତର ଉପାଧି ଲାଭ କରିବା ସହ ନିଦାନ ଶାସ୍ତ୍ର ଶିକ୍ଷା କ୍ଷେତ୍ରରେ ତାଙ୍କ ଅବଦାନ ଲାଗି Indian College of Pathologist ତରଫରୁ Founder Fellow (F.I.C.P) ଉପାଧିରେ ଭୂଷିତ ହୋଇଥିଲେ ।

ବିକ୍ରମ ଦାସଙ୍କ ଜୀବନୀ ଅନୁଧ୍ୟାନ କଲେ ଜଣାଯାଏ ସବୁଦିଗରୁ ପରିପୂର୍ଣ୍ଣ ଥିଲା ତାଙ୍କ ଜୀବନ । ବାଗ୍‌ଦେବୀଙ୍କ ବରପୁତ୍ର ରୂପେ ସେ ଖ୍ରୀ. ୧୯୨୧ ଫେବୃୟାରୀ ୧୩ ତାରିଖ ସରସ୍ୱତୀ ପୂଜା ତିଥିରେ ହିଁ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପରିବାର ଥିଲା ଓଡ଼ିଶାର ଏକ ଅଗ୍ରଗଣ୍ୟ ସଂଭ୍ରାନ୍ତ ପରିବାର । ପିତା ତାଙ୍କର ଓଡ଼ିଶା ପ୍ରଦେଶର ଅନ୍ୟତମ ନିର୍ମାତା, ସ୍ୱାଧୀନତା ସଂଗ୍ରାମର ପଥପ୍ରଦର୍ଶକ, ସତ୍ୟବାଦୀ ନାଳନ୍ଦାର ଜ୍ଞାନଗୁରୁ ମହାମନୀଷୀ ପଦ୍ମଭୂଷଣ ପଣ୍ଡିତ ନୀଳକଣ୍ଠ ଦାସ, ମାତା ତାଙ୍କର ସ୍ୱାଧୀନତା ସଂଗ୍ରାମୀ ସମାଜସେବୀ ନାରୀ ଶିକ୍ଷାର ପ୍ରବର୍ତ୍ତିକା ରାଧାମଣି ଦେବୀ । ତାଙ୍କ ବଡ଼ଭାଇ ସ୍ୱାଧୀନତା ସଂଗ୍ରାମର ବିଦ୍ରୋହୀ ଯୁବ ନେତା, ଓଡ଼ିଶାର ଖ୍ୟାତନାମା ଆଡ଼ଭୋକେଟ୍ ଜେନେରାଲ ଅଶୋକ ଦାସ ।

ଆଦର୍ଶ ପରିବାରର ଆଦର୍ଶ ସନ୍ତାନ ଭାବେ ବିକ୍ରମ ଦାସ ମଧ୍ୟ ବହୁ କୃତିତ୍ୱ ଅର୍ଜନ କରିଥିଲେ । ଜଣେ ବିପ୍ଳବୀ ଛାତ୍ରନେତା ଭାବରେ, ଜଣେ କୃତବିଦ୍ୟ ଡାକ୍ତର ଭାବରେ, ଜଣେ ସଫଳ ସାହିତ୍ୟ ସ୍ରଷ୍ଟା ଭାବରେ ସର୍ବୋପରି ଜଣେ ଭଲ ମଣିଷ ଭାବରେ ସେ ବହୁ ପ୍ରତିଷ୍ଠା ଓ ସମ୍ମାନର ଅଧିକାରୀ ହୋଇଥିଲେ ।

ପେସାରେ ଡାକ୍ତର ଥିଲେ ହେଁ ସାହିତ୍ୟ ନିଶା ବିକ୍ରମ ଦାସଙ୍କ ବ୍ୟକ୍ତି ଚେତନାକୁ ଅହରହ ଉତ୍ତେଜିତ କରୁଥିଲା । ଛାତ୍ରାବସ୍ଥାରେ ହିଁ କବିତା ଲେଖିବା ଆରମ୍ଭ କରି ଦେଇଥିଲେ । ତାଙ୍କର କେତୋଟି କବିତା ଓ ବ୍ୟଙ୍ଗ ରଚନା ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା । ଡାକ୍ତରୀ ପାସ୍ କରିବା ପରେ ସେ 'ଶରୀର ବିଜ୍ଞାନ', 'ସ୍ୱାସ୍ଥ୍ୟ ବିଜ୍ଞାନ', 'ରୋଗରୁ ରକ୍ଷା କରିବାର ଶକ୍ତି' ପରି ସ୍ୱାସ୍ଥ୍ୟ ରକ୍ଷା ସମ୍ବନ୍ଧୀୟ କେତୋଟି ପୁସ୍ତକ ରଚନା କରିଥିଲେ ।

ଆମେରିକାରୁ ଉଚ୍ଚ ଶିକ୍ଷା ଲାଭ କରି ଆସି ନିଦାନ (Pathology) ବିଭାଗରେ ଅଧ୍ୟାପନା କରିବା ସମୟରେ ଚିକିତ୍ସା ବିଜ୍ଞାନର ଶୁଷ୍କ ବାତାବରଣ ଭିତରେ ତାଙ୍କ ସାହିତ୍ୟିକ ପ୍ରତିଭା ମଳିନ ପଡ଼ି ଆସୁଥିଲା । ଏହି ସମୟରେ ତାଙ୍କର ବ୍ରହ୍ମପୁର ମେଡ଼ିକାଲ କଲେଜକୁ ବଦଳି ହୋଇଗଲା । ସେଠାରେ ସେ ଲୋକରତ୍ନ କୁଞ୍ଜବିହାରୀ ଦାସ ଏବଂ ଛନ୍ଦରସିକ କବି ରାଧାମୋହନ ଗଡ଼ନାୟକଙ୍କ ପରି ଦୁଇଜଣ ବିଶିଷ୍ଟ ସାହିତ୍ୟିକଙ୍କ ଘନିଷ୍ଠ ସମ୍ପର୍କରେ ଆସିଲେ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରଫେସର, ଗବେଷକ ବେଣୀମାଧବ ପାଢ଼ୀ, ପ୍ରଫେସର କାହ୍ନୁଚରଣ ମିଶ୍ର ପ୍ରମୁଖଙ୍କ ସମ୍ପର୍କରେ ମଧ୍ୟ ଆସିଲେ । ଏମାନଙ୍କ ସହ ସାହିତ୍ୟ ଚର୍ଚ୍ଚା କରୁ କରୁ ସେ ନିଜେ କିଛି ସୃଷ୍ଟି କରିବା ଲାଗି ଉତ୍ସାହିତ ହେଲେ। ଏହି ଉତ୍ସାହ ତାଙ୍କର ଦ୍ୱିଗୁଣିତ ହେଲା ଯେତେବେଳେ ସେ ଖ୍ରୀ ୧୯୭୫ରେ କଟକ ମେଡ଼ିକାଲ କଲେଜରେ ଜୀବାଣୁ ବିଭାଗର ପ୍ରଫେସର ଭାବେ ଯୋଗ ଦେଲେ । ସାହିତ୍ୟ ଓ ସଂସ୍କୃତିର ପୀଠସ୍ଥଳ କଟକରେ ତାଙ୍କ ସାହିତ୍ୟ ଚର୍ଚ୍ଚାର ପରିସର ବ୍ୟାପକ ହେଲା । ତାଙ୍କ ଲେଖନୀରୁ ସ୍ୱତଃସ୍ଫୂର୍ତ୍ତ ଭାବେ ପ୍ରକାଶ ଲାଭ କରିଥିବା କବିତା, ଗଳ୍ପ, ବ୍ୟଙ୍ଗ ରଚନା ସବୁ ବିଭିନ୍ନ ସମୟରେ 'ସହକାର', ସୌରଭ, ଶର୍ମିଷ୍ଠା, ନବଲିପି, ନବଜୀବନ ପରି ପତ୍ରିକାଗୁଡ଼ିକରେ ସ୍ଥାନ ପାଇଲା । ସରକାରୀ ଚାକିରି କରୁଥିବାରୁ ତାଙ୍କର କେତୋଟି ବ୍ୟଙ୍ଗାତ୍ମକ ରଚନା 'ନିଆଁଖୁଣ୍ଟା' ପତ୍ରିକାରେ ଡଃ ବି. ଦାସ ଶର୍ମା ଛଦ୍ମ ନାମରେ ପ୍ରକାଶ ପାଇଥଲା । ଖ୍ରୀ. ୧୯୭୬ରେ ତାଙ୍କ ରଚିତ ପ୍ରଥମ

ଗଳ୍ପ ସଂକଳନ 'ସାତତିରିକି ସତର', ବ୍ରହ୍ମପୁରର ଦାସ ବ୍ରଦର୍ସଙ୍କଦ୍ୱାରା ଲୋକାର୍ପିତ ହେଲା । ଏହି ପୁସ୍ତକରେ ସନ୍ନିହିତ ଗଳ୍ପଗୁଡ଼ିକ ହେଉଛି 'ସାତ ତିରିକି ସତର', ହୁକୁମରେ ବିଶ୍ୱାସ, ଗାଁ ମଜଲିସ, ଅପର୍ତ୍ତର ଅପ୍ରୀତି, ଭାଇବୋହୂଟି ବେକରେ ବନ୍ଧା, ଆମେରିକାରେ ମାଙ୍କଡ଼ାମି, ବିଖ୍ୟାତ ଆନନ୍ଦ ଗୁଣ୍ଡି ଓ ଅଦ୍ଭୁତ ବାବା ।

ଖ୍ରୀ. ୧୯୭୯ରେ ସରକାରୀ ଚାକିରିରୁ ଅବସର ନେବା ପରେ ବିକ୍ରମ ଦାସଙ୍କର ସାହିତ୍ୟ ସାଧନାର ପରିସର ବହୁ ବ୍ୟାପକ ହେଲା । ଖ୍ରୀ. ୧୯୭୬ରୁ ଖ୍ରୀ.୨୦୦୫ ଏହି ତିରିଶି ବର୍ଷ ମଧ୍ୟରେ ସେ ପ୍ରାୟ ୫୦ ଖଣ୍ଡ ପୁସ୍ତକ ରଚନା କରି ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ସମୃଦ୍ଧ କରିପାରିଛନ୍ତି । ତାଙ୍କ ସୃଷ୍ଟି କର୍ମ ମଧ୍ୟରେ ରହିଛି– ଉପନ୍ୟାସ, ଗଳ୍ପସଂକଳନ, କବିତା ସଂକଳନ, ରମ୍ୟରଚନା, ଭ୍ରମଣକାହାଣୀ, ଜୀବନୀ, ଆତ୍ମଜୀବନୀ, ଶିଶୁ ଓ ପ୍ରୌଢ଼ଶିକ୍ଷାର ଉପଯୋଗୀ ପୁସ୍ତକ ।

ବିକ୍ରମ ଦାସଙ୍କ ରଚନାଗୁଡ଼ିକରେ ତାଙ୍କ କଥକୀୟ ଦୃଷ୍ଟୀଭଙ୍ଗୀ ପ୍ରତି ପାଠକ ସ୍ୱତଃ ଆକର୍ଷିତ ହୋଇଥାଏ । ସେ ଗଳ୍ପ ଉପନ୍ୟାସ ଲେଖନ୍ତୁ ବା ପ୍ରବନ୍ଧ ରମ୍ୟରଚନା ଲେଖନ୍ତୁ, ଜୀବନୀ, ଆତ୍ମଜୀବନୀ ଲେଖନ୍ତୁ ବା ଭ୍ରମଣକାହାଣୀ ଲେଖନ୍ତୁ– ତାହା ପାଠକଲେ ମନେହୁଏ, ପାଠକମାନଙ୍କୁ ଶ୍ରୋତାକରି ତାଙ୍କ ଆଗରେ ନିଜର ଅନୁଭୂତି ସବୁ ସେ କାହାଣୀ ପରି କହିଚାଲିଛନ୍ତି । ତାଙ୍କ ରଚନାବଳୀ ଯେ ପଢ଼ିଛି ଏବଂ ଯେ ତାଙ୍କ ସମ୍ପର୍କରେ ଆସିଛି ଯେ ଅକ୍ଳେଶରେ ଜାଣିପାରିଥିବ ତାଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟ କିପରି ଅଙ୍ଗାଅଙ୍ଗୀ ଭାବେ ସଂପୃକ୍ତ ।

ପ୍ରକୃତରେ ଡାକ୍ତର ବିକ୍ରମ ଦାସ ଯେଉଁଠିକୁ ଯାଉଥିଲେ ସେଠାରେ ଗୋଟେ ବନ୍ଧୁତ୍ୱର ଆସର ସୃଷ୍ଟି କରିଦେଉଥିଲେ । ସମସ୍ତଙ୍କ ସହ ଆଳାପ ଆଲୋଚନା ମାଧ୍ୟମରେ ସେ ସ୍ମୃତିରେ ସାଇତି ରଖିଥିବା ମଜାଳିଆ କଥାର ପେଡ଼ି ଖୋଲିଦେଉଥିଲେ । ପରିବାର ସହ ସେ ଗ୍ରାମକୁ ଯିବାବେଳେ ଗାଁର ପିଲାମାନେ ବିକ୍ରମ ବାପା ଆସିଲେଣି କହି ତାଙ୍କୁ ଘେରିଯାଆନ୍ତି, ତାଙ୍କଠାରୁ ମଜା ମଜା କଥା ଶୁଣିବାପାଇଁ । ଛୋଟ ପିଲାମାନଙ୍କ ମଧ୍ୟରେ ହାସ୍ୟରସ ସୃଷ୍ଟିକରିବାରେ ଏବଂ ବୟସ୍କଲୋକଙ୍କ ପାଖରେ ବ୍ୟଙ୍ଗାତ୍ମକ ଟୀକାଟୀପ୍ପଣୀ ପୁଣି ଦେବାରେ ସେ ଖୁବ୍ ସିଦ୍ଧହସ୍ତ ଥିଲେ ।

ଡାକ୍ତର ଦାସଙ୍କ ବ୍ୟକ୍ତିତ୍ୱର ଏହି ସରସତା ତାଙ୍କ ସାହିତ୍ୟ ସୃଷ୍ଟିକୁ କିପରି ସରସ ସୁନ୍ଦର କରିପାରିଛି ତାହାର ଯଥାର୍ଥ ଉଦାହରଣ ହେଉଛି– 'ସାତ ତିରିକି ସତର', 'ଅଖଇରିଆ କଡ଼ା', 'ରସଗୋଲା ବାହାଘର', 'ଟିଣିଟିଣିଆ ଭୂତ', 'ଗୋଳମାଳିଆ ପେଟ' ଆଦି ପୁସ୍ତକ । ଏହି ପୁସ୍ତକଗୁଡ଼ିକରୁ ଲେଖକଙ୍କର ରସିକମାନସିକତାର ପରିଚୟ ମିଳେ । ଖ୍ରୀ.୧୯୮୧ରେ ପ୍ରକାଶ ପାଇଥବା ତାଙ୍କର ୨ୟ ଗଳ୍ପ ସଂକଳନ 'ଅଖଇରିଆ କଡ଼ା'ରେ ଅପେକ୍ଷାକୃତ ୮ଗୋଟି ଗଳ୍ପ ସ୍ଥାନ ପାଇଛି । ସେଗୁଡ଼ିକ ହେଲା– ପ୍ରେମପରୀକ୍ଷା, ସନ୍ଦେହମୋଚନ, ଦୋଷକାହାର, ଇତିହାସ, ବାଲିଭୂତ, ବିଜୁଳି ଝଲକ, ରେଜେଷ୍ଟ୍ରି ଓ ଅଖଇରିଆ କଡ଼ା । ବିଷୟବସ୍ତୁ ଦୃଷ୍ଟିରୁ ତାଙ୍କ ଗଳ୍ପଗୁଡ଼ିକର ବୈଚିତ୍ର୍ୟ, ସାମାଜିକ, ଐତିହାସିକ, ମନସ୍ତାତ୍ତ୍ୱିକ, ପୌରାଣିକ କିମ୍ବଦନ୍ତୀଭିତ୍ତିକ ବ୍ୟଙ୍ଗାତ୍ମକ ଭାବରେ ଦର୍ଶାଇଦିଆଯାଇପାରେ । ପ୍ରତ୍ୟେକଟି ଗଳ୍ପରେ ତାଙ୍କ ସରସ ମାନସିକତାର ପରିଚୟ ମିଳେ ।

'ସାତ ତିରିକି ସତର' ଗଳ୍ପ ସଂକଳନର ୮ଟି ଯାକ ଗଳ୍ପ ସତ୍ୟ ଘଟଣା ସମ୍ବଳିତ । ସେ ନିଜେ ପ୍ରତ୍ୟକ୍ଷ କରିଥିବା ଘଟଣାଗୁଡ଼ିକୁ ସ୍ମୃତିରୁ ସାଉଁଟି ଆଣି କଳ୍ପନାର ପୁଟ ଦେଇ ରସାଳ କରି ରୂପାୟନ କରିଛନ୍ତି । ଏହି ପୁସ୍ତକ ସମ୍ପର୍କରେ ମତ ଦେଇ ଲୋକରତ୍ନ ଡଃ କୁଞ୍ଜବିହାରୀ ଦାସ କହନ୍ତି– ''ଜୀବନର ଆଲେଖ୍ୟ ଅଙ୍କନରେ ଏହି ସଞ୍ଚୟନ ଏକ ଦୃଢ଼ ପଦକ୍ଷେପ ସ୍ୱାତନ୍ତ୍ର୍ୟ ଚିହ୍ନିତ । ଏହା ଅନୁଭୂତିରେ ଯେପରି ଜୀବନ୍ତ, ହାସ୍ୟରସରେ ସେପରି ଉଜ୍ଜ୍ୱଳ ଓ ବ୍ୟଙ୍ଗରେ ସେପରି ଶାଣିତ । ବିକ୍ରମ ଯେ ସୁରସିକ ଏହା ପ୍ରମାଣ ପଦେ ପଦେ ।''

ଅନୁଭୂତି ଓ ଅଭିଜ୍ଞତାର ଗଭୀରତା ହେଉଛି ବିକ୍ରମ ଦାସଙ୍କ ସାହିତ୍ୟ ସୃଷ୍ଟିର ଅନ୍ୟତମ ବୈଶିଷ୍ଟ୍ୟ । ଏହି ଅନୁଭୂତି ସେ କିଛିଟା ସାଉଁଟିଛନ୍ତି ଦେଶ ଓ ଜାତିର ଜାଗ୍ରତ ପ୍ରହରୀ ପଣ୍ଡିତ ନୀଳକଣ୍ଠଙ୍କ ପୁତ୍ରଭାବେ ଏବଂ କିଛିଟା ସଂଗ୍ରହ କରିଛନ୍ତି ନିଜର ଘଟଣାବହୁଳ ଜୀବନରୁ । ଦେଶର ଭବିଷ୍ୟତ ନାଗରିକଙ୍କୁ ଗଢ଼ିବାପାଇଁ ସତ୍ୟବାଦୀ ବନ ବିଦ୍ୟାଳୟର ଅଧ୍ୟକ୍ଷ ତଥା କୁଳଗୁରୁ ନୀଳକଣ୍ଠଙ୍କ ତ୍ୟାଗ ଓ ସାଧନା ତାଙ୍କ ସମ୍ମୁଖରେ ଏକ ଉଚ୍ଚ ଆଦର୍ଶର ସ୍ତମ୍ଭ ନିର୍ମାଣ କରିଛନ୍ତି । ଆମ ସମାଜର ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୂର କରିବାପାଇଁ ସଂଗ୍ରାମୀ ପିତାଙ୍କ ଦୃଢ଼ ନିଶ୍ଚିତ ବ୍ୟକ୍ତିତ୍ୱକୁ ସେ ପରଖିଛନ୍ତି । ଶିକ୍ଷା ଓ ସଂସ୍କୃତି, ରାଜନୀତି ଓ ସମାଜନୀତି, ଭାଷା ଓ ସାହିତ୍ୟ– ପ୍ରତ୍ୟେକ କ୍ଷେତ୍ରରେ ଓଡ଼ିଶାକୁ ଉନ୍ନତ କରି ଦେଖିବାପାଇଁ ପିତାଙ୍କ ସଂକଳ୍ପକୁ ସେ ଆକଳନ କରିଛନ୍ତି, ପିତାଙ୍କ ସଂସ୍ପର୍ଶରେ

ଆସିଥିବା ଦେଶର ବହୁ ସ୍ୱାଧୀନତା ସଂଗ୍ରାମୀ ତଥା ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଜୀବନାଦର୍ଶ ସଂପର୍କରେ ସେ ଅବଗତ ହୋଇଛନ୍ତି । ଏସବୁ ପ୍ରତ୍ୟକ୍ଷ ଅନୁଭୂତିରୁ ଉପାଦାନ ସାଉଁଟି ସେ ଲେଖିଛନ୍ତି– ମୋ ନନାଙ୍କ ଦେଶ, ସଂଗ୍ରାମୀ ଗୁରୁ, ଜାତୀୟ ରଣାଙ୍ଗନରେ ସୁଭାଷ ଓ ନୀଳକଣ୍ଠ, ଓଡ଼ିଆ ବଜାରର ଅଗ୍ନିଶିଖା : ସୁଭାଷ, ଆଦିଜ୍ୟୋତି ହରିହର, ଚିତ୍ରେ ମହାମନୀଷୀ ନୀଳକଣ୍ଠ ପରି ଗ୍ରନ୍ଥମାନ । ଏସବୁ ଗ୍ରନ୍ଥରେ ଆମ ଦେଶରେ ନବଯୁଗର ବାର୍ତ୍ତାବହ ରୂପେ ପ୍ରତିଷ୍ଠା ଅର୍ଜନ କରିଥିବା ମହାମନୀଷୀମାନଙ୍କ ଜୀବନକୁ ଲେଖକ ବନ୍ଧୁମାନଙ୍କ ଗହଣରେ ବସି ଗପ କଲାପରି ବର୍ଣ୍ଣନା କରିଛନ୍ତି । ପାଠକଗଣ ଏ ପୁସ୍ତକଗୁଡ଼ିକୁ କାହାଣୀପରି ଉପଭୋଗ କରିଥାନ୍ତି । ଥରେ ପାଠ କରିବାକୁ ଆରମ୍ଭ କଲେ ଶେଷ ନ କରି ରହିପାରନ୍ତି ନାହିଁ ।

ସେଥିପାଇଁ ବିକ୍ରମ ଦାସଙ୍କ ରଚିତ 'ମୋ ନନାଙ୍କ ଦେଶ' ପାଠକରି ଓଡ଼ିଶାର ସୁନାମଧନ୍ୟ ସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀ ମନ୍ତବ୍ୟ ଦେଇଛନ୍ତି ''ସେ ନନାଙ୍କଭିତରେ ଦେଶକୁ ଓ ଦେଶ ଭିତରେ ନନାଙ୍କୁ ଦେଖି ଲେଖିଛନ୍ତି ଏ ଗ୍ରନ୍ଥ । ପାଠକଙ୍କୁ 'ମୋ ନନାଙ୍କ ଦେଶ' ଭୁଲାଇ ସେ ଏମିତି ନୟାନ୍ତ କରିପକାଇଛନ୍ତି ସେ ବିଚରା ଲେଖାକୁ ଛାଡ଼ି ଅଉ କୁଆଡ଼କୁ ଚାହିଁପାରେ ନାହିଁ । ଭୋକ ଶୋଷ ଭୁଲିଗଲା ପରି ଲାଗେ ।

ପଣ୍ଡିତ ନୀଳକଣ୍ଠଙ୍କ ଜୀବନର ଗତିଶୀଳତା ସହ ପାଦ ମିଳାଇ ତାଙ୍କ ଜୀବନର ଘଟିଯାଇଥିବା ବହୁ ଘଟଣା ସେ ଭେଟିଥିବା ବହୁ ବିଶିଷ୍ଟ ବ୍ୟକ୍ତି, ସେ ସମ୍ମୁଖୀନ ହୋଇଥିବା ବହୁ ଗୁରୁତ୍ୱପୂର୍ଣ୍ଣ ପରିସ୍ଥିତିକୁ ଲେଖକ ଜଣେ କୁଶଳୀ ବିନ୍ଧାଣୀ ପରି ଆଲୋଚ୍ୟ ଗ୍ରନ୍ଥରେ ସରସ ସୁନ୍ଦରଭାବେ ଖଞ୍ଜିଦେଇଛନ୍ତି ଯାହା ପାଠକରି ଡକ୍ଟର ସଦାଶିବ ମିଶ୍ର ମନ୍ତବ୍ୟ ଦେଇଛନ୍ତି, ''ମୋ ନନାଙ୍କ ଦେଶ କାହାଣୀ ନୁହେଁ, ଉପନ୍ୟାସ ନୁହେଁ, ମାତ୍ର କାହାଣୀ ପରି ଉପନ୍ୟାସ ପରି ଉପଭୋଗ୍ୟ ।'' ଗ୍ରନ୍ଥଟି ନୀଳକଣ୍ଠଙ୍କ ଜନ୍ମ ଶତବାର୍ଷିକୀ ଖ୍ରୀ.୧୯୮୩ରେ ପ୍ରକାଶ ପାଇଥିଲା । ଆଲୋଚ୍ୟ ଗ୍ରନ୍ଥରେ ଲେଖକ ତାଙ୍କ ନନାଙ୍କ ଆତ୍ମଜୀବନୀରେ ସ୍ଥାନପାଇନଥିବା ଅନେକ ତଥ୍ୟ ଉପସ୍ଥାପନ କରିଛନ୍ତି । ତନ୍ମଧ୍ୟରୁ ଦୁଇ ଚାରିଗୋଟି ଉଦାହରଣ ଦିଆଯାଇପାରେ ।

କେନ୍ଦ୍ର ଆସେମ୍ବ୍ଲିରେ ନୀଳକଣ୍ଠଙ୍କ ଭୂମିକାର ଗୁରୁତ୍ୱ ଦର୍ଶାଇ ସେ ଲେଖିଛନ୍ତି– ''ସେ କେନ୍ଦ୍ର ଆସେମ୍ବ୍ଲି ବା ବଡ଼ଲାଟ ସଭାରେ ପ୍ରାୟ ୨୦ ବର୍ଷ କାଳ ସଦସ୍ୟ ଥାଇ ପ୍ରାୟ ସମସ୍ତ ବିଷୟର ଆଲୋଚନାରେ ଭାଗ ନେଉଥିଲେ । ସେ ଅନେକ ସମୟରେ ସରକାରଙ୍କୁ କଟୁ ସମାଲୋଚନା କରିବା ସଙ୍ଗେ ସଙ୍ଗେ ବହୁ ଅସୁବିଧାରେ ପକାଉଥିଲେ । ତାଙ୍କ ତଥ୍ୟ ସମ୍ବଳିତ ଅକାଟ୍ୟ ଯୁକ୍ତିସବୁକୁ ଇଂରେଜ ସରକାର ପ୍ରତିରୋଧ କରିପାରି ନ ଥିଲେ । ସରକାରଙ୍କ ଚା' ବ୍ୟବସାୟ ନୀତି ଉପରେ ୮ଘଣ୍ଟା ଓ ଲୁଣ ବ୍ୟବସାୟ ନୀତି ଉପରେ ଏକାଦିକ୍ରମେ ୧୦ ଘଣ୍ଟା କାଳ ସାରଗର୍ଭକ ଭାଷଣ ଦେଇ ସେ ରେକର୍ଡ ସୃଷ୍ଟି କରିଥିଲେ ।'' (ପୃ–୮୮)

ଜାତୀୟ ସ୍ତରରେ ଏତେବଡ଼ ନେତା ଥିଲେ ହେଁ ତାଙ୍କ ନନାଙ୍କ ନିଜ ଗ୍ରାମବାସୀଙ୍କ ସହ କିପରି ଘନିଷ୍ଠତା ଥିଲା ତାହା ଦର୍ଶାଇ ବିକ୍ରମ ଦାସ କହନ୍ତି– ''ନନା ଲୋକଙ୍କ ସଙ୍ଗେ ମିଶି ବ୍ରାହ୍ମ ସମାଜର ସମ୍ପୂର୍ଣ୍ଣ ଚିତ୍ର ଆଖିଆଗରେ ରଖି ସାଧାରଣ ଲୋକଙ୍କ ଚାଲିଚଳଣ, ହାବଭାବ, ଦୁଃଖସୁଖ ସଙ୍ଗେ ସମ୍ପର୍କ ରଖିଥାନ୍ତି । ଖାଲି ସେତିକି ନୁହେଁ, ସବୁ ଗ୍ରାମର ଇତିହାସ, ଲୋକଗୀତି ଓ ଗ୍ରାମ୍ୟ କବିଙ୍କ କବିତାସବୁ ସଂଗ୍ରହ କରୁଥାନ୍ତି । କେଉଁ ଗ୍ରାମର କୌଣସି ଲୋକକଥା ପଡ଼ିଲେ ସେ ତାର ଚଉଦପୁରୁଷ କଥା ଗାଇଯାନ୍ତି ।'' (ପୃ.–୧୪୮–୪୯)

ଗ୍ରାମବାସୀଙ୍କ ସହ ଏପରି ଘନିଷ୍ଠ ସମ୍ପର୍କ ରଖିଥିଲେ ମଧ୍ୟ ଗ୍ରାମ୍ୟ ସମାଜରେ ପ୍ରଚଳିତ କୁସଂସ୍କାର ବିରୋଧରେ ତୀବ୍ର ପ୍ରତିବାଦର ସ୍ୱର ଉଠାଇବା ଲାଗି ନୀଳକଣ୍ଠ କୁଣ୍ଠାବୋଧ କରୁନଥିଲେ । ଏହି ସମ୍ପର୍କରେ ବିକ୍ରମଦାସ ମତ ଦିଅନ୍ତି– ''ନନା କେବଳ କୁସଂସ୍କାର ବିରୋଧରେ ସ୍ୱର ଉଠାଇନଥିଲେ ନିଜକୁ ଏବଂ ନିଜ ପରିବାରକୁ ଏସବୁରୁ ଦୂରେଇ ରଖିଥିଲେ । ତାଙ୍କ ଭାଷାରେ – 'ହରିଜନଠାରୁ ଅନ୍ୟ ଧର୍ମୀ ଏପରିକି ମୁସଲମାନ ପର୍ଯ୍ୟନ୍ତ ଯିଏ ଆମ ଘରକୁ ଆସୁଥିଲେ ଆମ ଶାସନୀ ବ୍ରାହ୍ମଣ ଘରେ ମଧ୍ୟ ସେମାନେ ଥିଲେ ଅତିଥି । ସେମାନଙ୍କ ଅଇଁଠା ବାସନ ବୋଉ ଅକୁଣ୍ଠିତ ଚିତ୍ତରେ ନିଜ ହାତରେ ମାଜି ପରିଷ୍କାର କରୁଥିଲେ । ଆମ ଘରେ ସବୁଜାତିର ଲୋକ ଏକାଠି ବସି ଆହାର କରିବା ଅତି ସାଧାରଣ ଥିଲା ।'' (ପୃ.–୧୮୨)

ଏହାପରେ ସେ ନୀଳକଣ୍ଠ ବୈପ୍ଳବିକ ରାଜନୀତି ସମ୍ପର୍କରେ ଅନେକ କଥା କହିଛନ୍ତି । ତାଙ୍କ ନନାଙ୍କ ବିପ୍ଳବୀ ନେତା ସୁଭାଷ ଚନ୍ଦ୍ରଙ୍କୁ ସହଯୋଗ କରିବା ସମ୍ବନ୍ଧରେ ବିକ୍ରମ ଦାସ ଲେଖିଛନ୍ତି– ''ସୁଭାଷ ଚନ୍ଦ୍ରଙ୍କ ବୈପ୍ଳବିକ ପନ୍ଥାକୁ କେନ୍ଦ୍ର

ନେତୃତ୍ୱକୁ ଡରି ସବୁ ପ୍ରାଦେଶିକ କମିଟି ବିରୋଧ କଲେ ମଧ୍ୟ ନନା ସୁଭାଷଙ୍କ ପଛାକୁ ସ୍ୱାଗତ କରି ତାଙ୍କ ସପକ୍ଷରେ ମତ ଦେଇଥିଲେ । ସୁଭାଷ କଂଗ୍ରେସର ସଭାପତି ପଦରୁ ଓହରି ଗଲେ ମଧ୍ୟ ନନା ଉତ୍କଳ କଂଗ୍ରେସର ସଭାପତି ଥାଇ ତାଙ୍କୁ ଜଣେ ପୂର୍ବତନ ସଭାପତିର ସମ୍ମାନ ଦେଇ ଓଡ଼ିଶାକୁ ଡକାଇ ଆଣି ବିରାଟ ଅଭ୍ୟର୍ଥନାର ଯୋଗାଡ଼ କଲେ । ତାଙ୍କର ବୈପ୍ଳବିକ ବାର୍ତ୍ତା ଲୋକଙ୍କୁ ଶୁଣାଇଲେ । (ପୃ.-୨୧୪)

ସୁଭାଷଚନ୍ଦ୍ରଙ୍କ ସହ ନୀଳକଣ୍ଠଙ୍କ ବୈପ୍ଳବିକ ଚିନ୍ତାଧାରାର ସମତାକୁ କେନ୍ଦ୍ର କରି ଡଃ ଦାସ ସ୍ୱତନ୍ତ୍ରଭାବେ ଲେଖିଛନ୍ତି– ''ଜାତୀୟ ରଣାଙ୍ଗନରେ ସୁଭାଷ ଓ ନୀଳକଣ୍ଠ'' ଏହି ପୁସ୍ତକଟି ନୀଳକଣ୍ଠ ସ୍ମୃତି ସମିତି ଦ୍ୱାରା ଖ୍ରୀ.୧୯୯୩ରେ ପ୍ରକାଶ ପାଇଛି । ଏଥିରେ ନୀଳକଣ୍ଠ କିପରି ସୁଭାଷପନ୍ଥୀ ହେଲେ ଏବଂ ଓଡ଼ିଶାରେ ଫରୱାର୍ଡ ବ୍ଲକ ଶାଖା ଗଠନର ନେତୃତ୍ୱ ନେଲେ ତାହାର ସବିଶେଷ ଆଲୋଚନା କରାଯାଇଛି, ଲେଖକ ପୁଣି 'ଓଡ଼ିଆ ବଜାରର ଅଗ୍ନିଶିଖା : ନେତାଜୀ ସୁଭାଷ' ଶୀର୍ଷକ ପୁସ୍ତକ ଲେଖି ସୁଭାଷଙ୍କ ଜନ୍ମଭୂମି ଓଡ଼ିଶା ଓ ଓଡ଼ିଶାର ନେତାମାନଙ୍କ ସହ ତାଙ୍କ ପରିଚିତି ସମ୍ପର୍କରେ ବିଭିନ୍ନ ତଥ୍ୟ ଉପସ୍ଥାପନ କରିଛନ୍ତି ।

ନୀଳକଣ୍ଠଙ୍କ ଜୀବନୀ ଓ ସାଧନା ଉପରେ ବିକ୍ରମ ଦାସଙ୍କ ଅନ୍ୟତମ ଗ୍ରନ୍ଥ ହେଉଛି 'ପଣ୍ଡିତ ନୀଳକଣ୍ଠ ଦାସ' । ଏ ପୁସ୍ତକରେ ଓଡ଼ିଶାର ଜୀବନ୍ତ ଜ୍ଞାନକୋଷ ରୂପେ ପରିଚିତ ନୀଳକଣ୍ଠଙ୍କ ଜୀବନ ପ୍ରବାହକୁ ବିଭିନ୍ନ ଫଟୋଚିତ୍ର ସହ ପାଠକଙ୍କ ସମ୍ମୁଖରେ ଉପସ୍ଥାପନ କରାଯାଇଛି ।

ଡଃ ଦାସଙ୍କ ରଚିତ ଅନ୍ୟ ଦୁଇଟି ଜୀବନୀ ଗ୍ରନ୍ଥ ପୁସ୍ତିକା ହେଉଛି, 'ଆଦିଜ୍ୟୋତି ପଣ୍ଡିତ ହରିହର ଦାଶ ଶର୍ମା' ଓ 'ସଂଗ୍ରାମୀ ଗୁରୁ' । ପ୍ରଥମ ପୁସ୍ତିକାରେ ଓଡ଼ିଶାରେ ଶିକ୍ଷା ଓ ସଂସ୍କାରର ପ୍ରସାର ଘଟାଇ ଓଡ଼ିଶାବାସୀଙ୍କୁ ଜ୍ଞାନର ଆଲୋକ ଦର୍ଶାଇଥିବା ପଣ୍ଡିତ ହରିହରଙ୍କ ଜୀବନର ଅଲିଭା କାହାଣୀ ବର୍ଣ୍ଣିତ ହେବାବେଳେ ୨ୟ ପୁସ୍ତିକାରେ ସତ୍ୟବାଦୀର ପଞ୍ଚସଖା – ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ପଣ୍ଡିତ ଗୋଦାବରୀଶ ଓ ପଣ୍ଡିତ କୃପାସିନ୍ଧୁଙ୍କ ତ୍ୟାଗପୂତ ଜୀବନ କଥା ବର୍ଣ୍ଣନା କରାଯାଇଛି । ସେ ପୁଣି ସ୍ୱାଧୀନ ଭାରତର ରାଜନୀତି ସହ ସଂପୃକ୍ତ ବିଚାରପତି ଏମ୍.ସି. ଚଗଲାଙ୍କ ଜୀବନୀକୁ ଆଧାର କରି ଲେଖିଛନ୍ତି– ''ସ୍ୱାଧୀନଚେତା ବିଚାରପତି ଚଗଲା'' । ଏସବୁ ଜୀବନୀ ଶିଶୁମାନଙ୍କ ପଠନ ଉପଯୋଗୀ ।

ସତ୍ୟବାଦୀ ବନ ବିଦ୍ୟାଳୟର ଭିତ୍ତି, ସ୍ଥିତି, ଗତି ଓ ପରିଣତିକୁ ଆଧାର କରି ଡକ୍ଟର ଦାସ ଲେଖିଛନ୍ତି ଏକ ଗବେଷଣାଧର୍ମୀ ପୁସ୍ତକ ଯୁଗାନ୍ତକାରୀ ସତ୍ୟବାଦୀ ଗୁରୁକୁଳ । ଗ୍ରନ୍ଥଟି ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ଖ୍ରୀ.୨୦୦୦ରେ ପ୍ରକାଶ ପାଇଛି । ପ୍ରାଚୀନ ଗୁରୁକୁଳ ଛାଞ୍ଚରେ ଗଢ଼ା ଯାଇଥିବା ଏହି ବିଦ୍ୟାଳୟ ଗଠନର ପୃଷ୍ଠଭୂମିରେ ଲେଖକ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ନବ ଯୁଗର ପ୍ରବର୍ତ୍ତକ ଆଦି ଗୁରୁ ହରିହର ଦାଶଙ୍କ ଅବଦାନ ଦର୍ଶାଇଛନ୍ତି । ଦେଶରେ ଶିକ୍ଷାର ପ୍ରସାର ଘଟାଇ ଲୋକଙ୍କ ଆଖି ଖୋଲାଇ ସେମାନଙ୍କୁ କ୍ଷମତାଶାଳୀ ଇଂରେଜ ଶାସକଙ୍କ ବିରୋଧରେ ସଂଗଠିତ କରିବା ପଣ୍ଡିତ ହରିହର ଦାଶ ଶର୍ମାଙ୍କ ପ୍ରଧାନ ଲକ୍ଷ୍ୟ ଥିଲା । ତେଣୁ ସେ ନିଜ ଖର୍ଚ୍ଚରେ, ନିଜ ଉଦ୍ୟମରେ, ନିଜ ଗ୍ରାମ ଶ୍ରୀରାମଚନ୍ଦ୍ରପୁରରେ ଏକ ଭର୍ଣ୍ଣାକୁଲାର ସ୍କୁଲ ଖ୍ରୀ.୧୮୬୫ରେ ପ୍ରତିଷ୍ଠା କରିଥିଲେ । ପୁରୀରେ ସଂସ୍କୃତ ମହାବିଦ୍ୟାଳୟଟି ମଧ୍ୟ ତାଙ୍କରି ପ୍ରଚେଷ୍ଟାର ଫଳ । ଏଇ ଦୁଇ ଶିକ୍ଷାନୁଷ୍ଠାନ ପାଇଁ ଅର୍ଥ ଯୋଗାଡ଼ କରିବାକୁ ତାଙ୍କୁ ବିଭିନ୍ନ ସ୍ଥାନରେ ବେଦାନ୍ତ ଉପରେ ଭାଷଣ ଦେବାକୁ ପଡୁଥିଲା । ଏହି ଦେଶ ହିତୈଷୀ, ମହାନ ବିଦ୍ୱାନ, ଶିକ୍ଷାବିତ୍, ସମାଜ ସଂସ୍କାରକ ଓ ସମାଜ ସେବକ ପଣ୍ଡିତ ହରିହରଙ୍କ ମୃତ୍ୟୁ ମାତ୍ର ୩୨ ବର୍ଷ ବୟସରେ ଖ୍ରୀ.୧୮୭୪ରେ (ଗୋପବନ୍ଧୁଙ୍କ ଜନ୍ମର ତିନିବର୍ଷ ପୂର୍ବରୁ) ହୋଇଥିଲେ ହେଁ ତାଙ୍କର ଆଦର୍ଶମୟ ବ୍ୟକ୍ତିତ୍ୱ ଦ୍ୱାରା ଗୋପବନ୍ଧୁ ଅଭିଭୂତ ହୋଇଥିଲେ । ଡାକ୍ତର ବିକ୍ରମ ଦାସ ଯଥାର୍ଥରେ ଲେଖିଛନ୍ତି– ''ଗୋପବନ୍ଧୁ, ପଣ୍ଡିତ ହରିହରଙ୍କ ଆଦର୍ଶର ପବିତ୍ର ପ୍ଲାବନରେ ନିଜକୁ ଭସାଇ ନେଇଥିଲେ । ପଣ୍ଡିତ ହରିହରଙ୍କ ଜନ୍ମପୀଠ ଶ୍ରୀରାମଚନ୍ଦ୍ରପୁରକୁ ଏକ ପବିତ୍ରସ୍ଥାନ ମନେ କରି ପ୍ରତିବର୍ଷ ହରିହରଙ୍କ ଜନ୍ମତିଥି କୁମାର ପୂର୍ଣ୍ଣମୀ ଦିନ ସେଠାକୁ ଯାଇ ସେହି ଅମ୍ଳାନ ପ୍ରତିଭାଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଜଣାଇ ବାଷ୍ପ ଗଦ୍‌ଗଦ କଣ୍ଠରେ ଭାଷଣ ଦେଇ ଲୋକଙ୍କୁ ଉଦ୍‌ବୁଦ୍ଧ କରୁଥିଲେ ।'' (ଯୁଗାନ୍ତକାରୀ ସତ୍ୟବାଦୀ ଗୁରୁକୁଳ, ପୃ.-୧୮)

ଖ୍ରୀ. ୧୮୬୫ରୁ ଖ୍ରୀ. ୧୯୦୯ ପର୍ଯ୍ୟନ୍ତ ସୁଚାରୁରୂପେ ପରିଚାଳିତ ଶ୍ରୀରାମଚନ୍ଦ୍ରପୁରର ଭର୍ଣ୍ଣାକୁଲାର ସ୍କୁଲଟି ସରକାରଙ୍କ ନୂଆ ଶିକ୍ଷାନୀତିରେ ମିଡିଲ୍ ଇଂରାଜୀ ସ୍କୁଲରେ ପରିଣତ ହେଲା । ସେଇ ସୁଯୋଗ ନେଇ ଗୋପବନ୍ଧୁ ପଣ୍ଡିତ ହରିହରଙ୍କ ଶୁଭଜନ୍ମତିଥି ଖ୍ରୀ.୧୯୦୯, ଅକ୍ଟୋବର ମାସ ୧୨ ତାରିଖ ଦିନ ସେଇ ସ୍କୁଲଟିକୁ ସତ୍ୟବାଦୀର ବକୁଳବନ ପରିସରକୁ ଉଠାଇ

ଆଣିଲେ । ତାହାହିଁ ହେଲା ଗୋପବନ୍ଧୁଙ୍କ ପରିକଳ୍ପିତ ଗୁରୁକୁଳ- ସତ୍ୟବାଦୀ ବନ ବିଦ୍ୟାଳୟ ।

ଓଡ଼ିଶାର ଏହି ଆବାସିକ ବନ ବିଦ୍ୟାଳୟଟି ସମ୍ପର୍କରେ ବିକ୍ରମ ଦାସଙ୍କ ବାଲ୍ୟକାଳରୁ ବହୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଅନୁଭୂତି ରହିଥିଲା । ଖ୍ରୀ. ୧୯୧୧ରେ ଏହି ବିଦ୍ୟାଳୟ ହାଇସ୍କୁଲରେ ପରିଣତ ହେଲା ଏବଂ ତାଙ୍କ ପିତା ପଣ୍ଡିତ ନୀଳକଣ୍ଠ ଏହାର ପ୍ରଥମ ଅଧ୍ୟକ୍ଷ ହେଲେ । ତାଙ୍କର ଅଧ୍ୟକ୍ଷତା ସମୟରେ ସ୍କୁଲଟି ଉନ୍ନତିର ଚରମ ସୀମାରେ ଉପନୀତ ହୋଇ 'ଓଡ଼ିଶାର ନାଳନ୍ଦା' ଭାବେ ପରିଚିତ ହେଲା, ତେଣୁ ଏହି ସ୍କୁଲ ସମ୍ବନ୍ଧରେ ବିଭିନ୍ନ ତଥ୍ୟ ପରିବେଷଣ କରିବାକୁ ଲେଖକଙ୍କୁ ବିଶେଷ କଷ୍ଟ କରିବାକୁ ପଡ଼ି ନାହିଁ ।

ଖ୍ରୀ.୧୯୧୮ ରେ ସତ୍ୟବାଦୀ ବିଦ୍ୟାଳୟର ପ୍ରାଣ ପ୍ରତିଷ୍ଠାତା ତଥା ସ୍କୁଲ ପରିଚାଳନା କମିଟିର ସମ୍ପାଦକ ପଣ୍ଡିତ ଗୋପବନ୍ଧୁ ସ୍କୁଲ ସମ୍ବନ୍ଧରେ ଯେଉଁ ରିପୋର୍ଟଟି ଇଂରାଜୀ ଭାଷାରେ ପ୍ରସ୍ତୁତ କରିଥିଲେ ଲେଖକ ତାର ଓଡ଼ିଆ ଅନୁବାଦ ଆଲୋଚ୍ୟ ଗ୍ରନ୍ଥରେ ସଂଯୋଜିତ କରିବା ସହ ଏହି ବିଦ୍ୟାଳୟର ଶିକ୍ଷାଦାନ ପ୍ରଣାଳୀ, ଶିକ୍ଷକମାନଙ୍କ ପରିଚିତ, ଗୁରୁ-ଶିଷ୍ୟଙ୍କ ସମ୍ପର୍କ ଓ ବନ୍ୟା, ମରୁଡ଼ି, ହଇଜାରେ ଦୁର୍ଦ୍ଦଶା ଭୋଗୁଥିବା ଲୋକ ତଥା ରୋଗୀମାନଙ୍କ ସେବାରେ ସେମାନଙ୍କ ଯୋଗଦାନ, ଅନୁଷ୍ଠାନର ଗତି ଏବଂ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ପରେ ଏହାର ପରିଣତ ସମ୍ପର୍କରେ ବହୁ ତଥ୍ୟ ଉପସ୍ଥାପନ କରି ଗ୍ରନ୍ଥଟିକୁ ଗବେଷଣାଧର୍ମୀ କରିପାରିଛନ୍ତି ।

ଡାକ୍ତର ବିକ୍ରମ ଦାସଙ୍କ ଅନ୍ୟ ଏକ ଗବେଷଣାଧର୍ମୀ ଇଂରାଜୀ ପୁସ୍ତକ ହେଉଛି- 'Domains of Lord Jagannath' ଯାହାକି ନୂଆଦିଲ୍ଲୀର B.R. Publication ଦ୍ୱାରା ପ୍ରକାଶିତ । ପିତା ନୀଳକଣ୍ଠଙ୍କ ଜଗନ୍ନାଥ ଧର୍ମ ଓ ସଂସ୍କୃତି ଚର୍ଚ୍ଚାର ଅଭିନବ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇ ସେ ଏଇ ଗ୍ରନ୍ଥଟି ରଚନା କରିଛନ୍ତି । ଏ ଗ୍ରନ୍ଥଟିର ମୁଖବନ୍ଧ ଲେଖିଛନ୍ତି କବି ସଚ୍ଚିଦାନନ୍ଦ ରାଉତରାୟ ଏବଂ ଉପଦ୍‌ଘାତ ଲେଖିଛନ୍ତି ସତ୍ୟନାରାୟଣ ରାଜଗୁରୁ ପୁରୀ ଗଜପତି, ରାଜାମାନଙ୍କ ଯଶକୀର୍ତ୍ତନରେ ପୁସ୍ତକଟି ମୁଖରିତ । ଗବେଷକ ରାଜଗୁରୁ ଯଥାର୍ଥରେ ଲେଖିଛନ୍ତି "This book is a unique work in the field of cultural history relating to Lord Jagannath and the Thakur Rajas of Puri." ।

ଡଃ ବିକ୍ରମ ଦାସ ତାଙ୍କର ପିତା ପଣ୍ଡିତ ନୀଳକଣ୍ଠଙ୍କ ପରି ଏକ ବହୁବ୍ୟାପକ ଜୀବନ-ପରିଧିରେ ବିଚରଣ କରି ନ ଥିଲେ ମଧ୍ୟ ତାଙ୍କ ଜୀବନର ଅନୁଭୂତି ଓ ଅନ୍ୱେଷଣର ଛାପ କିଛି କମ୍ ନୁହେଁ । ଖ୍ରୀ.୧୯୩୯ରେ ଓଡ଼ିଶାରେ ପ୍ରଥମ ଛାତ୍ର ସତ୍ୟାଗ୍ରହ ବେଳେ ସେ ସତ୍ୟାଗ୍ରହୀ ଭାବରେ କାରାବରଣ କରିଛନ୍ତି । ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ଜାତୀୟ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଛନ୍ତି ଓ ତାଙ୍କ ଓଡ଼ିଶାର ଯାତ୍ରାରେ ଭାଗ ନେଇ ତାଙ୍କ ମତର ପ୍ରଚାର କରିଛନ୍ତି । କଟକରେ I.Sc. ପଢୁଥିବା ସମୟରେ ଖ୍ରୀ.୧୯୪୨ 'ଭାରତ ଛାଡ଼' ଆନ୍ଦୋଳନରେ ଯୋଗଦେଇ ବ୍ରିଟିଶ୍ ସରକାରଙ୍କ ଦମନଲୀଳାର ଶିକାର ହୋଇଛନ୍ତି । ଖ୍ରୀ.୧୯୪୫ର ଦ୍ୱିତୀୟ ବିଶ୍ୱଯୁଦ୍ଧ ତାଙ୍କ ଯୁବଚେତନାକୁ ଆନ୍ଦୋଳିତ କରିଛି । ସୁଭାଷଚନ୍ଦ୍ରଙ୍କ ଆଜାଦ ବାହିନୀ ପରାସ୍ତ ହୋଇ 'ଆଜାଦ ହିନ୍ଦ ଫୌଜ'ର ଯୁଦ୍ଧବନ୍ଦୀ ହୋଇଥିବା ସେନାପତିମାନଙ୍କ ବିଚାର ଦିଲ୍ଲୀରେ ଚାଲିବା ସମୟରେ ସେ ଅନ୍ୟ ସୁଭାଷପନ୍ଥୀଙ୍କ ସହ ମିଶି 'ଆଜାଦ ହିନ୍ଦ ଫୌଜ' ସାହାଯ୍ୟ ପାଣ୍ଠି ଖୋଲିଛନ୍ତି । ଏ ସବୁ ଘଟଣା ସହ ସେ ସମ୍ପୃକ୍ତ ଥିବାରୁ ତାଙ୍କର ପାଠପଢ଼ା ବାରମ୍ବାର ବ୍ୟାହତ ହୋଇଛି । ଏ ସମ୍ପର୍କରେ ସେ ତାଙ୍କ ଆତ୍ମଜୀବନୀ 'ଜୀବନର ଛାପ' ଗ୍ରନ୍ଥରେ କହନ୍ତି- ''ଖ୍ରୀ. ୧୯୩୯ରୁ ୧୯୪୫ ପର୍ଯ୍ୟନ୍ତ ମୋର ବାରବୁଲା ରାଜନୀତିକ ସଂଗ୍ରାମୀ ଜୀବନରେ ଗୋଟିଏ ସ୍ଥାନରେ ସ୍ଥିର ରହି ବର୍ଷକରୁ ଅଧିକ ବିଦ୍ୟାଧ୍ୟୟନ କରିବା ସମ୍ଭବ ହୋଇପାରି ନ ଥିଲା ।'' (ପୃ.-୧୫୭)

ଖ୍ରୀ. ୧୯୪୫ ଜୁଲାଇରେ ମେଡ଼ିକାଲ କଲେଜରେ ନାମ ଲେଖାଇବା ପରେ ତାଙ୍କ ଶୁଭେଚ୍ଛୁ ଶିକ୍ଷକମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ସେ ରାଜନୀତିରୁ ଦୂରେଇ ଯାଇ ଚିକିତ୍ସା ମାଧ୍ୟମରେ ଦେଶସେବା କରିବାକୁ ପ୍ରତିଜ୍ଞାବଦ୍ଧ ହେଲେ । ରାଜନୀତିରୁ ଦୂରେଇ ଯିବା ସମ୍ପର୍କରେ ମଧ୍ୟ ସେ ଦୁଇଟି କାରଣ ଦର୍ଶାଇଛନ୍ତି- ''ଭାରତର ରାଜନୀତି ପଙ୍କିଳ ହୋଇ ଆସୁଥିବା ମୁଁ ଅନୁଭବ କରିଥିଲି ଏବଂ ସ୍ୱାଧୀନତା ସଂଗ୍ରାମର ଏକପ୍ରକାର ପରିସମାପ୍ତି ଘଟିଥିବାର ମୋର ଧାରଣା ହୋଇଥିଲା । (ପୃ.-୧୫୮)

ଖ୍ରୀ. ୧୯୪୭ ମସିହାଟି ଡଃ ଦାସଙ୍କ ପାଇଁ ଏକ ଘଟଣା ବହୁଳ ବର୍ଷ ଥିଲା । ସେହି ବର୍ଷ ମେ ମାସରେ ସେ ପ୍ରଥମ M.B.B.S. ପରୀକ୍ଷାରେ ପାସ୍ କରି ରୋଗୀ ଚିକିତ୍ସା ତାଲିମ୍

କ୍ଲାସ୍‌ରେ ଯୋଗ ଦେଲେ । ଜୁନ୍ ମାସରେ ତାଙ୍କର ବୈବାହିକ ଜୀବନ ଆରମ୍ଭ ହେଲା ଏବଂ ଅଗଷ୍ଟ ମାସରେ ଭାରତ ସ୍ୱାଧୀନ ହେଲା । ୧୯୩୬ ମସିହାରେ ବିଚ୍ଛିନ୍ନାଞ୍ଚଳକୁ ଛାଡ଼ି ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାବେଳେ ଓଡ଼ିଶାବାସୀଙ୍କ ଆନନ୍ଦରେ ଯେପରି ଦୁଃଖ ମିଶିଯାଇଥିଲା । ଖଣ୍ଡିତ ହିନ୍ଦୁସ୍ଥାନର ମୁକ୍ତିରେ ସେହିପରି ଆନନ୍ଦ ସହ ନୈରାଶ୍ୟର ଭାବ ତାଙ୍କ ମନରେ ସୃଷ୍ଟି ହୋଇଥିବାର ସେ ଦର୍ଶାଇଛନ୍ତି । ପୁଣି ଦେଶ ସ୍ୱାଧୀନ ହେବା ପରେ ସୁବିଧାବାଦୀ କ୍ଷମତାଲିପ୍ସୁ ନେତାମାନେ ଖଦଡ଼ ପିନ୍ଧି ଦେଶକୁ ଶୋଷଣ କରିବା ଦେଖି ସେ ପିଲାଦିନରୁ ସ୍ୱାଧୀନତା ସୈନିକର ପୋଷାକ ରୂପେ ପିନ୍ଧି ଆସୁଥିବା ଖଦଡ଼କୁ ପରିତ୍ୟାଗ କରିଛନ୍ତି ।

ଡଃ ଦାସଙ୍କ ବୈବାହିକ ଜୀବନର ଅନୁଭୂତି ଖୁବ୍ ସୁଖପ୍ରଦ ଥିଲା । ତାଙ୍କର ପତ୍ନୀ ବାସନ୍ତୀଦେବୀ ରାଜନୈତିକ ଆଦର୍ଶରେ ଗଢ଼ିଉଠିଥିବା ଏକ ସଂସ୍କୃତି ସମ୍ପନ୍ନ ପରିବାରରୁ ଆସିଥିବାରୁ ଡଃ ଦାସଙ୍କ ଘରର ଚଳଣି ସହିତ ନିଜକୁ ବେଶ୍ ଖାପ ଖୁଆଇ ପାରିଥିଲେ । ତେଣୁ ଲେଖକ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି– "ଉତ୍‌ଥାନ ପତନ ଭିତରେ ଗତି କରୁଥିବା ମୋର ଜୀବନ ସହିତ ତାଳ ଦେଇ ଚାଲିବାପାଇଁ ମୋର ପିତା ଯେ ମୋ ପାଇଁ ଏକ ଉପଯୁକ୍ତ ଜୀବନ ସାଥୀ ବାଛିଥିଲେ ସେଥିପାଇଁ ମୁଁ ଚିରକୃତଜ୍ଞ । (ପୃ.–୧୯୧)

ଏହିପରି ନିଜ ଜୀବନରେ ବହୁ ଅନୁଭୂତି ସେ କାହାଣୀ କହିବା ପରି 'ଜୀବନର ଛାପ' ରେ ବର୍ଣ୍ଣନା କରିଯାଇଛନ୍ତି । ମେଡ଼ିକାଲ ପଢ଼ିବା ସମୟର ଅଭିଜ୍ଞତା ମାଧ୍ୟମରେ ସେ ସମୟର ଶିକ୍ଷାବ୍ୟବସ୍ଥାରେ ଥିବା ଅଭାବ ଓ ଅସୁବିଧା ସମ୍ପର୍କରେ ମଧ୍ୟ ସେ ପାଠକଙ୍କୁ ସୂଚାଇ ଦେଇଛନ୍ତି । ସେହିପରି ଉଚ୍ଚ ଶିକ୍ଷା ପାଇଁ ଆମେରିକା ଯାଇ ସେଠାରେ ସେ ଅନେକ ପରିବାର ସହ ମିଶି ସେମାନଙ୍କ ସାମାଜିକ ବିଚାରଧାରା ଓ ଚାଲିଚଳନ ସମ୍ପର୍କରେ ଯେଉଁ ଅଭିଜ୍ଞତା ହାସଲ କରିଥିଲେ ତାହା ତାଙ୍କ ଆତ୍ମଜୀବନୀରେ ସ୍ଥାନିତ ହୋଇଛି । ତାଙ୍କ ରୋଗୀ ଚିକିତ୍ସା ସମ୍ବନ୍ଧୀୟ ବହୁ ଅନୁଭୂତିର କଥା ମଧ୍ୟ ଆଲୋଚ୍ୟ ଗ୍ରନ୍ଥରେ ବର୍ଣ୍ଣିତ । ଶେଷରେ ବହୁ ପ୍ରତିଷ୍ଠିତ ସାହିତ୍ୟ ସ୍ରଷ୍ଟାମାନଙ୍କ ସାନିଧ୍ୟରେ ଆସି ତାଙ୍କ ସାହିତ୍ୟସାଧନା କିପରି ପରିପୁଷ୍ଟ ହୋଇଛି, ତାହାର ଦୃଷ୍ଟାନ୍ତ ଦେଇ ଗ୍ରନ୍ଥଟି ଶେଷ କରିଛନ୍ତି ।

ବାଲ୍ୟକାଳରୁ ବିକ୍ରମ ଦାସଙ୍କର ପ୍ରତ୍ୟେକ ବିଷୟରେ ଅନୁସନ୍ଧାନ କରିବାର ପ୍ରବୃତ୍ତି ରହିଥିଲା । ପରବର୍ତ୍ତୀ କାଳରେ ସେହି ପ୍ରବୃତ୍ତି ତାଙ୍କୁ ବିଭିନ୍ନ ତଥ୍ୟ ଅନୁସନ୍ଧାନ କରି ଇତିହାସ ଓ କିମ୍ବଦନ୍ତୀ ସମ୍ବଳିତ ଉପନ୍ୟାସମାନ ରଚନା କରିବା ପାଇଁ ପ୍ରେରଣା ଯୋଗାଇଥିଲା । ପିଲାଦିନେ ସେ ଯେଉଁ ମଣିମାଙ୍କ ଉଆସର ପାଚେରି ଭିତରେ ଖେଳୁଥିଲେ, ପଚାଶ ବର୍ଷ ପରେ ଜନମାନବ ଶୂନ୍ୟ  ସେହି ଉଆସର ଡିହରେ ଗୋରୁ ଚରୁଥିବା ଦେଖି ସେ ତାଙ୍କ ବାଲ୍ୟସ୍ମୃତିକୁ ସାଉଁଟିଛନ୍ତି । ସେହି ସ୍ମୃତିରେ ପ୍ରତୀତିକୁ ମିଶାଇ ସେ ସାକ୍ଷୀଗୋପାଳଙ୍କ ଚନ୍ଦନ ପୋଖରୀ ନିକଟରେ ଥିବା ପୁରୀ ଗଜପତି ମହାରାଜା ତୃତୀୟ ରାମଚନ୍ଦ୍ର ଦେବଙ୍କ ବଂଶର ଦାୟାଦ ମଣିମା ପଦ୍ମନାଭ ଦେବ ଓ ତାଙ୍କ ଉଆସ ସମ୍ବନ୍ଧରେ ବହୁ ତଥ୍ୟ ସଂଗ୍ରହ କରି ତାଙ୍କର ପ୍ରଥମ ଉପନ୍ୟାସ– 'ମଣିମା ଡିହ' ଲେଖିଛନ୍ତି । ଖ୍ରୀ. ୧୯୮୧ ରେ ଗ୍ରନ୍ଥମନ୍ଦିର ଦ୍ୱାରା ଉପନ୍ୟାସ ପ୍ରକାଶ ପାଇବା ପରେ ପାଠକ ମହଲରେ ଖୁବ୍ ଆଦୃତି ଲାଭ କରିଛି ।

ଆଲୋଚ୍ୟ ଉପନ୍ୟାସର ବିଷୟବସ୍ତୁ ମଣିମାଙ୍କ ଚାରିତ୍ରିକ ମହତ୍ତ୍ୱକୁ କେନ୍ଦ୍ର କରି ଗଢ଼ିଉଠିଛି । ଗଜପତି ରାମଚନ୍ଦ୍ର ଦେବ (୩ୟ)ଙ୍କ କନିଷ୍ଠ ପୁତ୍ର କଣାସ ଅଞ୍ଚଳର ସାମନ୍ତରାଜା ଥିଲେ । ସେ ଥିଲେ ସାକ୍ଷୀଗୋପାଳ ମନ୍ଦିରର ପ୍ରତିଷ୍ଠାତା । ସେ ଓ ତାଙ୍କର ରାଣୀ ଗୋପାଳ ଜିଉଙ୍କ ପରମ ଭକ୍ତ ଥିଲେ । ମହାରାଣୀ ନିଃସନ୍ତାନ ଥିବାରୁ  ତାଙ୍କର ଜଣେ ସହଚରୀ (ସାନରାଣୀ) ମନୋହାରିଣୀଙ୍କ ଜଠରରୁ ଜନ୍ମଲାଭ କରିଥିବା ମଣିମା ପଦ୍ମନାଭ ଦେବ ଥିଲେ ଗଜପତି ବଂଶର କଣାସ ଶାଖାର ଶେଷ ରାଜା । ପିତାଙ୍କ ତିରୋଧାନ ପରେ ମଣିମା ମଧ ଗୋପାଳଙ୍କ ସେବାରେ ନିଜ ସମ୍ପତ୍ତି ମନ୍ଦିରକୁ ଉତ୍ସର୍ଗ କରିଥିଲେ । ଲୋକେ ତାଙ୍କୁ ମଣିମା ବୋଲି ଡାକି ରାଜାସାହେବ ପଦବୀରେ ଭୂଷିତ କରିଥିଲେ ।

ଏହି ଉପନ୍ୟାସରେ ସାକ୍ଷୀଗୋପାଳ ମନ୍ଦିର ସମ୍ପର୍କରେ ବହୁ ତଥ୍ୟ ଓ ତତ୍ତ୍ୱ ଉପସ୍ଥାପିତ ହୋଇଅଛି । ସାକ୍ଷୀଗୋପାଳ ପ୍ରଥମେ କନ୍ତଳବାଇଠାରେ ଥିଲେ । ରାମଚନ୍ଦ୍ର ଦେବ (୩ୟ) ନିଜ ପୁତ୍ର ତଥା କଣାସର ସାମନ୍ତରାଜାଙ୍କ ଅନୁରୋଧକ୍ରମେ ଗୋପାଳଙ୍କୁ ପୁରୀ ମନ୍ଦିରରେ ରଖିବାପାଇଁ ନିର୍ଦ୍ଦେଶ ଦେଲେ । ଖ୍ରୀ. ୧୮୫୭ରେ ରାମଚନ୍ଦ୍ର ଦେବଙ୍କ ଦେହାନ୍ତ ପରେ କଣାସ

ରାଜା ସିଦ୍ଧ ବକୁଳ ବନରେ ମନ୍ଦିର ନିର୍ମାଣ କରି ଖ୍ରୀ.୧୮୬୨ରେ ଗୋପାଳ ଜିଉଙ୍କୁ ବିଜେ କରାଇ ମନ୍ଦିର ପ୍ରତିଷ୍ଠା କଲେ ।

ପୁଣି ରଣପୁରର ଭକ୍ତ-ରାଜା ଶ୍ରୀରାଧାଙ୍କ ପିତଳ ମୂର୍ତ୍ତି ଗଢ଼ା ଯିବା ପାଇଁ ତେର ହଜାର ରାମାଭିଷେକ ସ୍ୱର୍ଣ୍ଣ ମହୁର୍ ଓ ନଅଶହ ବିଶା ପିତଳ ଦେଇଥିଲେ ।

ଏ ଉପନ୍ୟାସ ଅତି ସହଜ ଓ ସରଳ ଭାଷାରେ ଲେଖକ ଯେପରି ଗ୍ରାମ୍ୟ ଜୀବନର ନିଖୁଣ ଚିତ୍ର ଉପସ୍ଥାପନ କରିଛନ୍ତି ତାହା ପାଠ କଲେ ତାଙ୍କ ରଚନା ଶୈଳୀରେ କଥା ସମ୍ରାଟ ଫକୀରମୋହନଙ୍କ ପ୍ରଭାବ ସ୍ୱତଃ ବାରି ହୋଇଯାଏ । ତେଣୁ ଏହି ପୁସ୍ତକ ସମ୍ପର୍କରେ ସୂଚନା ଦେଇ ବିଶିଷ୍ଟ ଔପନ୍ୟାସିକ କାହ୍ନୁ ଚରଣ କହିଛନ୍ତି- ମଣିମାଡିହ ଉପନ୍ୟାସ ପଢ଼ିବାବେଳେ ମୋର ମନେ ହେଉଥିଲା ସତେକି ଓଡ଼ିଆ ଉପନ୍ୟାସର ଜନ୍ମଦାତା ବ୍ୟାସକବି ଫକୀର ମୋହନଙ୍କ ଅପ୍ରକାଶିତ ଆଉ ଗୋଟିଏ ଉପନ୍ୟାସ ପଢୁଛିକି ?

ଖ୍ରୀ.୧୯୮୫ରେ ପ୍ରକାଶିତ ବିକ୍ରମ ଦାସଙ୍କ ଦ୍ୱିତୀୟ ଉପନ୍ୟାସ 'ବୁଦ୍ଧଖୋଲର ମାୟା' କଳିଙ୍ଗର ସାଧବ ପୁଅ ଓ ସୁଦୂର ଆମେରିକାରେ ରହିଥିବା ଓଡ଼ିଆ ସଂସ୍କୃତିର ପାଦଚିହ୍ନକୁ ଆଧାର କରି ରଚିତ । ଏଥିରେ ଚରିତ୍ର ଓ ଘଟଣାର ବୈଶିଷ୍ଟ୍ୟ ସଂସ୍ଥାପନ ରୀତି ମଧ୍ୟରେ ହାସ୍ୟରସ ସୃଷ୍ଟି କରିବାରେ ଔପନ୍ୟାସିକଙ୍କ ଦକ୍ଷତାର ପ୍ରଶଂସା କରି କଥାକାର ସୁରେନ୍ଦ୍ର ମହାନ୍ତି ଲେଖିଛନ୍ତି- ''କେବଳ ମନୋରଞ୍ଜନ ନୁହେଁ, ଲୋକ ଶିକ୍ଷା ଓ ଲୋକ ଜାଗରଣ, ନିଜର ଐତିହ୍ୟ, ସଂସ୍କୃତି ସମ୍ପର୍କରେ ସଚେତନ ହେବା ପାଇଁ ଆହ୍ୱାନ ଡଃ ଦାସଙ୍କ ରଚନାରେ ଅତି ସୋଚ୍ଚାର ।''

'ନିର୍ବାସିତ ଗଜପତି' (ପ୍ରକାଶ କାଳ- ଖ୍ରୀ.୧୯୮୮)ରେ ଔପନ୍ୟାସିକ ଓଡ଼ିଶା ଇତିହାସର ଏକ ବେଦନାମୟ ଅଧ୍ୟାୟକୁ ଉନ୍ମୋଚନ କରିଛନ୍ତି । ଜଗନ୍ନାଥ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମା ଭାବେ ପରିଚିତ ଗଜପତି ରାଜବଂଶର ଦାୟାଦ ତୃତୀୟ ଦିବ୍ୟସିଂହ ଦେବଙ୍କ ଉପରେ ଇଂରେଜ ସରକାର ଚକ୍ରାନ୍ତ କରି ଏକ ବ୍ରହ୍ମହତ୍ୟା ଦୋଷ ଲଦି ତାଙ୍କୁ କିପରି କଳାପାଣି (ଆଣ୍ଡାମାନର କାରାଗାର) ପଠାଇ ଦେଇଥିଲେ ତାହା ବର୍ଣ୍ଣନା କରିବା ସହ ଲେଖକ ସେଇ ଅପବାଦରୁ ଗଜପତିଙ୍କୁ ମୁକ୍ତ କରି ଐତିହାସିକ ସତ୍ୟକୁ ଲୋକଲୋଚନକୁ ଆଣିବାକୁ ପ୍ରୟାସ କରିଛନ୍ତି । ଏହି ଗ୍ରନ୍ଥ ଉପରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ 'ନିର୍ବାସିତ' ଉପନ୍ୟାସର ପ୍ରଭାବ ଲକ୍ଷ୍ୟ କରାଯାଇପାରେ । ତେବେ ନିଜସ୍ୱ ରଚନା ଶୈଳୀରେ ଡଃ ଦାସ ଉପନ୍ୟାସଟିକୁ ସରସ, ସୁନ୍ଦର ଓ ପ୍ରାଞ୍ଜଳ କରିପାରିଛନ୍ତି ।

ଅତୀତରେ ଆମ ଗଜପତିମାନଙ୍କ ସଂଘର୍ଷମୟ ଜୀବନର କାହାଣୀ ବିକ୍ରମ ଦାସଙ୍କ ହୃଦୟକୁ ବାରମ୍ବାର ଆଲୋଡ଼ିତ କରିଛି । ତେଣୁ ଖ୍ରୀ.୧୯୯୩ରେ ପୁଣି ତାଙ୍କ ଲେଖନୀରୁ ପ୍ରକାଶ ପାଇଛି- 'ଆମ ଗଜପତି ଆମ ଗାଁ' । ଏ ପୁସ୍ତକଟିକୁ ଲେଖକ ରମ୍ୟରଚନାର ଅନ୍ତର୍ଭୁକ୍ତ କରିଛନ୍ତି । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବଙ୍କ ମୃତ୍ୟୁ ପରେ ରାଜମହେନ୍ଦ୍ରୀ କାରାଗାରରୁ ମୁକ୍ତ ହୋଇ ବୀର ରାଜପୁରୁଷ ରମେଇ ରାଉତରା ଗଜପତି ରାମଚନ୍ଦ୍ର ନାମରେ ଅଭିଷିକ୍ତ ହୋଇଥିଲେ । ସେ ଜଗନ୍ନାଥଙ୍କ ନାମରେ ଧର୍ମ ଶାସନ ଚଳାଇବା ପାଇଁ ଜଗନ୍ନାଥ ମନ୍ଦିରର ମୁକ୍ତି ମଣ୍ଡପକୁ ସୁସଂଗଠିତ କରିଥିଲେ । ଏହି ମୁକ୍ତି ମଣ୍ଡପର ପଣ୍ଡିତମାନଙ୍କୁ ନିର୍ବାଚିତ କରି ପଠାଇବା ପାଇଁ ସେ ଷୋଳ ଗୋଟି ବ୍ରାହ୍ମଣ ଶାସନ ବସାଇଥିଲେ । ସେଥିମଧ୍ୟରୁ ବିକ୍ରମ ଦାସଙ୍କ ଗ୍ରାମ ଶ୍ରୀରାମଚନ୍ଦ୍ରପୁର ଥିଲା ଅନ୍ୟତମ । ଏ ଗ୍ରାମ ପୁରାତତ୍ତ୍ୱ ଦୃଷ୍ଟିରୁ ଯେତିକି ପ୍ରସିଦ୍ଧି ଲାଭ କରିଛି ତାହାଠାରୁ ଅଧିକ ଖ୍ୟାତି ଲାଭ କରିଛି ଏହି ଗ୍ରାମରେ ଜନ୍ମ ହୋଇ ଦେଶ ଓ ସମାଜର ସେବା କରିଥିବା ମନୀଷୀମାନଙ୍କ ପାଇଁ । ଲେଖକ ତାଙ୍କ ଗ୍ରାମକୁ ପ୍ରାଣଠାରୁ ଅଧିକ ଭଲ ପାଉଥିବାରୁ 'ଆମ ଗଜପତି ଆମ ଗାଁ' ଉପନ୍ୟାସରେ ଶ୍ରୀରାମଚନ୍ଦ୍ରପୁରର ପ୍ରତିଷ୍ଠା, ଶତାବ୍ଦୀ ବ୍ୟାପୀ ତାର ଐତିହ୍ୟ ଓ ସେହି ଗ୍ରାମରୁ ଐତିହାସିକ ବ୍ୟକ୍ତିମାନଙ୍କ ଯୁଗାନ୍ତକାରୀ ଆଦର୍ଶର ଗାରିମା ବର୍ଣ୍ଣନା କରିଛନ୍ତି । ଗ୍ରାମର ଆଦି ଜ୍ୟୋତି ପଣ୍ଡିତ ହରିହର ଦାଶଶର୍ମା, ଜ୍ଞାନଗୁରୁ ପଣ୍ଡିତ ନୀଳକଣ୍ଠ ଦାସ, ଅଜାତ ଶତ୍ରୁ ଜନନାୟକ ଆଚାର୍ଯ୍ୟ ହରିହର ଦାସ, ଉତ୍କଳ ସମ୍ମିଳନୀର ପ୍ରଚାରକ ଅନନ୍ତ ମିଶ୍ର, ଲୋକ ସେବକ ମଣ୍ଡଳର ଆଜୀବନ ସଦସ୍ୟ ସମାଜ ଦୈନିକ ସମ୍ପାଦକ, ଓଡ଼ିଶାର ପୂର୍ବତନ ମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ଜୀବନର ବିଶିଷ୍ଟ ଘଟଣାବଳୀ ବର୍ଣ୍ଣନା କରି ଲେଖକ ପୁସ୍ତକଟିକୁ ଅନୁସନ୍ଧିତ୍ସୁ ପାଠକମାନଙ୍କ ପାଇଁ ତଥ୍ୟବହୁଳ କରିପାରିଛନ୍ତି । ଏହା ବ୍ୟତୀତ ନିଜ ଗ୍ରାମର ଦେବଦେବୀ, ବାର୍ଷିକ ପର୍ବପର୍ବାଣୀ, ଯାନିଯାତ୍ରା, ନାରୀ ଜାଗରଣ, ବିଶିଷ୍ଟ

ପଣ୍ଡିତ ବର୍ଗ ଓ ଖ୍ୟାତି ଲାଭ କରିଥିବା ଶିକ୍ଷକ ଗୋଷ୍ଠୀଙ୍କୁ ଲୋକଲୋଚନକୁ ଆଣିବାକୁ ମଧ୍ୟ ଲେଖକ ଯଥାସାଧ୍ୟ ଉଦ୍ୟମ କରିଛନ୍ତି ।

ଖ୍ରୀ. ୧୯୮୬ରେ ପ୍ରକାଶିତ 'ଅଲିଭା ଇତିହାସ' ଉପନ୍ୟାସଟି ଡାକ୍ତର ବିକ୍ରମ ଦାସଙ୍କର ଏକ ନୂତନ ପ୍ରତିଶ୍ରୁତିର ସ୍ୱାକ୍ଷର ବହନ କରିଛି । ଭାରତର ସ୍ୱାଧୀନତା ପାଇଁ ଯେଉଁ ସଂଗ୍ରାମୀମାନଙ୍କ ଅକ୍ଳାନ୍ତ ଉଦ୍ୟମ ଓ ଅତନ୍ଦ୍ର ସାଧନା ନେପଥ୍ୟରେ ରହିଯାଇଛି ସେମାନଙ୍କ ତ୍ୟାଗପୂତ ଜୀବନର ଚିତ୍ର ଏଥିରେ ରୂପାୟିତ । ଅହିଂସାବାଦୀ ସ୍ୱାଧୀନତା ସଂଗ୍ରାମୀ, ନିଃସ୍ୱାର୍ଥପର ସମାଜସେବୀ, ଆଦର୍ଶ ଶିକ୍ଷକ ଭିକାରୀବାବୁ ନିଜ ଜୀବନରେ ସବୁ ହରାଇବା ସତ୍ତ୍ୱେ ଜନସାଧାରଣଙ୍କ ଗହଣରେ ଆପଣା ସାଧନାର ସୌରଭ ବିତରଣ କରିଚାଲିଛନ୍ତି । କାରାବାସ ସମୟରେ ନିଜ ପତ୍ନୀଙ୍କୁ ହରାଇଛନ୍ତି, କନିଷ୍ଠ ପୁତ୍ର ସୂର୍ଯ୍ୟକୁମାର ସେଇ କାରାଗାରରେ ରୋଗ ଯନ୍ତ୍ରଣାରେ ମୃତ୍ୟୁ ବରଣ କରିଛି । ବଞ୍ଚିରହିଥିବା ଏକମାତ୍ର ପୁତ୍ର ନବକୁମାର ଦୁର୍ଗମ ଦୁରୂହ ନୂତନ ମାର୍ଗର ଅନ୍ୱେଷଣରେ ଚାଲିଛି । ପିତା ଭିକାରୀବାବୁ ଓ ପୁତ୍ର ନବକୁମାରଙ୍କ ମଧ୍ୟରେ ଲେଖକ ଯେଉଁ ଆଦର୍ଶଗତ ସଂକଟର ସମସ୍ୟା ସୃଷ୍ଟି କରିଛନ୍ତି ତାହା ହେଉଛି ପ୍ରତ୍ୟେକ ଗଣ ଆନ୍ଦୋଳନର ଦୁଇ ପିଢ଼ିଙ୍କ ମଧ୍ୟରେ ଥିବା ଜୀବନ ଦ୍ୱନ୍ଦ୍ୱର ସମସ୍ୟା ।

'ଅଲିଭା ଇତିହାସ'ର ୧୭ଗୋଟି ଅଧ୍ୟାୟ ମଧ୍ୟରେ ବିଶାଳ, ସଂଖ୍ୟା ବହୁଳ, ବହୁ ବିଭିନ୍ନତା ଓ ଏକତାର ଗନ୍ତାଘର ଭାରତବର୍ଷର ପ୍ରାୟ ୬୦ ବର୍ଷର ସ୍ୱାଧୀନତା ଆନ୍ଦୋଳନର ଆଲେଖ୍ୟ ରୂପାୟିତ ହୋଇଛି । ଲେଖକଙ୍କ ବର୍ଣ୍ଣନାର ଚମତ୍କାରିତା ଉପନ୍ୟାସଟିକୁ ସରସ ସୁନ୍ଦର କରିପାରିଛି । 'କଳ୍ପବଟ ମୂଳେ ବସି ଚିର ଉପବାସୀ' ପରି ତତ୍କାଳୀନ ଭାରତର ଅବସ୍ଥା ବର୍ଣ୍ଣନା କରି ଔପନ୍ୟାସିକ ଲେଖିଛନ୍ତି– ''ସ୍ୱର୍ଣ୍ଣପ୍ରସୂ ଭାରତରେ ସବୁ ଥାଇ ଭାରତୀୟଙ୍କ ପାଇଁ କିଛି ନାହିଁ, ଖାଇବାକୁ ଦାନା ନାହିଁ, ପିନ୍ଧିବାକୁ କନା ନାହିଁ, ଇଂରେଜମାନେ ଭାରତରୁ କଞ୍ଚାମାଲ ବିଲାତକୁ ଘେନିଯାଇ ସେଥିରେ ତିଆରି ହେଉଥିବା ସରଞ୍ଜାମକୁ ପୁଣି ଭାରତ ଆଣି ଚଢ଼ା ଦରରେ ବିକ୍ରି କରୁଛନ୍ତି ।'' (ଅଲିଭା ଇତିହାସ, ପୃ.–୧୧୯) । ସେହି ସମୟର ମାଟିବଂଶ ଅବଧାନଙ୍କ ଚାହାଳି ଶିକ୍ଷାପ୍ରଣାଳୀର ବର୍ଣ୍ଣନା କରି ଲେଖକ କହନ୍ତି– ''ସେକାଳର ଗୋଟିଏ ଚାହାଳି ନାନା ବିଷୟରେ ଶିକ୍ଷାଦିଆଯାଉଥିବା ବହୁ ଶିକ୍ଷକ ବିଶିଷ୍ଟ ସ୍କୁଲ ପରି । ଜଣେ ଅବଧାନ ବା ଶିକ୍ଷକ ଏକାଧାରରେ ଗଣିତଜ୍ଞ, ସାହିତ୍ୟିକ, ଐତିହାସିକ ଓ ଅର୍ଥଶାସ୍ତ୍ର ଭାବରେ ନିଜକୁ ଶିକ୍ଷିତ କରି ଛାତ୍ର ବା ଚାଟମାନଙ୍କୁ ଶିକ୍ଷା ଦିଅନ୍ତି । x x x ଅବଧାନଙ୍କର ସ୍କୁଲ ଘର ବା ମାସିକ ବେତନ କିଛି ନ ଥାଏ । ଗାଁ'ର ଆଖଡ଼ା ଘର, ଦେଉଳ ଚାଳିଆ କିମ୍ବା କାହା ଦାଣ୍ଡପିଣ୍ଡା ସ୍କୁଲ ଘରର କାମ କରେ । ଚାଟମାନେ ପାଳିକରି ଦିନକୁ ଗୋଟିଏ ବକ୍ତ ଖାଇବାକୁ ଦିଅନ୍ତି । (ପୃ– ୧୦)

ସ୍ୱାଧୀନତା ସଂଗ୍ରାମକାଳରେ ଆମ ଦେଶର ସ୍କୁଲଛାତ୍ରମାନେ ହଜାର ହଜାର ସଂଖ୍ୟାରେ ବାନର ସେନା ଗଢ଼ି ସ୍କୁଲ ପଢ଼ା ତ୍ୟାଗ କରି କିପରି ଦେଶ କାର୍ଯ୍ୟରେ ମାତିଥିଲେ ତାହା ବର୍ଣ୍ଣନା କରି ଔପନ୍ୟାସିକ ଲେଖିଛନ୍ତି – '' ବାନରସେନା ମଦ ଗଞ୍ଜେଇ ଦୋକାନ ଆଗରେ ପିକେଟିଂ କରୁଥିଲେ । ବିଦେଶୀ ଜିନିଷ ପୋଡ଼ି, ସେ ସବୁ ନ କିଣିବା ପାଇଁ ଲୋକଙ୍କୁ ଅନୁରୋଧ କରୁଥିଲେ । x x x ସହରରେ ପିକେଟିଂ କରିବା ଛଡ଼ା ଗାଁ, ଗଣ୍ଡା, ସହର ମଫସଲ ଚାରିଆଡ଼େ ଜାତୀୟ ସଂଗୀତ ଗାଇ ବୁଲୁଥିଲେ ।

''ଦେଶ ପଞ୍ଚାୟତ ଆଦେଶ ଦେଇଛି ଆଜି ଶୁଭଦିନ ଭାଇ ।

ସ୍ୱାଧୀନତା ଯୁଦ୍ଧ ଆରମ୍ଭ ଆଜିଠୁ ଚାରିଆଡ଼େ ଦେଖ ଚାହିଁ ।''

ଲେଖକ ନିଜେ 'ଆଜାଦ ହିନ୍ଦ ଫୌଜ' ସହ ସାମିଲ ହୋଇଥିବାରୁ ଏହି ଫୌଜର କାର୍ଯ୍ୟକଳାପ ସମ୍ପର୍କରେ ବିଶଦବିବରଣୀ ଦେଇ ଲେଖିଛନ୍ତି– ''ସାମରିକ ଶିକ୍ଷା ଦେବାଲାଗି ଆଜାଦ ହିନ୍ଦ ଫୌଜ ର ୯ଗୋଟି କେନ୍ଦ୍ର ଥିଲା । ସାମରିକ ଅଫିସରମାନଙ୍କୁ ତାଲିମ ଦେବାଲାଗି ରେଂଗୁନ୍ ଓ ସିଂଗାପୁରରେ ଦୁଇଟି କେନ୍ଦ୍ର ମଧ୍ୟ ଗଢ଼ାଯାଇଥିଲା । ଅଫିସର ଓ ନାଏକ ମାନେ ହିନ୍ଦୁସ୍ଥାନରେ ଶିକ୍ଷାପାଉଥିଲେ । ସେଠାରେ ଜାତି ଓ ସଂପ୍ରଦାୟର ଭେଦ ଦେଖାଯାଉନଥିଲା । ଯୁଦ୍ଧରେ ହିନ୍ଦୁସ୍ଥାନରେ ଆଦେଶ ଦିଆଯାଉଥିଲା । ଯୁଦ୍ଧବନ୍ଦୀ ସୈନ୍ୟଙ୍କ ବ୍ୟତୀତ ବହୁସଂଖ୍ୟକ ପ୍ରବାସୀ ଭାରତୀୟଙ୍କୁ ତାଲିମ କରାଯାଉଥିଲା ।'' (ପୃ.–୧୪୦–୧୪୧)

ଓଡ଼ିଶା ଇତିହାସ ଓ ଐତିହ୍ୟକୁ ନେଇ ପୂର୍ବୋକ୍ତ ଉପନ୍ୟାସଗୁଡ଼ିକ ଲେଖିବା ପରେ ଡାକ୍ତର ବିକ୍ରମ ଦାସ ଆଉ କେତୋଟି ଲଘୁ ଉପନ୍ୟାସ ରଚନା କରିଛନ୍ତି– ମୁଁ ଦଶରଥ ଓ ମୁଁ ବେଦବ୍ୟାସ ପୁସ୍ତକଦ୍ୱୟରେ ସେ ଯଥାକ୍ରମେ 'ରାମାୟଣ ଓ ମହାଭାରତ'ର ବିଷୟବସ୍ତୁ ଆତ୍ମକଥନ ଶୈଳୀରେ ଉପସ୍ଥାପନ କରି ପୁରାଣଗ୍ରନ୍ଥକୁ ଉପନ୍ୟାସ ରୂପଦେବାରେ ସଫଳ ହୋଇଛନ୍ତି ।

ଲେଖକଙ୍କ ପିତା ପଣ୍ଡିତ ନୀଳକଣ୍ଠ, ବଂଗୀୟ ଲେଖକ ଉପେନ୍ଦ୍ର କିଶୋରଙ୍କ 'ଛେଲେଦେର ରାମାୟଣ' ଓ 'ଛେଲେଦେର ମହାଭାରତ'କୁ ଅନୁସରଣ କରି ପିଲାଙ୍କ ପାଇଁ ସହଜବୋଧ ଗଦ୍ୟରେ 'ପିଲାଙ୍କ ରାମାୟଣ' ଓ 'ପିଲାଙ୍କ ମହାଭାରତ' ଲେଖି ଓଡ଼ିଆ ଶିଶୁ ସାହିତ୍ୟ କ୍ଷେତ୍ରରେ ଏକ ନୂତନ ଦିଗନ୍ତ ସୃଷ୍ଟି କରିଥିଲେ । ପିତାଙ୍କ ଦ୍ୱାରା ପ୍ରଭାବିତ ହୋଇ ବିକ୍ରମ ଦାସ ମଧ୍ୟ ଭିନ୍ନ ଏକ ଗଦ୍ୟ ଶୈଳୀରେ ରାମାୟଣ ଓ ମହାଭାରତର କଥାବସ୍ତୁ 'ମୁଁ ଦଶରଥ' ଓ 'ମୁଁ ବେଦବ୍ୟାସ' ଗ୍ରନ୍ଥଦ୍ୱୟରେ ପରିବେଷଣ କରିଛନ୍ତି । ରାମାୟଣ ଓ ମହାଭାରତ ପୁରାଣଦ୍ୱୟରେ ଦେବତାଙ୍କଠାରେ ମାନବିକତାର ଯେଉଁ ପରିପ୍ରକାଶ ଘଟିଛି ତାହାରି ବିଶ୍ଳେଷଣ କରି ଲେଖକ ଭିନ୍ନ ସ୍ୱାଦର ଉପନ୍ୟାସ ଦୁଇଟି ରଚନା କରିଛନ୍ତି ।

ପୁରାଣରେ ମୁନି, ଋଷିଙ୍କ ମୁଖରେ କିମ୍ବା ଦେବଦେବୀଙ୍କ ମୁଖରେ ପ୍ରାରମ୍ଭରୁ ସୃଷ୍ଟି ତତ୍ତ୍ୱ ବ୍ୟାଖ୍ୟା କରାଯାଇଥାଏ । କିନ୍ତୁ ଆଲୋଚ୍ୟ ଉପନ୍ୟାସରେ ଚରିତ୍ର ମୁଖରେ ହିଁ ସୃଷ୍ଟି ତତ୍ତ୍ୱର କଥା କୁହାଯାଇଛି । ଯେପରି 'ମୁଁ ଦଶରଥ'ରେ ଦଶରଥ ନିଜେ କହୁଛନ୍ତି– ''ଶୂନ୍ୟରେ ଉଡ଼ି ବୁଲୁଥିବା ନିରାକାର ବାଷ୍ପପିଣ୍ଡରୁ ହିଁ ପୃଥିବୀର ଉତ୍ପତ୍ତି । ଜୀବଜନ୍ତୁ ଉଦ୍ଭିଦ ଏପରିକି ଜୀବହୀନ ପଦାର୍ଥ ସୁଦ୍ଧା ସବୁ ସେହି ବାଷ୍ପପିଣ୍ଡରୁ ଜାତ । x x x ଥରକୁ ଥର ରୂପ ବଦଳାଇ ବିଭିନ୍ନ ରୂପ ନେବା ବା ସେହି ରୂପରେ ପୁଣି ଆବିର୍ଭାବ ହେବାହିଁ ଆତ୍ମାର ଗତି । ମୋର ଆତ୍ମା ଯୁଗ ଯୁଗ ଧରି ଉଡ଼ି ବୁଲୁଥିଲା । ଅଧିକାଂଶ ସମୟରେ ମୁଁ ଥିଲି ସ୍ୱର୍ଗୀୟ ମାର୍ଗରେ । ସେହି ମାର୍ଗରୁ ଓହ୍ଲାଇ ବହୁଥର ମୋର ଆତ୍ମା ମର୍ତ୍ତ୍ୟରେ ରୂପ ନେଇସାରି ପୁଣି ଫେରିଆସିଛି ମୋର ଶୂନ୍ୟ ସ୍ଥାନକୁ ।''

'ମୁଁ ଦଶରଥ'ରେ ଏହିପରି ଭାବେ ଔପନ୍ୟାସିକ ଦଶରଥଙ୍କ ସ୍ମୃତିରୁ ସମଗ୍ର ରାମାୟଣର ବିଷୟକୁ ଅଠର ଗୋଟି ଅଧ୍ୟାୟରେ ପରିବେଷଣ କରିବା ପରେ ଶେଷରେ ଦଶରଥଙ୍କ ଆତ୍ମତୃପ୍ତି ଓ ମୁକ୍ତି ଆକାଂକ୍ଷାକୁ ତାଙ୍କରି ମୁଖରେ ବ୍ୟକ୍ତ କରାଇ ଉପନ୍ୟାସଟି ସମାପ୍ତ କରିଛନ୍ତି ।

'ମୁଁ ବେଦବ୍ୟାସ'ରେ ଲେଖକ ମହାଭାରତର ସ୍ରଷ୍ଟା ବେଦବ୍ୟାସଙ୍କୁ ଚରିତ୍ରଭୂତ କରାଇ ତାଙ୍କରି ମୁଖରେ ମହାଭାରତର କଥାବସ୍ତୁକୁ ସାଂପ୍ରତିକ ସାମାଜିକ ଓ ରାଜନୈତିକ ପୃଷ୍ଠଭୂମିରେ ପରିପ୍ରେକ୍ଷୀରେ ବ୍ୟାଖ୍ୟାକରି ସଫଳ ହୋଇଛନ୍ତି ।

ପୌରାଣିକ ଭିତ୍ତିଭୂମି ଉପରେ ଏକ ବାସ୍ତବ ଚିତ୍ର ଅଙ୍କନ କରି ବିକ୍ରମ ଦାସ ଲେଖିଛନ୍ତି, 'ସ୍ୱପ୍ନର ପାଞ୍ଚାଳି' ଉପନ୍ୟାସ । ଏଥିରେ ସେ ଦ୍ରୌପଦୀଙ୍କ ବହୁପତି ବରଣ ସହ ସାଂପ୍ରତିକ ଭାରତୀୟ ସମାଜର ପ୍ରଚଳିତ ବହୁବିବାହ ପ୍ରଥାର ତୁଳନା କରି ଭାରତ ବିଭାଜନ ସମୟର ଏକ କରୁଣ ଚିତ୍ର ପ୍ରଦାନ କରିଛନ୍ତି । ତାଙ୍କର ଯୁକ୍ତିରେ ମହାଭାରତ ବର୍ଣ୍ଣିତ ଯାବତୀୟ ସଂସ୍କୃତି ଓ ଆଚାର ବ୍ୟବହାର ଏବେବି ଭାରତର ବିଭିନ୍ନ ସ୍ଥାନରେ ରହିଛି । ହିମାଳୟ ବକ୍ଷରେ ବିରାଜ କରୁଥିବା କେତେକ ରାଜ୍ୟରେ ଏବେ ବି ଗୋଟିଏ ସ୍ତ୍ରୀର ବହୁ ସ୍ୱାମୀ ଗ୍ରହଣ କରିବା ପ୍ରଥା ରହିଛି । ଏଇ ଅଞ୍ଚଳରେ ବାସ କରୁଥିବା ଲୋକମାନେ ଯେତେ ଭାଇ ସେତେ ଘର, ଯେତେ କନିଆଁ ସେତେ ବର– ଉକ୍ତିରେ ବିଶ୍ୱାସ ରଖନ୍ତି ନାହିଁ । କାରଣ ସେମାନଙ୍କୁ ହିମାଳୟର ଗଡ଼ାଣିଆ ଅଞ୍ଚଳକୁ ସମତଳ କରି କାଟି ଛୋଟ ଛୋଟ ଚାଷ ଜମି ପ୍ରସ୍ତୁତ କରିବାକୁ ପଡ଼ିଥାଏ । ଗୋଟିଏ ପରିବାରର ସୀମିତ ଚାଷ ଜମି ଥାଏ । ଭାଇମାନେ ଅଲଗା ଅଲଗା ଘର କଲେ ଏଇ ଚାଷ ଜମି ବଣ୍ଟନରେ ବାଧା ଉପୁଜେ । ଗୋଟିଏ ପରିବାରର ସବୁ ଭାଇଙ୍କ ପାଇଁ ଗୋଟିଏ ମାତ୍ର ସ୍ତ୍ରୀ ରହିଲେ ଭାଇମାନେ ସବୁଦିନ ପାଇଁ ବାନ୍ଧି ହୋଇ ରହିବେ । ଏକଥା ଉପନ୍ୟାସର ନାୟକ କାଶ୍ମୀରବାସୀ କେଶୋ ସିଂହର ମୁଖରେ ପ୍ରକାଶ ପାଇଛି । – ''ମୁଁ ବାହା ନ ହେଲେ କଅଣ ହେଲା ? ମୋ ବଡ଼ଭାଇତ ବାହା ହେଇଛନ୍ତି, ସେ ସ୍ତ୍ରୀଟି ଆମ ସବୁ ଭାଇଙ୍କର । ତା ପିଲା ସବୁ ଆମ ସମସ୍ତଙ୍କର'', (ପୃ.–୧୯) । ଉପନ୍ୟାସର ପଣ୍ଡିତ ମହାଶୟଙ୍କ ଭାଷାରେ ଆମ କେଶୋ ଜଣେ ଏ ଯୁଗର ପାଞ୍ଚାଳିଙ୍କ ପତି । ସେ ମଧ୍ୟମ ପାଣ୍ଡବ ଅର୍ଜୁନ ।'' (ପୃ.–୨୦)

ଆଲୋଚ୍ୟ ଗ୍ରନ୍ଥରେ ଲେଖକ ଦ୍ରୌପଦୀଙ୍କ ବହୁପତି ବରଣକୁ ଏକ ସାମାନ୍ୟ ସ୍ୱାର୍ଥାନ୍ୱେଷୀ ସାମାଜିକ ବନ୍ଧନ ଭାବେ

ଗ୍ରହଣ ନ କରି ଆଧ୍ୟାତ୍ମିକ ଜୀବନର ଆଧାର ଭାବେ ଗ୍ରହଣ କରିଛନ୍ତି । ତେଣୁ ସେ ପଣ୍ଡିତଙ୍କ ମୁଖରେ କୁହାଇଛନ୍ତି– ''ପାଞ୍ଚାଳିଙ୍କୁ ପ୍ରକୃତି ସହିତ ତୁଳନା କରାଯାଇ ପାଞ୍ଚ ପାଣ୍ଡବଙ୍କୁ ପଞ୍ଚେନ୍ଦ୍ରିୟ ବା ପଞ୍ଚପୁରୁଷ ସଙ୍ଗେ ତୁଳନା କରାଯାଇଛି । ସେମାନଙ୍କ ମିଳନରେ ପ୍ରକୃତି ଓ ପୁରୁଷର ମିଳନ ହୋଇ ପରସ୍ପର ଭିତରେ ସ୍ୱର୍ଗୀୟ ପ୍ରେମର ବନ୍ଧନ ସ୍ଥାପିତ ହୋଇପାରିଥିଲା ।'' (ପୃ.–୨୪)

କଳିଯୁଗର ପାଞ୍ଚାଳି ଭାବେ ଲେଖକ କେଶୋ ସିଂ ଭାଇମାନଙ୍କ ପତ୍ନୀ ରମାର ଅସହାୟ ଅବସ୍ଥା ବର୍ଣ୍ଣନା କରିଛନ୍ତି । ସେ କିପରି ଦଙ୍ଗାରେ ତା'ର ସ୍ୱାମୀମାନଙ୍କୁ ହରାଇଛି, ତା'ର ଦୁଇ କନ୍ୟା ଓ ତିନି ପୁତ୍ର କିପରି ପାକିସ୍ତାନୀ ସୈନ୍ୟଙ୍କ ନାରକୀୟ ପାଶବିକତାର ଶିକାର ହୋଇଛନ୍ତି ତାହାର କରୁଣ ଚିତ୍ର ଉପନ୍ୟାସଟିରେ ପରିଲକ୍ଷିତ । ସ୍ୱାମୀହରା ଓ ସନ୍ତାନହରା ରମାର ଅବସ୍ଥା ବର୍ଣ୍ଣନା କରି ଔପନ୍ୟାସିକ ଲେଖିଛନ୍ତି– କୁରୁକ୍ଷେତ୍ର ଯୁଦ୍ଧର ଶେଷ ଯାମିନୀରେ କୌରବ ପକ୍ଷର ଅଶ୍ୱତ୍ଥାମା ପାଣ୍ଡବଙ୍କ ଶିବିର ଭିତରେ ପଶି ପାଞ୍ଚାଳିଙ୍କ ପାଞ୍ଚ ସନ୍ତାନଙ୍କୁ ସୁପ୍ତ ଅବସ୍ଥାରେ ହତ୍ୟ କଲା ଭଳି ତାର ସବୁ ସନ୍ତାନ ବଳି ପଡ଼ି ସାରିଥିଲେ । ସ୍ୱାମୀମାନେ ଫେରିବାକୁ ଅଭୟ ଦେବାର ଆଶା ଆଉ ନ ଥିଲା । (ପୃ.–୧୭୯)

ସର୍ବହରା ବେସାହାରା ରମା ଶେଷରେ ନିଜକୁ ରମାଜାନ୍ ବିବି ଭାବେ ପରିଚିତ କରାଇ ତାକୁ ଆଶ୍ରୟ ଦେଇଥିବା ୟୁସୁଫ୍‌କୁ ନିଜର ପଞ୍ଚମ ସ୍ୱାମୀ ରୂପେ ଗ୍ରହଣ କରିଛି । ବିଭାଜନ ସମୟରେ ପୋଲିସ୍ ରେକର୍ଡ଼ରେ କେଶୋସିଂର ନାମ କାଜୋର ଖାଁ ହୋଇଯାଇଛି । ସେ ବିଭିନ୍ନ ସ୍ଥାନରେ ନିଜ ପତ୍ନୀ ରମାକୁ ଖୋଜୁ ଖୋଜୁ ଶେଷରେ ବନ୍ଧୁ ୟୁସୁଫ୍‌ର ପତ୍ନୀ ଭାବେ ତାକୁ ଦେଖି ହତବାକ୍ ହୋଇଯାଇଛି । ଏହିଠାରେ ଉପନ୍ୟାସଟି ଶେଷ ହୋଇଛି ।

ଜଗନ୍ନାଥ ଧର୍ମ ଓ ଜଗନ୍ନାଥ ସଂସ୍କୃତିର ପ୍ରଚାର ଓ ପ୍ରସାର ପାଇଁ ପୁରୀର ଯାତ୍ରୀ ଗୁମାସ୍ତାମାନଙ୍କ ସମର୍ପିତ ଜୀବନକୁ ଆଧାର କରି ଡାକ୍ତର ବିକ୍ରମ ଦାସ ଲେଖିଛନ୍ତି, 'ଭଲେ ବିରାଜୋ ଜୀ' ଉପନ୍ୟାସ ।

ବିଭିନ୍ନ ଧର୍ମରେ ଧର୍ମ ପ୍ରଚାରକମାନେ ଥିବା ପରି ଜଗନ୍ନାଥଙ୍କ ଯାତ୍ରୀ ଗୁମାସ୍ତାମାନେ ହେଉଛନ୍ତି ଜଗନ୍ନାଥ ଧର୍ମର ପ୍ରଚାରକ । ଦେହରେ ଧୋତି ଓ ଫତେଇ ବାମ କାନ୍ଧ ଉପରେ ସତରଞ୍ଜି ଉପରେ ଦୁଇଟି ଥଳି ବନ୍ଧା ହୋଇଥିବା ଖାଡ଼ିଆ, ଡାହାଣ କାନ୍ଧ ଉପରେ ଗାମୁଛା, ମୁଣ୍ଡରେ ଚାଦରର ଠେକା– ଏହା ହେଉଛି ପୁରୀର ଯାତ୍ରୀ ଗୁମାସ୍ତାମାନଙ୍କ ସ୍ୱତନ୍ତ୍ର ବେଶ ।

ଭାରତରେ ଇଂରେଜ ଶାସନ ଚାଲିଥିବା ସମୟରେ ଖ୍ରୀଷ୍ଟଧର୍ମ ପ୍ରଚାରକ ପାଦ୍ରୀମାନେ ବିଦେଶର ବଡ଼ ବଡ଼ ସଂସ୍ଥାମାନଙ୍କ ପୃଷ୍ଠପୋଷକତାରେ ଭାରତ ଆସି ବିଭିନ୍ନ ଉପାୟରେ ଭାରତବାସୀଙ୍କୁ ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ପାଇଁ ପ୍ରବର୍ତ୍ତାଉଥିଲେ । ସେମାନେ ଯେଉଁ ସ୍ଥାନକୁ ଯାଉଥିଲେ ସେସ୍ଥାନର ଭାଷା ଇତିହାସ ସଂସ୍କୃତି ବିଷୟରେ ଅଧ୍ୟୟନ କରୁଥିଲେ । ରଥଯାତ୍ରା ପ୍ରଭୃତି ଯାନିଯାତ୍ରା ସମୟରେ ଲୋକ ସମାଗମ ଦେଖି ଖ୍ରୀଷ୍ଟଧର୍ମ ପ୍ରଚାର ପୁସ୍ତକମାନ ବାଣ୍ଟୁଥିଲେ । ବିଭିନ୍ନ ସ୍ଥାନରେ ବିଦ୍ୟାଳୟ ଓ ସେବା ସଂସ୍ଥାଦି ସ୍ଥାପନପୂର୍ବକ ଆମ ଦେଶବାସୀଙ୍କୁ ସେମାନଙ୍କ ଧର୍ମ ପ୍ରତି ଆକୃଷ୍ଟ କରୁଥିଲେ । ଆମ ଲୋକମାନେ ସେମାନଙ୍କ କଥାରେ ଭଳି ଗଣ୍ଡିଏ ଭଲ ଖାଇ କେତେକ ବିଶେଷ ସୁବିଧା ପାଇଁ ହିନ୍ଦୁ ଧର୍ମ ପରିତ୍ୟାଗ କରି ଖ୍ରୀଷ୍ଟଧର୍ମ ଗ୍ରହଣ କରୁଥିଲେ ।

ଏହି ଧର୍ମାନ୍ତରକରଣକୁ ରୋକିବାପାଇଁ ଶ୍ରୀଜଗନ୍ନାଥଙ୍କ ପଣ୍ଡାମାନେ ଯାତ୍ରୀ ଗୁମାସ୍ତାମାନଙ୍କୁ ଦେଶବିଦେଶର ବିଭିନ୍ନ ସ୍ଥାନକୁ ପଠାଉଥିଲେ । ଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରଚାର କରିବା ପାଇଁ । ସେମାନେ ସେ ସ୍ଥାନମାନଙ୍କରେ ଜଗନ୍ନାଥ ଧର୍ମର ମହତ୍ତ୍ୱ ସଂପର୍କରେ ବୁଝାଇ ସେମାନଙ୍କୁ ଜଗନ୍ନାଥ ଦର୍ଶନ ଲାଗି ନିମନ୍ତ୍ରଣ କରୁଥିଲେ ଏବଂ ସେମାନଙ୍କଠାରୁ ଠାକୁରଙ୍କଲାଗି ଦାନ ଗ୍ରହଣ କରୁଥିଲେ ।

ସେ ସମୟରେ ଦେଶ ଭ୍ରମଣ ଲାଗି କୌଣସି ଯାନବାହନ ପ୍ରଚଳନ ନ ଥିବାରୁ ଯାତ୍ରୀ ଗୁମାସ୍ତାମାନଙ୍କୁ ଚାଲି ଚାଲି ଯିବାକୁ ପଡୁଥିଲା । କେବେ କେବେ ସେମାନେ ଡକାୟତ ବା ହିଂସ୍ରଜନ୍ତୁ ହାବୁଡ଼ରେ ପଡ଼ି ମୃତ୍ୟୁ ମୁଖରେ ପଡୁଥିଲେ ତ କେବେ ବିଦେଶକୁ ଯାଇ ଆଉ ଫେରୁନଥିଲେ । ଏ ସମ୍ପର୍କରେ ଔପନ୍ୟାସିକ ଲେଖିଛନ୍ତି– ''ପୂର୍ବକାଳରେ ଏ ବ୍ୟବସାୟରେ ଯେଉଁମାନେ ଜଗନ୍ନାଥ ଧର୍ମ ପ୍ରଚାର କରି ପୁରୀକୁ ଯାତ୍ରୀ ଆଣିବାକୁ ଯାଉଥିଲେ, ସେଥିରୁ ଅନେକ ଆଉ ଦେଶକୁ ଫେରି ପାରୁନଥିଲେ । ତେଣୁ ଯେଉଁମାନେ ବାରବର୍ଷରୁ ବେଶିକାଳ ବିଦେଶରେ ରହି ଆଉ ଦେଶକୁ ଫେରିପାରୁ ନ ଥିଲେ, ସେମାନଙ୍କୁ ମୃତ ବୋଲି ଧରି ନେଇ ପଲାସ ପତ୍ର ଦାହ କରି

ସେମାନଙ୍କର ଶୁଦ୍ଧିକ୍ରିୟା ସମ୍ପନ୍ନ କରାଯାଉଥିଲା ।'' (ଭଲେ ବିରାଜୋ ଜୀ, ପୃ.-୩)

ଆଲୋଚ୍ୟ ଉପନ୍ୟାସରେ ଲେଖକ ବିକ୍ରମ ଦାସ ଭଲ ପାଠ ପଢ଼ି ସଂସ୍କୃତ ଶାସ୍ତ୍ରରେ ପାଣ୍ଡିତ୍ୟ ଲାଭ କରିଥିବା ଚିନ୍ମୟ ମିଶ୍ର କିପରି ଘଟଣାଚକ୍ରରେ ପଡ଼ି ଯାତ୍ରୀ ବ୍ୟବସାୟରେ ଜଡ଼ିତ ହେଲେ, ପୁଣି ଡାକୁମାନଙ୍କ ଦ୍ୱାରା ଅପହୃତ ହୋଇ ଚଣ୍ଡୀପାଠ କରୁ କରୁ କିପରି ପୁରାଣ ପଣ୍ଡିତ ଓ ସନ୍ନ୍ୟାସୀ ଭାବେ ପରିଚିତ ହେଲେ ଏବଂ ଶେଷରେ ସାଧୁ ରମ୍ୟାନନ୍ଦ ସନ୍ନ୍ୟାସୀଙ୍କଠାରୁ ଜୀବନର ସାରସତ୍ୟ ବୁଝି ପୁଣି ଗୃହ ପ୍ରତ୍ୟାଗମନ କରି ଗାର୍ହସ୍ଥ୍ୟ ଜୀବନ ଅତିବାହିତ କଲେ ତାହାର ଏକ ଚମତ୍କାର ଆଲେଖ୍ୟ ପ୍ରଦାନ କରିଛନ୍ତି ।

ବିକ୍ରମ ଦାସଙ୍କ ରଚିତ 'ତିନି ପିଢ଼ିର ହୋଟେଲ' ଉପନ୍ୟାସଟି ସତ୍ୟଘଟଣା ଉପରେ ଆଧାରିତ । ଏଥିରେ କଲିକତାରେ ଥିବା ଓଡ଼ିଆମାନଙ୍କୁ କିପରି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ଜୀବିକା ନିର୍ବାହ କରିବାକୁ ପଡ଼ିଥାଏ ତାହା ବର୍ଣ୍ଣିତ । ସେହିପରି ତାଙ୍କ ରଚିତ 'ଅକଲ ଗୁଡୁମ୍' ଉପନ୍ୟାସରେ ଆଧୁନିକ ମଣିଷର ଉଚ୍ଛୃଙ୍ଖଳତା ଓ ସମାଜ ଉପରେ ତାର କୁପ୍ରଭାବ ନିଖୁଣ ଚିତ୍ର ଦେଖିବାକୁ ମିଳେ ।

ଡାଃ ବିକ୍ରମ ଦାସ ଦେଶ ବିଦେଶ ଭ୍ରମଣ କରି ଯେଉଁ ଅନୁଭୂତି ଓ ଅଭିଜ୍ଞତା ହାସଲ କରିଥିଲେ ତାହାକୁ ଆଧାରକରି ଲେଖିଛନ୍ତି 'ସେପଟ ଦୁନିଆଁ, 'ଚିର ବସନ୍ତର ଦେଶ ମରିମସ' ଓ 'ଲହୁ ଲୁହର କାଶ୍ମୀର' । ଭ୍ରମଣ ଜନିତ ଅଭିଜ୍ଞତା ସମ୍ପର୍କରେ ସେ କହନ୍ତି- ''ସବୁ ଅଭିଜ୍ଞତାଠାରୁ ଭ୍ରମଣ ଅଭିଜ୍ଞତା ସ୍ୱତନ୍ତ୍ର । ଯେ ଦେଶକୁ ଯାଇ ସେ ଫଳ ଖାଇ । ବିଭିନ୍ନ ଦେଶର ଭିନ୍ନ ଭିନ ଆଚାର ବ୍ୟବହାର ଚାଲିଚଳନ ସଂପର୍କରେ ଆସିଲେ ଭିନ୍ନ ସ୍ୱାଦର ଅଭିଜ୍ଞତା ମିଳେ ।'' 'ସେପଟ ଦୁନିଆ' ଗ୍ରନ୍ଥରେ ଲେଖକଙ୍କ ୟୁରୋପ ଓ ଆମେରିକା ଭ୍ରମଣଜନିତ ଅନୁଭୂତି ପ୍ରକାଶ ପାଇଛି । ସେ ଦେଶମାନଙ୍କର ଲୋକ ଚରିତ୍ର ସାମାଜିକ ସ୍ଥିତି ଓ ପ୍ରାକୃତିକ ଦୃଶ୍ୟାବଳୀ ଏଥିରେ ନିଖୁଣ ଭାବେ ଚିତ୍ରିତ ହୋଇଛି । 'ଚିର ବସନ୍ତର ଦେଶ ମରିସସ' ରେ ଦକ୍ଷିଣ ଗୋଲାର୍ଦ୍ଧର ସ୍ୱାଧୀନ ଦ୍ୱୀପ ମରିସସ ସ୍ୱର୍ଗୀୟ ପ୍ରକୃତିର ସୁନ୍ଦର ବର୍ଣ୍ଣନା ରହିଛି । କ୍ଷୁଦ୍ର ଆୟତନ ବିଶିଷ୍ଟ ମରିସସ ରାଜ୍ୟଟି ଭାରତ ମହାସାଗରର ଶେଷଭାଗରେ ମକରକ୍ରାନ୍ତି ଉପରେ ଅବସ୍ଥିତ । ସେ ଦେଶର ସମଶୀତୋଷ୍ଣ ଜଳବାୟୁ ସଂପର୍କରେ ଲେଖକ କହନ୍ତି – ''ସେଦେଶର ଉତ୍ତାପ ୨୫ ରୁ ୩୦ ଡିଗ୍ରୀ ଫାରେନ୍‌ହାଇଟ୍ ହୁଏ । ଦେଶର ସର୍ବଦା ସମୁଦ୍ର ବକ୍ଷରୁ ଆସୁଥିବା ମଳୟ ପବନ ବହୁଥାଏ, ଶୀତଦିନେ ପାଖ ସମୁଦ୍ରର ଉତ୍ତାପ ୨୨ ଡିଗ୍ରୀ ଓ ଖରାଦିନେ ୨୭ ଡିଗ୍ରୀ ଥାଏ । ଖରାଦିନେ ଉତ୍ତାପ ଟିକିଏ ବଢ଼ିବା ସଙ୍ଗେ ସଙ୍ଗେ ବର୍ଷା ହୋଇ ଜଳବାୟୁ ଥଣ୍ଡା ହୋଇଯାଏ । ତେଣୁ ମରିସସ୍‌କୁ ଚିର ବସନ୍ତର ଦେଶ ବୋଲି କୁହାଯାଏ ।'' (ପୃ.-୧୫)

ମରିସସରେ ଗ୍ରାଣ୍ଡ୍ ବେ ନାମକ ସ୍ଥାନରେ ଅଣ୍ଡର ୱାଟର ଲିମିଟେଡ କଂପାନୀ ଦ୍ୱାରା ପର୍ଯ୍ୟଟକମାନଙ୍କୁ ପାଣି ଭିତରକୁ ନେଇ ସମୁଦ୍ର ଚଟାଣରେ ଜୀବନ୍ତ ପ୍ରବାଳ ବିଭିନ୍ନ ରଙ୍ଗ ଓ ପ୍ରଜାତିର ମାଛ ଓ ଜଳଜନ୍ତୁମାନଙ୍କୁ ଦେଖାଇବାର ବ୍ୟବସ୍ଥାକୁ ଲେଖକ ଭୂରି ଭୂରି ପ୍ରଶଂସା କରିଛନ୍ତି । ସେ ପୁଣି ଦକ୍ଷିଣ ଗୋଲାର୍ଦ୍ଧର ବୃହତ୍ତମ ବଟାନିକାଲ ଗାର୍ଡନ ଏବଂ ପର୍ବତଘେରା ବୃହତ୍ ପରୀ ତଳାଉର ଦୃଶ୍ୟାବଳୀ ଦେଖି ବିମୋହିତ ହୋଇଛନ୍ତି । ପରୀ ତଳାଉ ସମ୍ପର୍କରେ ସେ ଲେଖିଛନ୍ତି- ''ତାର ନାମ ପରୀ ତଳାଉ, ସେଠାରେ ସ୍ୱର୍ଗରୁ ପରୀମାନେ ଆସି ଜଳକ୍ରୀଡ଼ା କରନ୍ତି । ଗଙ୍ଗାରୁ ପବିତ୍ର ଜଳ ଆସି ଏଠାରେ ମିଶିଥିବାରୁ ମରିସସ୍ ଲୋକେ ତାକୁ ଅତି ପବିତ୍ର ମନେ କରି ତାର ନାମ ଗଙ୍ଗା ତଳାଉ ରଖିଛନ୍ତି । (ପୃ.-୪୫)

ଇଂରାଜୀ ଭାଷାରେ ଏହି ପରୀ ତଳାଉର ନାମ ଗ୍ରାଣ୍ଡ ବେସିନ୍ । ୧୨୫୦ ଏକର ବ୍ୟାପୀ ମିଠା ପାଣିର ହ୍ରଦଟି ଏକ ବିରାଟ ଜଳ ଭଣ୍ଡାର ରୂପେ ବ୍ୟବହାର କରାଯାଏ ।

ମରିସସରେ ବାସ କରୁଥିବା ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟଧର୍ମାବଲମ୍ବୀ ଭାରତବାସୀଙ୍କ ଐକ୍ୟବୋଧ ଓ ଜାତୀୟ ଭାବ ଦେଖି ଲେଖକ ମୁଗ୍ଧ ହୋଇ ଲେଖିଛନ୍ତି- ''ତେଣୁ ଏକ ସ୍ଥାନରେ ଗିର୍ଜା, ମସ୍‌ଜିଦ୍ ଓ ମନ୍ଦିର ରହିବାର କୌଣସି ଅସୁବିଧା ହୁଏ ନାହିଁ । ସେହି କାରଣରୁ ମରିସସରେ ଭାରତୀୟ ଭାବ ଓ ଚଳଣି କେବଳ ବଞ୍ଚି ରହି ନାହିଁ । ତାହା ସୁସ୍ଥ ଓ ସବଳ ରହି ଅଭିବୃଦ୍ଧି ସାଧନ କରିଛି ।'' (ପୃ.-୫୦)

'ଲହୁ ଲୁହର କାଶ୍ମୀର' – ବିକ୍ରମ ଦାସଙ୍କ ରଚିତ ଏହି ଗ୍ରନ୍ଥଟିରେ ସମସ୍ୟାବହୁଳ କାଶ୍ମୀର ଇତିହାସ ସମ୍ବନ୍ଧରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ପରିବେଷିତ ହୋଇଅଛି । କାଶ୍ମୀରର ଆଦିମ ଇତିହାସ ସମ୍ପର୍କରେ ଲେଖକ କହନ୍ତି- '' ପ୍ରତ୍ନତାତ୍ତ୍ୱିକ ଖନନରୁ କାଶ୍ମୀର ଉପତ୍ୟକାରେ ଖ୍ରୀ.ପୂ.୨୦୦୦ ବର୍ଷତଳର ସଭ୍ୟତାର

ଆଭାସ ମିଳିଛି । ନାଗା ବା ପତିତ ଆର୍ଯ୍ୟ ନାମକ ଏକ ଜାତି ପଶ୍ଚିମ ଅଞ୍ଚଳରୁ ଆସି ଏ ରାଜ୍ୟରେ ପୁରାତନ ଅଧିବାସୀରୂପେ ପ୍ରତିଷ୍ଠା ଲାଭ କରିଥିଲେ । ପରେ ପରେ ଯେଉଁ କେତେକ ଆଦିମ ଜାତି ଏଠାକୁ ଆସୁଥିଲେ, ସେମାନଙ୍କ ଭିତରେ ଖାସି, ଦର, ଡମ, ଭୁଟା, ନିଶାଦ, ତାତ୍ରିଙ୍ଗ ପ୍ରଭୃତି ପ୍ରଧାନ । (ପୃ.-୪)

ଏ ପୁସ୍ତକରେ ଲେଖକ ଖ୍ରୀ.୧୧୪୮ରୁ ୧୧୫୦ ଭିତରେ କାଶ୍ମୀର କବି କାଲାହାନ୍ (କହ୍ଲଣ)ଙ୍କ ମହାକାବ୍ୟ ରାଜତରଙ୍ଗିଣୀରେ ବର୍ଣ୍ଣିତ ଅଷ୍ଟମ ଶତାବ୍ଦୀଠାରୁ ପୁରାତନ କାଶ୍ମୀରର ସାମାଜିକ ସ୍ଥିତି ଓ ଆର୍ଥିକ ପରିସ୍ଥିତି ସମ୍ପର୍କରେ ସୂଚନା ଦେଇଛନ୍ତି । କାଶ୍ମୀରରେ ରାଜତନ୍ତ୍ର ପ୍ରତିଷ୍ଠା, ଖ୍ରୀ.୧୯୩୮-୩୯ର ଜନ ଆନ୍ଦୋଳନ ଓ ନେସନାଲ କଂଗ୍ରେସ, ଭାରତ ସଂବିଧାନର ୩୭୦ ଧାରା ଓ ୧୯୫୨ର ଦିଲ୍ଲୀ ରାଜିନାମା, କାଶ୍ମୀର ସ୍ୱତନ୍ତ୍ର ସମ୍ବିଧାନରେ କାଶ୍ମୀରବାସୀ ଭାରତ ଓ କାଶ୍ମୀର ଦୁଇଦେଶର ନାଗରିକ ହେବାର ସୁବିଧା ଲାଭ କରିବା ସେକ୍ ଅବଦୁଲାଙ୍କ ଭାରତ ବିରୋଧୀ ଷଡ଼ଯନ୍ତ୍ର ଏବଂ ୧୯୫୩ ମସିହାରେ ସେ ଗାଦିଚ୍ୟୁତ ହୋଇ ବକ୍ସି ଗୋଲାମ ମହମ୍ମଦ ପ୍ରଧାନମନ୍ତ୍ରୀ ହେବା । ଖ୍ରୀ.୧୯୬୫ ମେ ମାସ ୩୦ ତରିଖରେ କାଶ୍ମୀର ସମ୍ବିଧାନରେ ପରିବର୍ତ୍ତନ ଅଣାଯାଇ ସଦର-ଇ-ରିଆସତ୍ ପଦକୁ ରାଜ୍ୟପାଳ ଓ ପ୍ରଧାନମନ୍ତ୍ରୀ ପଦକୁ ମୁଖ୍ୟମନ୍ତ୍ରୀ ପଦରେ ବଦଳାଇ ଦିଆଯିବା ଆଦି ବହୁ ତଥ୍ୟ ଏ ପୁସ୍ତକରେ ଉପସ୍ଥାପନା କରାଯାଇଛି ।

ଅବସର ସମୟରେ ଡାକ୍ତର ବିକ୍ରମ ଦାସ ଯେଉଁ ସବୁ କବିତା ଲେଖିଥିଲେ ତାହା ଏକତ୍ର ସଂକଳିତ ହୋଇ 'ଚଉରାଅଶୀ କବିତା' ଶୀର୍ଷକ ପୁସ୍ତକରେ ଖ୍ରୀ.୧୯୯୬ରେ ପ୍ରକାଶ ପାଇଛି । ଏହି କବିତା ପୁସ୍ତକର ମୁଖବନ୍ଧରେ ଜ୍ଞାନପୀଠ ପୁରସ୍କାର ବିଜେତା କବି ସଚ୍ଚିଦାନନ୍ଦ ରାଉତରାୟ କହନ୍ତି- ବିକ୍ରମଦାସଙ୍କ କବିତାଗୁଡ଼ିକ ମାନବ ଧର୍ମୀ ଓ ତାଙ୍କ ନୈତିକ ଦୃଷ୍ଟିକୋଣର ପରିପ୍ରକାଶ । xxx ଆମ ଦୂଷିତ ଓ ବାଧିତ ସମାଜର ଭ୍ରଷ୍ଟତା ଓ ଭଣ୍ଡାମି ତାଙ୍କ କବିତାର କାଠଗଡ଼ା ଭିତରେ ଭୟତ୍ରସ୍ତ ଆସାମୀ ପରି ଠିଆହୋଇଛନ୍ତି । ସେମାନଙ୍କ ବିଚାରକ ଏ ଦେଶର ଗଣଦେବତା । କବି ହିଁ ସେଠି ମୁଖ୍ୟ ଅଭିଯୋକ୍ତା । ଉଦାହରଣସ୍ୱରୂପ ତାଙ୍କ ରଚିତ ଗୋଟିଏ କବିତା ଏଠାରେ ଉଲ୍ଲେଖ କରାଯାଇପାରେ । କବିତାର ଶୀର୍ଷକ 'ଉଭା ହୁଅ ସବ୍ୟସାଚୀ' ।

### ଉଭାହୁଅ ସବ୍ୟସାଚୀ

ପଥବନ୍ଧୁର ! ଘୋର ଅନ୍ଧାର
ପିଶାଚ କରଇ ନାଚ
ନେତା ମହାକାଳ ଜାତି ଦୁର୍ବଳର
ଶକୁନି ରଚଇ ହାସ ।
ଅଣୁବୋମା ଫୁଟେ ପଶ୍ଚିମ ପଟେ
ପୂରୁବେ ଚୀନାର ଖେଳ
ଅରୁଣାଞ୍ଚଳେ ପାଦ୍ରୀର ମେଳେ
ଶୁଭଇ ଅଶୁଭ ଗୋଳ ।
କାହିଁ ସଂସ୍କୃତି କାହିଁ ଜାଗୃତି
ମୂଢ଼ ଦେଶ ନେତା ଆଜି
ସତ୍ୟର ପନ୍ଥା ପୁଣ୍ୟ ଏ ଦେଶେ
ପଡ଼ିଛି ଖେଳର ବାଜି ।
ମନ୍ତ୍ରୀର ଦଳ ଅକ୍ଷମ ଖଳ
କ୍ଷମତା ନିଶାରେ ଭାସି
ଉତ୍କଳ ବୁକେ ତାଣ୍ଡବ ରଚେ
ପଡ଼ୋଶୀ ଶୋଷକ ଆସି ।
ଦେଶସନ୍ତାନ ଘରେ ହୀନିମାନ
ବାହାରେ ତା ମାନ କାହିଁ
ଦେଶେ ଦୁର୍ଭିକ୍ଷ ବେପାରୀ ଯକ୍ଷ
ମରେ ସେ ବିପଣି ଚାହିଁ ।
ନିର୍ଭୀକ ବୀର କିମ୍ପାଇ ସ୍ଥିର
ରହିଛ କିମ୍ପାଇ ଲୁଚି
ଦୁର୍ଦ୍ଦିନବେଳେ ଘନ ଅନ୍ଧାରେ
ଉଭାହୁଅ ସବ୍ୟସାଚୀ ।



୪୩୬, ଶହୀଦ ନଗର
ଭୁବନେଶ୍ୱର

# ସମୃଦ୍ଧିର ପ୍ରତୀକ : ହୀରାକୁଦ ବନ୍ଧ

ଶିବପ୍ରସାଦ ତ୍ରିପାଠୀ

ବିଂଶ ଶତାବ୍ଦୀର ମଧ୍ୟ ଭାଗରେ ପ୍ରତିଷ୍ଠିତ ହୀରାକୁଦ ବହୁମୁଖୀ ବନ୍ଧ ଯୋଜନା ଓଡ଼ିଶାର ଆର୍ଥନୀତିକ ଅଭିବୃଦ୍ଧିର ମୂଳ ଉତ୍ସ । ଏହି ନଦୀବନ୍ଧ ଯୋଜନାରୁ ଆଧୁନିକ ଓଡ଼ିଶା ଇତିହାସର ଅୟମାରମ୍ଭ । ପୁଣ୍ୟତୋୟା ଓଡ଼ିଶା ଭୂମିର ସ୍ଥିତି ଗତି ଓ ପ୍ରକୃତିରେ ବ୍ୟାପକ ପରିବର୍ତ୍ତନ ସାଧନ କରିଛି ମହାନଦୀ ବକ୍ଷରେ ପ୍ରତିଷ୍ଠିତ ଏହି ଦୀର୍ଘତମ ନଦୀବନ୍ଧ । ସ୍ୱାଧୀନୋତ୍ତର ଭାରତର ଏହା ଅନ୍ୟତମ ବୃହତ ପ୍ରକଳ୍ପ ଆମ ଜାତୀୟ ସମୃଦ୍ଧିର ପ୍ରତୀକ ।

ମୋଟ ୧ ଲକ୍ଷ ୫୫ ହଜାର ୭୦୭ ବର୍ଗ କିଲୋମିଟର ପରିମିତ ଓଡ଼ିଶା ପ୍ରଦେଶ । ବନ୍ୟା, ବାତ୍ୟା ଓ ମରୁଡ଼ି ଏହି ପ୍ରଦେଶର ଚିର ସହଚର । ପ୍ରଳୟଙ୍କରୀ ବନ୍ୟା ଓ ଉତ୍କଟ ମରୁଡ଼ିଜନିତ ପରିସ୍ଥିତି ଫଳରେ ଓଡ଼ିଶାର ଅର୍ଥନୀତି ବିଭିନ୍ନ ସମୟରେ ବିପର୍ଯ୍ୟସ୍ତ ହୋଇପଡ଼ିବା ସଙ୍ଗେ ସଙ୍ଗେ ରାଜ୍ୟର ପ୍ରଗତି ବାଧାପ୍ରାପ୍ତ ହୋଇଛି । ରାଜ୍ୟରେ ବନ୍ୟା ନିୟନ୍ତ୍ରଣ ଓ ଜଳସେଚନ ତଥା ବିଦ୍ୟୁତ ଉତ୍ପାଦନ ଉଦ୍ଦେଶ୍ୟରେ ୮୮୦ କିଲୋମିଟର ଦୀର୍ଘ ମହାନଦୀ ବକ୍ଷରେ ସମ୍ବଲପୁର ଠାରୁ ୧୫ କିଲୋମିଟର ଦୂରବର୍ତ୍ତୀ ହୀରାକୁଦଠାରେ ହୀରାକୁଦ ବହୁମୁଖୀ ବନ୍ଧ ଯୋଜନା ପ୍ରତିଷ୍ଠିତ ହୋଇଛି । ମଧ୍ୟପ୍ରଦେଶର ବସ୍ତର ଅଞ୍ଚଳରୁ ବାହାରି ମହାନଦୀ ଓଡ଼ିଶାର ସମ୍ବଲପୁର, ବଲାଙ୍ଗୀର, ଫୁଲବାଣୀ, ଢେଙ୍କାନାଳ, କଟକ ଓ ପୁରୀ ଜିଲ୍ଲା ଦେଇ ପ୍ରବାହିତ ହୋଇ ବଂଗୋପସାଗରରେ ମିଶିଛି ।

ସ୍ୱାଧୀନତା ପୂର୍ବରୁ ୧୯୪୫ରେ ଏହି ବନ୍ଧ ଯୋଜନା ନିମନ୍ତେ ଭୂମି ଅଧିଗ୍ରହଣ ପ୍ରକ୍ରିୟା ଚାଲୁ ହୋଇଯାଇଥିଲା । ସେହି ବର୍ଷ ସର୍ଭେ କାର୍ଯ୍ୟ ଆରମ୍ଭ ହୋଇଥିଲା । ୧୯୪୩ର ଘୋର ଦୁର୍ଭିକ୍ଷଜନିତ ପରିସ୍ଥିତି ପରେ ୧୯୪୪ରେ ଇଂରେଜ ସରକାର ଦାମୋଦର ନଦୀବନ୍ଧ ଯୋଜନା ପ୍ରତିଷ୍ଠା ନିମନ୍ତେ ସ୍ଥିର କଲେ । ଆମେରିକାର ଭୟାବହ ଟେନିସ୍‌ର ବନ୍ୟାଜଳକୁ ଯେଉଁ ପ୍ରକାର ଯୋଜନାରେ ନିୟନ୍ତ୍ରଣ କରାଯାଇଥିଲା, ଦାମୋଦର ନଦୀରେ ମଧ୍ୟ ସେହି ପ୍ରକାର ଯୋଜନା କାର୍ଯ୍ୟକାରୀ କରାଯିବା ଲାଗି ସ୍ଥିର ହୋଇଥିଲା । ସେହି ସମୟରେ ସ୍ୱାଧୀନତା ସଂଗ୍ରାମରେ ବନ୍ଦୀ ହୋଇ ଅହମ୍ମଦନଗର ଫୋର୍ଟରେ ଥିବା ଡକ୍ଟର ହରେକୃଷ୍ଣ ମହତାବ ତାଙ୍କର ସାନଭାଇ ଗୋପୀନାଥ ଦାସଙ୍କ ନିକଟକୁ ଏକ ପତ୍ର ଲେଖି ଏ ସମ୍ପର୍କରେ ଠକ୍କରବାପାଙ୍କୁ ଜଣାଇବା ନିମନ୍ତେ କହିଥିଲେ । ଉକ୍ତ ପତ୍ରରେ ସେ ଲେଖିଥିଲେ ଯେ ଓଡ଼ିଶା ଚିରକାଳ କେବଳ ସମାଜସେବୀଙ୍କ ଚାଉଳ ବଣ୍ଟା କ୍ଷେତ୍ର ହୋଇ ରହିବ ନାହିଁ । ସେହି ସମୟର ବିଭାଗୀୟ ମୁଖ୍ୟ ସାର୍ ଆକବର ହାଇଦରିଙ୍କ ଆଗ୍ରହ ପ୍ରକାଶ କ୍ରମେ ହୀରାକୁଦ ନଦୀବନ୍ଧ ଯୋଜନାର ଅୟମାରମ୍ଭ ହେଲା ।

ଏହି ବହୁମୁଖୀ ନଦୀବନ୍ଧ ଯୋଜନା ପ୍ରତିଷ୍ଠା ଲାଗି ଗଭର୍ଣ୍ଣର ସାର୍ ହଥର୍ଣ୍ଣ ଲୁଇସଙ୍କ ଦ୍ୱାରା ୧୯୪୫ରେ ମୂଳଭିତ୍ତି ସ୍ଥାପିତ ହୋଇଥିଲା । ବ୍ରିଟିଶ୍ ସରକାରଙ୍କୁ ପ୍ରତିଶ୍ରୁତିବଦ୍ଧ କରାଇବା ନିମନ୍ତେ ଏହା ଅଭିପ୍ରେତ ଥିଲା । ପରେ ୧୯୪୮ ଏପ୍ରିଲ୍ ମାସ ୧୨ ତାରିଖରେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ କଂକ୍ରିଟ୍ ବନ୍ଧର ଶିଳାନ୍ୟାସ କରିଥିଲେ ଏବଂ ୧୯୫୭ ଜାନୁୟାରୀ ମାସ ୧୩ ତାରିଖରେ ଏହା ଉଦ୍‌ଘାଟିତ ହୋଇ ତାଙ୍କ ଦ୍ୱାରା ଜାତି ଉଦ୍ଦେଶ୍ୟରେ ସମର୍ପିତ ହୋଇଥିଲା । ୧୯୮୨ ଜାନୁୟାରୀ ୧୩ ତାରିଖ ଦିନ ଏହି ବନ୍ଧଯୋଜନାର ରଜତ ଜୟନ୍ତୀ ମହାସମାରୋହରେ ପାଳିତ ହୋଇଥିଲା ।

ଏହି ବହୁମୁଖୀ ବନ୍ଧଯୋଜନାର ନଦୀବନ୍ଧ, ଜଳଭଣ୍ଡାର ଓ କେନାଲ ସମୂହ ନିମନ୍ତେ ମୋଟ ୧ ଲକ୍ଷ ୮୭ ହଜାର ୭୫୮ ଏକର ୫୧ ଡେସିମିଲ ଜମି ଦଖଲ କରାଯାଇଥିଲା । ଏହି ଯୋଜନାରେ ୨୬୫୦୧ଟି ପରିବାର ବାସଚ୍ୟୁତ ଅଥବା କ୍ଷତିଗ୍ରସ୍ତ ହୋଇଥିଲେ ଏବଂ ୨୧୮ଟି ଗ୍ରାମ ଜଳମଗ୍ନ ହୋଇଥିଲା । ଏହି ଯୋଜନାରେ ବିସ୍ଥାପିତ ଲୋକେ ଗୁରୁତର ଅସୁବିଧାର ସମ୍ମୁଖୀନ ହୋଇଥିଲେ ମଧ୍ୟ ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ ସେମାନଙ୍କ ତ୍ୟାଗ ଓ ଉତ୍ସର୍ଗୀକୃତ ଭାବନା ଚିରକାଳକୁ ସ୍ମରଣୀୟ ହୋଇ ରହିବ ।

ଏହି ନଦୀବନ୍ଧ ଯୋଜନାର ଦୈର୍ଘ୍ୟ ୧୫୭୪୮ ଫୁଟ ଏବଂ କଂକ୍ରିଟ୍ ଓ ପଥର ବନ୍ଧର ଦୈର୍ଘ୍ୟ ୬୭୬୮ ଫୁଟ । କଂକ୍ରିଟ

ଓ ପଥର ବନ୍ଧର ଘନତ୍ୱ ୧୪୦୦୦୦୦ ଘନ ଗଜ । ମାଟି ବନ୍ଧର ଦୈର୍ଘ୍ୟ ୧୧,୯୮୦ ଫୁଟ । ମାଟି ବନ୍ଧର ଘନତ୍ୱ ୨୩୯,୦୦,୦୦୦ ଘନ ଗଜ ହୋଇଥିବାବେଳେ ସର୍ବୋଚ୍ଚ ଉଚ୍ଚତା ୧୯୫ ଫୁଟ ।

ଏହି ବନ୍ଧ ଯୋଜନାର ଜଳଭଣ୍ଡାରର ଜଳଧାରଣ କ୍ଷମତା ୬.୭୦ ନିୟୁତ ଘନଫୁଟ ଓ ବ୍ୟବହାରଯୋଗ୍ୟ ଜଳର ପରିମାଣ ୪.୩୨ ନିୟୁତ ଘନଫୁଟ । ଜଳଭଣ୍ଡାର ସମ୍ପୂର୍ଣ୍ଣ ବିସ୍ତାରିତ କ୍ଷେତ୍ରଫଳ ୨୮୮ ବର୍ଗ ମାଇଲ ହୋଇଥିବାବେଳେ ସର୍ବୋଚ୍ଚ ଜଳପତ୍ତନ ୬୩୦ ଫୁଟ ।

ଏହି ଯୋଜନାରେ ପ୍ରତିଷ୍ଠିତ ହୋଇଛି ଦୁଇଟି ଜଳବିଦ୍ୟୁତ୍ ପ୍ରକଳ୍ପ । ବୁର୍ଲା ପ୍ରକଳ୍ପର ବିଦ୍ୟୁତ ଉତ୍ପାଦନ କ୍ଷମତା ୧୯୮ ମେଗାୱାଟ୍ ହୋଇଥିବା ବେଳେ ଚିପିଲିମା ପ୍ରକଳ୍ପର ବିଦ୍ୟୁତ୍ ଉତ୍ପାଦନ କ୍ଷମତା ୭୨ ମେଗାୱାଟ୍ । ମୋଟ୍ ବିଦ୍ୟୁତ୍ ଉତ୍ପାଦନ କ୍ଷମତା ୨୭୨ ମେଗା ୱାଟ ହୋଇଥିବାବେଳେ ବିଗତ ୧୯୮୧ ଅକ୍ଟୋବର ୨ ତାରିଖ ଦିନ ସର୍ବାଧିକ ୨୬୨.୫୦ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦିତ ହୋଇଥିଲା । ରାଜ୍ୟରେ ବିଦ୍ୟୁତ ଶକ୍ତି ଉତ୍ପାଦନ ଆଶାଜନକ ହେବାରୁ ସେହିକାଳରେ ଅନେକ କଳକାରଖାନା ପ୍ରତିଷ୍ଠିତ ହୋଇଥିଲା ଓ ଶିଳ୍ପାୟନ ପ୍ରକ୍ରିୟାର ଶୁଭାରମ୍ଭ ହୋଇଥିଲା ।

ଏହି ବନ୍ଧ ଯୋଜନାରେ ୨ଟି ମୁଖ୍ୟ କେନାଲ, ୨ଟି ଶାଖା କେନାଲ, ଅନେକ ଉପଶାଖା , ନିମ୍ନଶାଖା ଓ ନିମ୍ନ ଉପଶାଖା କେନାଲ ରହିଛି । ଏଗୁଡ଼ିକର ମୋଟ ଦୈର୍ଘ୍ୟ ୨୧୦୦ ମାଇଲ୍ । ଏହା ମଂଗଳ ଗ୍ରହର ବ୍ୟାସାର୍ଦ୍ଧ ସହ ସମାନ । ଏହି କେନାଲସମୂହ ଦ୍ୱାରା ଖରିଫ ଋତୁରେ ସମ୍ବଲପୁର ଓ ବଲାଙ୍ଗିର ଜିଲ୍ଲାର ୩୮୩୦୦୦ ଏକର ଏବଂ ରବି ଋତୁରେ ୨୫୭୦୦୦ ଏକର ଜମିରେ ଜଳସେଚନ ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିଲା । ଗତ ୫୦ବର୍ଷ ମଧ୍ୟରେ ଜଳଭଣ୍ଡାରର ଜଳଧାରଣ କ୍ଷମତା ସ୍ୱାଭାବିକ ଭାବରେ କ୍ରମେ ହ୍ରାସ ପାଉଥିବାରୁ ଏହି ଲକ୍ଷ୍ୟ ପୂରଣ ହୋଇପାରୁ ନାହିଁ । ପୁନଶ୍ଚ ଜଳସେଚନ ବ୍ୟବସ୍ଥାର ସୁନିୟନ୍ତ୍ରଣ ଅଭାବରୁ ବହୁ ପରିମାଣର ଜଳରାଶି ପୁନରାୟ ନଦୀ ଗର୍ଭରେ ପତିତ ହେଉଛି । ଏହା ବ୍ୟତୀତ ସଂପ୍ରତି କେତେକ କଳକାରଖାନାକୁ ମଧ୍ୟ ଜଳ ଯୋଗାଇ ଦିଆଯାଉଛି । ଏଥିନିମନ୍ତେ ହୀରାକୁଦ ବନ୍ଧର ଉପର ମୁଣ୍ଡରେ କଳକାରଖାନା ସଂଖ୍ୟା ବୃଦ୍ଧି ପାଉଛି । ପୂର୍ବେ ଏକମାତ୍ର କାଗଜକଳକୁ ଜଳ ଯୋଗାଇ ଦିଆଯାଉଥିଲା । ତାହା ବର୍ତ୍ତମାନ ବନ୍ଦ ହୋଇଯାଇଛି ।

ବିଦ୍ୟୁତ୍ ଉତ୍ପାଦନ ଏବଂ ଜଳସେଚନ ବ୍ୟବସ୍ଥା ଫଳରେ ରାଜ୍ୟରେ ଶିଳ୍ପାୟନ ଓ ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି ଘଟିବା ସହ ରାଜ୍ୟ ତଥା ରାଜ୍ୟବାସୀଙ୍କର ଆର୍ଥନୀତିକ ପ୍ରଗତି ସାଧିତ ହୋଇଛି । ସଂପ୍ରତି ଓଡ଼ିଶା ପ୍ରଦେଶର ମୋଟ ବିଦ୍ୟୁତ ଉତ୍ପାଦନ କ୍ଷମତା ୪୦୫୯ ମେଗାୱାଟ । ଏ କ୍ଷେତ୍ରରେ ହୀରାକୁଦ ବନ୍ଧଯୋଜନା ପ୍ରଥମ ମାର୍ଗଦର୍ଶକ । ଆଜି ଖାଦ୍ୟଶସ୍ୟ ଉତ୍ପାଦନରେ ଓଡ଼ିଶା ଏକ ବଳକା ରାଜ୍ୟ । ହୀରାକୁଦ ବନ୍ଧ ଯୋଜନାହିଁ ଏହି ଗୌରବର ମୂଳଉତ୍ସ ।

ଏହି ବନ୍ଧଯୋଜନାର ବନ୍ୟାଜଳ ନିଷ୍କାସନ କ୍ଷମତା ୧୫ ଲକ୍ଷ କ୍ୟୁସେକ୍ । ତେବେ ୧୯୬୧ରେ ସର୍ବୋଚ୍ଚ ୭୦ ନିୟୁତ ଏକର ଫୁଟ ଏବଂ ୧୯୭୯ରେ ସର୍ବନିମ୍ନ ୮ ନିୟୁତ ଏକରଫୁଟ ବନ୍ୟାଜଳ ନିଷ୍କାସିତ ହୋଇଥିଲା । ଚଳିତ ୨୦୧୧ ବର୍ଷରେ ଏହା ଆହୁରି କମ ହେବାର ସମ୍ଭାବନା ରହିଛି । ମହାନଦୀରେ ବନ୍ୟାଜଳ ନିୟନ୍ତ୍ରଣ ନିମନ୍ତେ ଏହି ବନ୍ଧ ଯୋଜନା ସମ୍ପୂର୍ଣ୍ଣ ସକ୍ଷମ ହୋଇଥିବାବେଳେ ଏହାର ସୁପରିଚାଳନାର ଯଥେଷ୍ଟ ଆବଶ୍ୟକତା ରହିଛି ।

ବାସ୍ତବତଃ ହୀରାକୁଦ ବହୁମୁଖୀ ବନ୍ଧଯୋଜନା ଦ୍ୱାରା ଓଡ଼ିଶା ବହୁଳ ଭାବରେ ଉପକୃତ ହୋଇଛି । ଏହା କେବଳ ଓଡ଼ିଶା ନୁହେଁ ଆମ ଦେଶ ଓ ଜାତିର ଗୌରବ । ଏହି ବନ୍ଧ ଯୋଜନାରେ ବିସ୍ଥାପିତ ଲୋକଙ୍କର ଦୀର୍ଘ କାଳର ସମସ୍ୟାର ସମାଧାନ ଦିଗରେ ରାଜ୍ୟ ସରକାର ସଂପ୍ରତି ପୁନର୍ବାର ଆଗ୍ରହ ପକାଶ କରୁଥିବା ବିଷୟ ଆଶାର ଆଲୋକ ଦେଖାଇଛି ।



ବଡ଼ ବଜାର
ସମ୍ବଲପୁର-୭୬୮୦୦୩

# ପରିବେଶ ନିୟନ୍ତ୍ରଣରେ ଜୈବ ପ୍ରଯୁକ୍ତିବିଦ୍ୟା

ଡକ୍ଟର ସୂର୍ଯ୍ୟମଣି ବେହେରା

ପରିବେଶ ଶବ୍ଦଟିର ଶ୍ରବଣ ମାତ୍ରକେ ଜଳ, ସ୍ଥଳ, ଏବଂ ବାୟୁ ମଣ୍ଡଳର ଅବସ୍ଥିତି କଥା ମନକୁ ସ୍ୱତଃ ଆସିଥାଏ । ଏହି ପରିବେଶ ଭିତରେ ଜୀବଜଗତର ସୃଷ୍ଟି ଏବଂ ସ୍ଥିତି । ଏହାର ଅସମାନତା ଏବଂ ଅସନ୍ତୁଳନ ଜୀବଜଗତକୁ ଧ୍ୱଂସ ମୁଖକୁ ଠେଲି ଦେବା ସ୍ୱାଭାବିକ ।

ଇତିହାସକୁ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଅତୀତରେ ଜଳ, ସ୍ଥଳଭାଗ ଏବଂ ବାୟୁମଣ୍ଡଳ ଭିତରେ ଭାରସାମ୍ୟର ସନ୍ତୁଳନ ଠିକ୍ ଥିଲା । ନଦୀଜଳର ପ୍ରବାହ, ବୃଷ୍ଟିପାତ, ଜଙ୍ଗଲର ଆୟତନ, ଅକ୍ଷତ ପାହାଡ଼, ପର୍ବତ, ସମୁଦ୍ରଜଳ ତଥା ଭୂତଳ ଜଳର ସୀମା ସରହଦ ପରିବେଶ ପାଇଁ ଅନୁକୂଳ ଥିଲା । ବାୟୁମଣ୍ଡଳର ଉପାଦାନ ସମୂହ ଯଥା– ଯବକ୍ଷାରଜାନ, ଅମ୍ଳଜାନ ଏବଂ ଅନ୍ୟାନ୍ୟ ଗ୍ୟାସ୍‌ଗୁଡ଼ିକର ମାତ୍ରା ବି ଠିକ୍ ଥିଲା । ପ୍ରଦୁଷଣମୁକ୍ତ ବାୟୁମଣ୍ଡଳରେ ଜୀବଜଗତର ସ୍ଥିତି ପାଇଁ କିଛି ଅସୁବିଧା ନ ଥିଲା । ମାତ୍ର ଧୀରେ ଧୀରେ ସବୁକିଛି ଓଲଟ ପାଲଟ ହେବାରେ ଲାଗିଛି । ଜନସଂଖ୍ୟା ବିସ୍ଫୋରଣ ଏହାର ମୁଖ୍ୟ କାରଣ ବୋଲି ହୃଦ୍‌ବୋଧ ହୋଇଛି । ଯେଉଁ ଜଳଭାଗ ପ୍ରଦୂଷଣ ମୁକ୍ତ ଥିଲା, ତାହା ଏବେ ପ୍ରଦୂଷିତ । ସ୍ଥଳଭାଗରେ ଥିବା ଜଙ୍ଗଲର ଅବକ୍ଷୟ , ପାହାଡ଼ପର୍ବତ ଉପରେ ବ୍ୟାପକ ଖନନ, ପ୍ରଚୁର ରାସାୟନ ଦ୍ରବ୍ୟର ବ୍ୟବହାର ମୃତ୍ତିକାକୁ ବିଷାକ୍ତ କରିଦେଉଛି । ଭୂତଳଜଳର ପରିସୀମା ହ୍ରାସ ପାଇବାରେ ଲାଗିଛି । ବାୟୁମଣ୍ଡଳ ମଧ୍ୟ କଳକାରଖାନାରୁ ନିର୍ଗତ ଧୂଆଁ, ଯାନବାହନରୁ ନିର୍ଗତ ଧୂଆଁ ଦ୍ୱାରା ପ୍ରଦୂଷିତ ହେଉଛି । ମୋଟ ଉପରେ ଦେଖିଲେ ପରିବେଶ ପ୍ରଦୂଷଣ ମୁକ୍ତ ନ ହୋଇ ପ୍ରଦୂଷଣଯୁକ୍ତ ହେବାରେ ଲାଗିଛି । ମାନବ ସମାଜ ତଥା ଅନ୍ୟାନ୍ୟ ସଜୀବଶ୍ରେଣୀ ପ୍ରଦୂଷିତ ପରିବେଶରେ ତିଷ୍ଠି ରହିବା ପାଇଁ ସଂଗ୍ରାମରତ । କାରଣ ଏହି ଧରଣର ବିଷାକ୍ତ ପରିବେଶରେ ଆମେ ସବୁ ଅନେକ କୁପ୍ରଭାବର ଶିକାର ହେଉଛେ । ଦୂଷିତ ଜଳ, ଦୂଷିତ ବାୟୁ ଏବଂ ଭୂପୃଷ୍ଠ ଉପରେ ବିଚାରଶୂନ୍ୟ କାର୍ଯ୍ୟ ଅନେକ ରୋଗ ସୃଷ୍ଟି କରିବା ସଂଗେ ସଂଗେ ବ୍ୟାପକ ଫସଲହାନି ମଧ୍ୟ କରାଉଛି । ଏହାଦ୍ୱାରା ବାୟୁମଣ୍ଡଳ ଉତ୍ତପ୍ତ ହେଉଛି । ଓଜନ ସ୍ତରର ହ୍ରାସ ହେଉଛି । ଫଳରେ ଅଂଶୁଘାତ, ଫସଲ ଉତ୍ପାଦନ ହ୍ରାସ, ବିଶୁଦ୍ଧ ଜଳ ସଙ୍କଟ, ସ୍ୱଳ୍ପ ବୃଷ୍ଟିଜଳ ଅନେକ ସମସ୍ୟା ଦ୍ୱାରା ଆମେ ସବୁ ଏବେ ଜର୍ଜରିତ ।

ପରିବେଶ ନିୟନ୍ତ୍ରଣ ପାଇଁ ଏବେ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନିଆଯାଉଛି । ବୈଜ୍ଞାନିକ ଏବଂ ବୁଦ୍ଧିଜୀବୀମାନଙ୍କ ଆଶଙ୍କା ଏହିପରି ପ୍ରଦୂଷିତ ପରିବେଶରେ ମାନବ ସମାଜର ସ୍ଥିତି କେତେ ଦିନ ? ହୁଏତ ଆଗାମୀ କିଛି ବର୍ଷ ଶଙ୍କା– ଆଶଙ୍କା ଭିତରେ ଆମେ ତିଷ୍ଠି ରହିପାରିବା । ତେବେ ସୁଦୂର ଭବିଷ୍ୟତରେ ସମାଜର ସ୍ଥିତି ବା ଜୀବଜଗତର ସ୍ଥିତି ନିଶ୍ଚିତ ରୂପେ ଧ୍ୱଂସ ଆଡ଼କୁ ଗତି କରିବ ।

ଏ ପ୍ରକାର ପରିସ୍ଥିତିରୁ ନିସ୍ତାର ପାଇଁ ବୈଜ୍ଞାନିକଗଣ ପରିବେଶ ସୁରକ୍ଷା ଉପରେ ଅନେକ ଗବେଷଣା ଚଳାଇଛନ୍ତି । ନିର୍ଯ୍ୟାସ ସ୍ୱରୂପ ବିଂଶ ଶତାବ୍ଦୀର ଶେଷ ଭାଗରେ ଜୈବ ପ୍ରଯୁକ୍ତି ବିଦ୍ୟା ବା ବାୟୋଟେକ୍ନୋଲୋଜି ପ୍ରସଙ୍ଗ ଏକ ଚର୍ଚ୍ଚାର ବିଷୟ ହୋଇ ଅବକ୍ଷୟ ପଥରେ ଚାଲିଥିବା ପରିବେଶକୁ ନିୟନ୍ତ୍ରଣ କରିବା ପାଇଁ ଅନେକ କିଛି ନୂତନ ଦିଗ୍‌ଦର୍ଶନ ଦେଇପାରିଛି । ଏହି ବିଦ୍ୟାର ସଦ୍‌ବିନିଯୋଗ ଜୀବଜଗତକୁ ଭବିଷ୍ୟତରେ ଅନେକଦିନ ଧରି ସଠିକ ମାର୍ଗରେ ପରିଚାଳିତ କରି ଚାଲିବ ବୋଲି ଗବେଷଣାରୁ ପ୍ରମାଣିତ ହୋଇଛି ।

ପ୍ରଶ୍ନ ହେଉଛି– ଏହି ଜୈବ ପ୍ରଯୁକ୍ତି ବିଦ୍ୟାର ସ୍ୱରୂପ କଣ ? ପରିବେଶ ନିୟନ୍ତ୍ରଣରେ ଏହାର ବିନିଯୋଗ କେମିତି ସମ୍ଭବ ?

ଏ ଦିଗରେ ମୂଲ୍ୟଭିତ୍ତିକ ଆଲୋଚନାରୁ ବୁଝାପଡ଼େ – ଜୈବପ୍ରଯୁକ୍ତିବିଦ୍ୟା ଜୀବବିଜ୍ଞାନର ଏକ ବିଭାଗ ଯେଉଁଥିରେ ଜୈବବସ୍ତୁ ବା ବାୟୋ–ମେଟେରିଏଲ ଉପରେ ଜୈବବିଦ୍ୟାର ବିଭିନ୍ନ ସୂତ୍ର ପ୍ରୟୋଗ କରି ମାନବ ସମାଜର ଉପକାରରେ ଆସୁଥିବା ବିଭିନ୍ନ ଉତ୍ପାଦନ ପ୍ରସ୍ତୁତ କରିହେବ ।

ଆଉ ଟିକିଏ ଯଦି ଏ ଦିଗରେ ତର୍ଜମା କରାଯିବ ତେବେ ଦେଖାଯିବ– ବାୟୋ ଟେକ୍ନୋଲୋଜି ହେଉଛି 'ବାୟୋଲୋଜୀ' ଏବଂ ଟେକ୍ନୋଲୋଜୀର ଏକ ସୁସମିଶ୍ରଣ ।

ପରିବେଶକୁ ଦୃଷ୍ଟିରେ ରଖି ଏହାର ନିୟନ୍ତ୍ରଣ ପାଇଁ ଜୈବ ପ୍ରଯୁକ୍ତି ବିଦ୍ୟାର ସଦ୍‌ବିନିଯୋଗ ଉପରେ ଯଦି ଚର୍ଚ୍ଚା କରାଯିବ, ତେବେ ଅଦ୍ୟାବଧି ମିଳିଥିବା ସାଫଲ୍ୟ ବିମଣ୍ଡିତ ପ୍ରସଙ୍ଗଗୁଡ଼ିକ ହେଲା–

(କ) ଜୈବ ପଦ୍ଧତି ଦ୍ୱାରା ଦୂଷିତଜଳ ଶୋଧନ ।

(ଖ) ପ୍ରଯୁକ୍ତି ବିଦ୍ୟା ପଦ୍ଧତି ଦ୍ୱାରା ପ୍ରଦୂଷଣମୁକ୍ତ ବାୟୁ ସୃଷ୍ଟି ।

(ଗ) ଜୈବ ଅଧୋଗତି କ୍ଷେତ୍ରରେ ପ୍ରଯୁକ୍ତି ବିଦ୍ୟାର ସଫଳ ପ୍ରୟୋଗ

(ଘ) ପାରିପାର୍ଶ୍ୱିକ ସ୍ୱାସ୍ଥ୍ୟପାଇଁ ପରିବେଶୀୟ ଜୈବ ଉତ୍ପାଦିତ ସାମଗ୍ରୀ ପ୍ରସ୍ତୁତି ।

(ଙ) ଜୈବ ସୁରକ୍ଷା କ୍ଷେତ୍ରରେ ଜେନେଟିକାଲି ଇଞ୍ଜିନିଅରଡ୍ ମାଇକ୍ରୋବ୍‌ସ୍‌ର ସଫଳ ବିନିଯୋଗ ଆଦି ଉଲ୍ଲେଖଯୋଗ୍ୟ ।

ଏହି ସବୁ ପ୍ରସଙ୍ଗ ଉପରେ କିଞ୍ଚିତ ଆଭାସ ଦେଲେ ବିଷୟଗୁଡ଼ିକ ସ୍ପଷ୍ଟ ହୋଇଯିବ ।

ଦୂଷିତ ଜଳ ଶୋଧନ ପାଇଁ ବିଭିନ୍ନ ଧରଣର ସୂକ୍ଷ୍ମ ଜୀବାଣୁ ଯଥା ବ୍ୟାକ୍ଟେରିଆ ଆଲଜି, ଫନ୍‌ଜି , ପ୍ରୋଟୋଜୋଆ ଆଦି ବ୍ୟବହୃତ ହୋଇଥାଏ । ଜୈବପ୍ରଯୁକ୍ତି ବିଦ୍ୟାର ପ୍ରୟୋଗରେ ରିଆକ୍ଟର ଭିତରେ ଦୂଷିତ ଜଳକୁ ନେଇ ଏହି ଧରଣର ସୂକ୍ଷ୍ମ ଜୀବାଣୁ ପ୍ରୟୋଗ ଦ୍ୱାରା ଜଳ ଶୋଧନ କରାଯାଇଥାଏ ।

ପ୍ରଦୂଷଣମୁକ୍ତ ବାୟୁ ସୃଷ୍ଟି ପାଇଁ ଜୈବ ପ୍ରଯୁକ୍ତି ବିଦ୍ୟାର ଅବଦାନ କିଛି କମ୍ ନୁହେଁ । ସମସ୍ତେ ଅବଗତ ଯେ ବାୟୁମଣ୍ଡଳରେ ଅଙ୍ଗାରକାମ୍ଳର ପରିମାଣ ବୃଦ୍ଧି ବୃକ୍ଷଲତାର ଅବକ୍ଷୟ ପାଇଁ ହେଉଛି । ଏଥିପାଇଁ ସୃଷ୍ଟି ହେଉଥିବା ସବୁଜଗୃହ ଗ୍ୟାସଗୁଡ଼ିକ ମିଥେନ୍ କ୍ଲୋରୋଫ୍ଲୋରୋ କାର୍ବନ ଏବଂ ଅଙ୍ଗାରକାମ୍ଳ ବାୟୁମଣ୍ଡଳରେ ଉତ୍ତାପ ବୃଦ୍ଧି ମଧ୍ୟ ଘଟାଇଥାନ୍ତି ।

ଏହି ଅଙ୍ଗାରକାମ୍ଳର ମାତ୍ରାକୁ ହ୍ରାସ କରିବାପାଇଁ ଆଲୋକ ସଂଶ୍ଲେଷଣ ପଦ୍ଧତି କାର୍ଯ୍ୟକାରୀ ହେଉଛି । ଏହାଦ୍ୱାରା ବୃକ୍ଷଲତା ଅତ୍ୟଧିକ ଅମ୍ଳଜାନ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଅଙ୍ଗାରକାମ୍ଳର ସମ୍ପୂର୍ଣ୍ଣ ବିନିଯୋଗ ଗଛ ଦ୍ୱାରା ହୋଇ ପାରୁଛି । ପରିବେଶ ପ୍ରଦୂଷଣ କ୍ଷେତ୍ରରେ ଏହି ବିଦ୍ୟାର ଏତାଦୃଶ ପ୍ରୟୋଗ ଏକ ସଫଳ ମାଇଲଖୁଣ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଆଉ ଏକ ଉପକାରୀ ପ୍ରସଙ୍ଗ ହେଉଛି ବର୍ଜ୍ୟବସ୍ତୁଗୁଡ଼ିକ ଉପରେ ଅତି ସୂକ୍ଷ୍ମ ଜୀବାଣୁ ପ୍ରୟୋଗ କରି ଏହି ଜୈବ ପ୍ରଯୁକ୍ତି ବିଦ୍ୟାର ବିଭିନ୍ନ ନୀତି–ନିୟମ ଅନୁସାରେ ଶୋଧନ କରାଯାଇପାରୁଛି । ଏହାଦ୍ୱାରା ପରିବେଶ ପ୍ରଦୂଷଣମୁକ୍ତ ହେଉଛି । ସେହି ଧରଣର ଅତି ସୂକ୍ଷ୍ମ ଜୀବାଣୁଗୁଡ଼ିକ ମଧ୍ୟରୁ ମାଇକ୍ରୋବେକ୍ଟେରିଆମ୍ କଣ୍ଡିଡ଼ା, ନକାରଡିଆ, ବେସିଲସ୍ ଆଦି ସର୍ବ ପ୍ରଧାନ । ସୂଚୀତ କରାଯାଇପାରେ ଯେ ଏହି ଧରଣର ସୂକ୍ଷ୍ମ ଜୀବାଣୁଗୁଡ଼ିକର ସଫଳ ପ୍ରୟୋଗଦ୍ୱାରା ରାସାୟନିକ ସାର ପରିପୃକ୍ତ ମୃତ୍ତିକା ମଧ୍ୟ ଶୋଧନ ହୋଇପାରୁଛି ।

ଆଉ ଏକ ଉଲ୍ଲେଖନୀୟ ପ୍ରସଙ୍ଗ ହେଉଛି ଏବେ ଅଧିକ ଗବେଷଣା ଦ୍ୱାରା ପରିବେଶ ପ୍ରିୟ ଏବଂ ସ୍ୱାସ୍ଥ୍ୟାନୁକୂଳ କୀଟନାଶକ ଔଷଧ ମଧ୍ୟ ପ୍ରସ୍ତୁତ ହେଲାଣି । ଚାଷକାର୍ଯ୍ୟ ସମୟରେ କୀଟଦାଉରୁ ରକ୍ଷା ପାଇଁ ଏଗୁଡ଼ିକର ବ୍ୟବହାର କୀଟମାନଙ୍କୁ ନଷ୍ଟ କରିହେଉଛି । ଫସଲ ମଧ୍ୟ ଭଲ ଅମଳ ହୋଇପାରୁଛି । ଶସ୍ୟ ଉପରେ ମଧ୍ୟ ଏହାର କୁ–ପ୍ରଭାବ ନାହିଁ ।

ଜୈବପ୍ରଯୁକ୍ତିବିଦ୍ୟାର ଆଉ ଏକ ସଫଳ ଅବଦାନ ହେଉଛି – ଜୈବସାର ପ୍ରସ୍ତୁତି । ରାସାୟନିକ ସାର– ଇଉରିଆ, ସୁପର ଫସଫେଟ୍, ନାଇଟ୍ରେଟ୍‌ର ଅତ୍ୟଧିକ ବ୍ୟବହାର ଯେତେବେଳେ ମାଟିର କ୍ଷତି ସାଧନ କରୁଛି ସେତେବେଳେ ଜୈବସାର ପ୍ରୟୋଗ ଯେ ନିହାତି ଦରକାର, ଏହା ଯେ କେହି ସ୍ୱୀକାର କରିବେ ।

ଜୈବ ଇନ୍ଧନ, ଜୈବ ଗ୍ୟାସ୍, ଜୈବ ବିନାଶ ପ୍ଲାଷ୍ଟିକ୍ ଭଳି ଅନେକ ନୂତନ ଧରଣର ଉତ୍ପାଦନ ଏହି ଜୈବ ପ୍ରଯୁକ୍ତି ବିଦ୍ୟାର ଗବେଷଣା ଦ୍ୱାରା ଏବେ ସମ୍ଭବ ହୋଇପାରିଛି ।

ସଂକ୍ଷେପରେ କହିଲେ– ଯେଉଁସବୁ ପଦାର୍ଥସମୂହ ପରିବେଶକୁ ପ୍ରଦୂଷଣ କରି ଚାଲୁଥିଲା ସେ ସବୁଥିରୁ ବର୍ତ୍ତମାନ ଜୈବ ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗଦ୍ୱାରା ନୂଆ ନୂଆ ଦ୍ରବ୍ୟସମୂହ ପ୍ରସ୍ତୁତ କରି ମାନବ ସେବାରେ ବିନିଯୋଗ କରିବା ସଙ୍ଗେ ସଙ୍ଗେ ପରିବେଶକୁ ନିୟନ୍ତ୍ରଣ କରାଯାଇ ପାରୁଛି । ଏହି ଏକବିଂଶ ଶତାବ୍ଦୀରେ ଏ ଦିଗରେ ଆହୁରି କିଛି ନୂତନ ଦିଗ୍‌ଦର୍ଶନ ମିଳିପାରିବ ବୋଲି ଆଶା କରିବା ସ୍ୱାଭାବିକ ।



ଇ.ବି.–୪୯୯
ବଡ଼ଗଡ଼ ବ୍ରିଟ କଲୋନୀ, ଭୁବନେଶ୍ୱର–୧୮

# ଜାତୀୟ ଐତିହ୍ୟ ଜୀବ ହସ୍ତୀର ସ୍ଥିତି

ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି

## ହାତୀର ନାମ ଓ ବିସ୍ତୃତି

ଜଳଭାଗର ବୃହତ୍ତମ ପ୍ରାଣୀ ନୀଳତିମି (Blue Whale) ପରି ସ୍ଥଳଭାଗରେ ପ୍ରାଣୀମାନଙ୍କ ମଧ୍ୟରେ ହାତୀ ବୃହତ୍ତମ । ବିଶାଳ ଶରୀର, ପ୍ରଲମ୍ବିତ ଶୁଣ୍ଢ ଓ ବିଚିତ୍ର ଦାନ୍ତ ଯୋଗୁଁ ଏହା ଅନ୍ୟ ପ୍ରାଣୀମାନଙ୍କ ଠାରୁ ସ୍ୱତନ୍ତ୍ର । ହାତୀର ଅନ୍ୟ ନାମଗୁଡ଼ିକ ହେଉଛି ଗଜ (ସ୍ତ୍ରୀ – ଗଜୀ), ହସ୍ତୀ (ସ୍ତ୍ରୀ- ହସ୍ତିନୀ) ଓ କରୀ (ସ୍ତ୍ରୀ- କରିଣୀ) । ହସ୍ତୀ ଶବ୍ଦ ସହ ଆଉ କେତେକ ଶବ୍ଦ ସଂଯୁକ୍ତ ଭାବରେ ବ୍ୟବହୃତ । ହସ୍ତିନା ଶବ୍ଦର ଅର୍ଥ ହେଉଛି ହସ୍ତୀ ନାମକ ରାଜାଙ୍କ ଦ୍ୱାରା ନିର୍ମିତ ପୁର ବା ଯୁଧିଷ୍ଠିରଙ୍କ ରାଜଧାନୀ । ହସ୍ତିମଲ୍ଲ ହେଉଛି ଐରାବତ ହସ୍ତୀ ବା ଗଣେଶ, ହସ୍ତିନା ହେଉଛି ମାଈ ହାତୀ ବା ଚାରି ଶ୍ରେଣୀର ନାରୀ ମଧ୍ୟରୁ ଚତୁର୍ଥ ଶ୍ରେଣୀୟା ନାରୀ, ହସ୍ତିପ ବା ହସ୍ତିପକ ହେଉଛି ହାତିଆଳ ବା ମାହୁନ୍ତ ବା ଗଜାରୋହୀ ଯୋଦ୍ଧା, ହସ୍ତିବାହ ହେଉଛି ହାତୀ-ଅଙ୍କୁଶ ବା ଗଜତାଡ଼ନା ଦଣ୍ଡ, ହସ୍ତିକ ହେଉଛି ହାତୀପଲ, ହସ୍ତିକକ୍ଷ ହେଉଛି ସିଂହ ଓ ବାଘ ଓ ହସ୍ତ୍ୟାରୋହ ବା ହସ୍ତ୍ୟାରୋହୀ ହେଉଛି ହାତୀଚଢ଼ାଳି ବ୍ୟକ୍ତି, ମାହୁନ୍ତ ବା ହାତୀ ଉପରେ ବସିଥିବା ଲଢାଳି ସୈନ୍ୟ ।

ସମଗ୍ର ପୃଥିବୀରେ କେବଳ ଦୁଇଟି ଜାତିର ହାତୀ ଦେଖାଯାନ୍ତି । ସେଥିରୁ ଗୋଟିଏ ଭାରତୀୟ ଓ ଅନ୍ୟଟି ଆଫ୍ରିକୀୟ । ଅନେକ ବର୍ଷ ପୂର୍ବରୁ ପୃଥିବୀର ବହୁ ଜାତିର ହାତୀ ଓ ହାତୀ ପରି ଅତିକାୟ ପ୍ରାଣୀ ମାଷ୍ଟୋଡନ୍ (Mastodon) ବିଚରଣ କରୁଥିଲେ । ଏବେ ସେମାନଙ୍କର କେବଳ ଦୁଇ ଜାତି ବଂଶଧର ଦୁଇ ବିଭିନ୍ନ ମହାଦେଶରେ ଚଳପ୍ରଚଳ । ଭାରତୀୟ ହାତୀର ବୈଜ୍ଞାନିକ ନାମ (Elephas Maximus) ବେଳେ ଆଫ୍ରିକା ହାତୀ ନାଁ ହେଉଛି (Loxodonta Africana) । ଭାରତୀୟ ହାତୀ ଭାରତ, ଶ୍ରୀଲଙ୍କା, ନେପାଳ, ବାଙ୍ଗଲାଦେଶ, ବର୍ମା, ଥାଇଲାଣ୍ଡ, କୋଚିନ, ଚୀନ, ମାଳୟ ଉପଦ୍ୱୀପ, ବୋର୍ଣ୍ଣିଓ ଓ ସୁମାତ୍ରାର ଜଙ୍ଗଲ ଅଞ୍ଚଳରେ ବାସ କରନ୍ତି । ଭାରତର ଆସାମ, ଉତ୍ତର ପ୍ରଦେଶ, ନୀଳଗିରି ପର୍ବତମାଳା, ପଶ୍ଚିମଘାଟ ପର୍ବତମାଳା, ମହୀଶୂର, କୁର୍ଗ, ଟ୍ରାଭାନ୍‌କୋର, ମଧ୍ୟପ୍ରଦେଶ ଓ ଓଡ଼ିଶାର ଏମାନଙ୍କ ବିସ୍ତୃତି ଦେଖାଯାଏ ।

## ହସ୍ତୀ, ଉକ୍ତି ଓ ସଂସ୍କୃତି

ହାତୀ ଏପରି ଏକ ପ୍ରାଣୀ ତା'ର ଠାଣି ଓ ଚଳଣିକୁ ଦେଖି ଲୋକେ ଅନେକ କଥା କହିଥାନ୍ତି । ଛୁଆ ଜନ୍ମ ବେଳକୁ ମାଆ , ଜେଜେମା ଓ ଆଈ ମାନଙ୍କଠାରୁ ହାତୀ ବିଷୟରେ ପ୍ରଥମେ ଶୁଣିଥାନ୍ତି । ଛୁଆ କାନ୍ଦିଲେ ବା ଶୁଆଇବାକୁ ଗଲାବେଳେ ଅଥବା ନ ଖାଉଥିବା ସମୟରେ ଖାଇବା ପାଇଁ ନାନାବାୟା ଗୀତପରି ଗାଆନ୍ତି- ''ଝୁଲରେ ହାତୀ ଝୁଲ, ବାଆ ପାଣି ଖାଇ ଫୁଲ୍'' । ଗାଁ ଗଣ୍ଡାର ଚକୁଳିଆ ପଣ୍ଡାର ଗୀତ ହେଉଛି- ହାତୀ ଝୁଲୁଥିବ ମା ଗୋ ନାତି ଖେଳୁଥିବ । ନାତି ଖେଳୁଥିବ ମା ଗୋ କୁଳ ତୋ ଉଜ୍ଜ୍ୱଳ ରହିବ ।'' ଖ୍ରୀଷ୍ଟପୂର୍ବ ୧୫୦୦ରୁ ଖ୍ରୀଷ୍ଟପୂର୍ବ ୬୦୦ ଅର୍ଥାତ୍ ବୈଦିକ ଯୁଗରେ ହାତୀ ଭାରତୀୟ କଳା ସଂସ୍କୃତିର ଅବିଚ୍ଛେଦ୍ୟ ଅଙ୍ଗ ପାଲଟିଥିଲା । ପୌରାଣିକ ତଥ୍ୟାନୁଯାୟୀ ଦେବତା ଓ ଦାନବ ଯେତେବେଳେ ଏକାଠି ହୋଇ ଅମୃତ ଲାଭ ଲକ୍ଷ୍ୟରେ ସାଗର ମନ୍ଥନ କଲେ, ସେତେବେଳେ ଉଭୟ ଅମୃତ ଓ ହଳାହଳ ସହ ଯେଉଁ ନବରତ୍ନ ସାଗର ଗର୍ଭରୁ ସୃଷ୍ଟି ହୋଇଥିଲା ତନ୍ମଧ୍ୟରୁ ଉଚ୍ଚୈଶ୍ରବା ଅଶ୍ୱ ଓ ଐରାବତ ହସ୍ତୀ ଅନ୍ୟତମ । ସ୍ୱର୍ଗପୁରୀର ରାଜା ଇନ୍ଦ୍ରଦେବ ଐରାବତ ହସ୍ତୀକୁ ନିଜର ବାହନ ରୂପେ ଗ୍ରହଣ କରିନେଲେ । କୁହାଯାଏ ଯେ ରାଜା ଇନ୍ଦ୍ର ସନ୍ତୁଷ୍ଟ ହେଲେ, ଐରାବତ ହସ୍ତୀ ଶୁଣ୍ଢରେ ପାଣି ଢାଳି ବାରିଦ କରାଇଥାଆନ୍ତି ।

ଖ୍ରୀଷ୍ଟପୂର୍ବ ୨୩୧ ସୁଦ୍ଧା ବୌଦ୍ଧଧର୍ମର ପ୍ରତୀକ ରୂପେ ହାତୀକୁ ଗ୍ରହଣ କରି ନିଆଯାଇଥିଲା । ବୌଦ୍ଧ ଧର୍ମ ସମ୍ବନ୍ଧୀୟ କାହାଣୀରେ ହାତୀର ବର୍ଣ୍ଣନା ବିସ୍ତୃତ ଭାବରେ ଦେଖିବାକୁ

ମିଳେ । ଦାର୍ଶନିକ ଆରିଷ୍ଟଟଲଙ୍କ ମତାନୁସାରେ ବୌଦ୍ଧିକ ପ୍ରଖରତା ଓ ପ୍ରତ୍ୟୁତ୍ପନ୍ନମତିତା କ୍ଷେତ୍ରରେ ହାତୀ ଏକ ମୁଖ୍ୟ ଜୀବ ଭାବରେ ଅଭିହିତ ଓ ପରିଗଣିତ । ଏସିଆ ମହାଦେଶରେ ସାଂସ୍କୃତିକ କ୍ଷେତ୍ରରେ ହାତୀ ଏକ ବୁଦ୍ଧିମତ୍ତା ପ୍ରାଣୀ ଭାବରେ ଗଣ୍ୟ । ଧନଧାନ୍ୟର ଆରାଧ୍ୟ ଦେବୀ ଲକ୍ଷ୍ମୀଙ୍କ ଛବି, ମୂର୍ତ୍ତି ଓ ପ୍ରତିମା ଆଦିକୁ ଲକ୍ଷ୍ୟ କଲେ ଦେଖାଯାଏ ଯେ ତାଙ୍କର ଦୁଇ ପାର୍ଶ୍ୱରେ ଦୁଇଟି ହାତୀ ଶୁଣ୍ଢରେ ପଦ୍ମଫୁଲ ବା କଳସ ଧାରଣ କରି ଦଣ୍ଡାୟମାନ । ବୋଧହୁଏ ସେଥିପାଇଁ ଲକ୍ଷ୍ମୀପୂଜା ଆଜି ଗଜଲକ୍ଷ୍ମୀ ପୂଜା ଭାବରେ ଓଡ଼ିଶାରେ ସର୍ବତ୍ର ପୂଜିତ ଓ ବିଦିତ । ଏ ପୂଜା ସମୟରେ ଲକ୍ଷ୍ମୀଙ୍କ ହାତୀ ବେଶ୍ ବଡ଼ ଆକାରର ହୋଇଥାଏ । ଓଡ଼ିଶାର ପ୍ରତ୍ୟେକ ମନ୍ଦିର ବା ଦେବାଳୟରେ ହାତୀର ଛବି ବା ମୂର୍ତ୍ତି ଦେଖିବାକୁ ମିଳେ । ପୁରୀ ଶ୍ରୀମନ୍ଦିରର ଉତ୍ତର ଦ୍ୱାର ହସ୍ତୀଦ୍ୱାର ଭାବରେ ଅଭିହିତ କାରଣ ସେ ପାର୍ଶ୍ୱରେ ଦୁଇଟି ହସ୍ତୀ ଦଣ୍ଡାୟମାନ । କୋଣାର୍କ ମନ୍ଦିରର ଉତ୍ତର ପୂର୍ବ ଦିଗରେ ମଧ୍ୟ ହସ୍ତୀର ପ୍ରସ୍ତର ମୂର୍ତ୍ତି ଦେଖିବାକୁ ମିଳେ । ଏହାଛଡ଼ା ମନ୍ଦିରଗୁଡ଼ିକରେ ପ୍ରସ୍ତର ଖୋଦିତ ହସ୍ତୀ ରାଜା ମହାରାଜାଙ୍କ ବିଭିନ୍ନ କାର୍ଯ୍ୟରେ ନିୟୋଜିତ ହେବାର ଦୃଷ୍ଟିକୁ ଆସିଥାଏ ।

ବିଘ୍ନନାଶକ ଗଣପତି ବା ଗଣେଶଙ୍କ ମୁହଁ ହାତୀ ମୁହଁ ପରି ହୋଇଥିବାରୁ ଗଣେଶଙ୍କ ଅନ୍ୟନାମ ଗଜାନନ । ଓଡ଼ିଶାର ପାରମ୍ପରିକ କଳା, ଭାସ୍କର୍ଯ୍ୟ, ପଟ୍ଟଚିତ୍ର, ଝୋଟି ଓ ଚିତା ଆଦିରେ ହାତୀର ସ୍ଥାନ ଊଣା ନୁହେଁ । ଧଉଳି ପାହାଡ଼ରେ ଅଶୋକଙ୍କ ଶିଳାଲିପିରେ ଖ୍ରୀଷ୍ଟପୂର୍ବ ୪୦୦ ଶତାବ୍ଦୀର ପ୍ରସ୍ତରଖୋଦିତ ସୁନ୍ଦର ହାତୀ ମୂର୍ତ୍ତିଟିଏ ଅଛି । ଧଉଳି ଶାନ୍ତିସ୍ତୂପର କାନ୍ଥରେ ହାତୀଙ୍କର ଚିତ୍ର ବେଶ୍ ସ୍ୱଷ୍ଟଭାବରେ ଲିପିବଦ୍ଧ । ଉଦୟଗିରିର ହାତୀଗୁମ୍ଫା ହିଁ ହସ୍ତୀ ମହତ୍ତ୍ୱର ଅନ୍ୟ ଏକ ପ୍ରତିଫଳନ । ପ୍ରାୟ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଖୋଦିତ ଏହି ଗୁମ୍ଫାମାନଙ୍କରେ ପଥର ଗର୍ତ୍ତମାନଙ୍କରେ ହାତୀଦଳକୁ ଦେଖି ଜନଗଣ ଭୟଭୀତ ହେବାର ଖୋଦିତ ଆକାର ବେଶ୍ ଜଳଜଳ । ଭାରତର ବିଭିନ୍ନ ରାଜ୍ୟର ରାଜାମାନେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀଠାରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ହାତୀମାନଙ୍କୁ ଯୁଦ୍ଧରେ ବ୍ୟବହାର କରୁଥିଲେ । ଅର୍କକ୍ଷେତ୍ର ସ୍ଥିତ କୋଣାର୍କ ସୂର୍ଯ୍ୟମନ୍ଦିରରେ ଏକ ପାର୍ଶ୍ୱରେ ବିଶାଳକାୟ ହସ୍ତୀ ଦଣ୍ଡାୟମାନ ଅବସ୍ଥାରେ ଥିବା ସହ ମନ୍ଦିରର କାନ୍ଥରେ ଯୁଦ୍ଧରେ ସାହାଯ୍ୟ ଓ ସାମିଲ ହୋଇଥିବା ହସ୍ତୀବାହିନୀ ଖୋଦିତ ଚିତ୍ର ଦୃଶ୍ୟମାନ । ମାର୍ଗଶିର ମାସ ପ୍ରତ୍ୟେକ ଗୁରୁବାରରେ ଲକ୍ଷ୍ମୀପୂଜା ଉଦ୍ଦେଶ୍ୟରେ ଗାଁ ଗହଳିଠାରୁ ଆରମ୍ଭ କରି ସହରାଞ୍ଚଳରେ କେତେକ ଘରେ ଅରୁଆଚାଉଳ ପିଠଉରେ ଚିତା ପକାଇବା ସମୟରେ ଘରର ଯେ କୌଣସି ସ୍ଥାନରେ ହସ୍ତୀର ଚିତା ଶୋଭାପାଏ ।

ଜଗନ୍ନାଥଙ୍କ ବିଭିନ୍ନ ବେଶରେ ଗଜବେଶ ବେଶ୍ ଉଲ୍ଲେଖନୀୟ । ଗୀତରେ ଅର୍ଥାତ୍ 'ଆହେ ନୀଳ ଶୈଳ' ପଦ୍ୟରେ ମଧ୍ୟ ହସ୍ତୀ ସ୍ଥାନିତ ।

## ହାତୀ ଓ ମଣିଷର ସମ୍ପର୍କ

ହାତୀ ସମୟ ଥିଲା ଏପରିକି ଆଜି ମଧ୍ୟ ମଣିଷର ସାଥୀ । ଚଳଚ୍ଚିତ୍ର 'ହାତୀ ମେରା ସାଥୀ' ଦେଖିଲେ ଜାଣିହୁଏ ହାତୀର କରାମତି ଓ ମନୁଷ୍ୟ ସହ ତା'ର କି ନିବିଡ଼ ସମ୍ପର୍କ । ଏତେ ବଡ଼ ଜୀବ ହୋଇ ମଧ୍ୟ ମନୁଷ୍ୟର କଥା ମାନି ଶୁଣି ଆଜ୍ଞାବହ ପରି କିପରି କାର୍ଯ୍ୟ କରିପାରେ । ସର୍କସରେ ହାତୀର କୁଶଳତା କହିଲେ ନ ସରେ । ପୌରାଣିକ ଯୁଗରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରଶିକ୍ଷଣପ୍ରାପ୍ତ ହାତୀମାନେ କେବଳ ଯେ ଯୁଦ୍ଧ କ୍ଷେତ୍ରରେ ସହାୟତା ପ୍ରଦାନ କରନ୍ତି ତା ନୁହେଁ ବରଂ ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ସେମାନେ ସେବକ ଭାବେ ଏକଦା ପରିଗଣିତ ହେଉଥିବା ବେଳେ ଏବେ ସେମାନେ ବୋଧହୁଏ ଆମ ସାମନାରେ ଅପଦାର୍ଥ । ଭାରତବର୍ଷରେ ରାଜାମହାରାଜାଙ୍କ ରାଜୁତି ସମୟରେ ପ୍ରତ୍ୟେକ ରାଜାଙ୍କ ରାଜ ଉଆସରେ ହସ୍ତୀମାନଙ୍କୁ ରଖାଯାଉଥିଲା । ପୁରୀର ମହାରାଜାଙ୍କୁ ଗଜପତି ମହାରାଜା ବୋଲି ଆଖ୍ୟା ଦିଆଯାଇଥାଏ । ରାଜା ମହାରାଜାଙ୍କ ସମୟରେ ନିଜର ଶକ୍ତି ଆଉ ସମ୍ପଦକୁ ନେଇ ସେମାନଙ୍କୁ ନରପତି (ନୃପତି), ଅଶ୍ୱପତି ଏବଂ ଗଜପତି ଆଦି ପଦବୀ ପ୍ରଦାନ କରାଯାଉଥିଲା । ନରପତିଙ୍କଠାରୁ ଗଜପତିଙ୍କୁ ଅଧିକ ବଳଶାଳୀ ଓ ପ୍ରତିପତ୍ତିଶାଳୀ ବୋଲି ବିବେଚନା କରାଯାଉଥିଲା । ଅର୍ଥାତ୍ ମଣିଷ ବିଚାରରେ ହାତୀ ଏକ ଶ୍ରେଷ୍ଠ ବୁଦ୍ଧି ବିବେକବାନ ପ୍ରାଣୀ ଥିଲା ।

କିମ୍ବଦନ୍ତୀରୁ ଜଣାଯାଏ ଯେ ମୁକୁନ୍ଦଦେବ ଏକ ଲକ୍ଷ ହାତୀ ଉତ୍ତରାଧିକାରୀ ସୂତ୍ରରେ ପାଇଥିବା ବେଳେ ଆଉ ଏକ ଲକ୍ଷ ହାତୀ ଉପହାରସ୍ୱରୂପ ପାଇଥିଲେ । ଏ କଥାରୁ ସ୍ପଷ୍ଟ ଯେ ମଣିଷ ଓ ହାତୀର ସମ୍ପର୍କ କେତେ ନିବିଡ଼ ଏବଂ ଓଡ଼ିଶା

ଭୂଖଣ୍ଡରେ ଏମାନଙ୍କ ସଂଖ୍ୟା ସତରେ କେତେ ଅଧିକ ଥିଲା । ବାସ୍ତବିକ ହାତୀ ଓ ମନୁଷ୍ୟର ସମ୍ପର୍କ ବେଶ୍ ପ୍ରାଚୀନ ଓ ନିବିଡ଼ । ପୌରାଣିକ ଯୁଗରୁ ଆରମ୍ଭ କରି ଅଦ୍ୟାବଧି ମଣିଷ ନିଜର କାର୍ଯ୍ୟ ନିମିତ୍ତ ହାତୀକୁ ଖାଲି ବ୍ୟବହାର କରି ନାହିଁ ତାକୁ ନେଇ ଗୀତ, କବିତା, କାହାଣୀ, ବାଣୀ, ଚଳଚ୍ଚିତ୍ର, କିମ୍ବଦନ୍ତୀ ଓ ରୂଢ଼ି ଆଦି ରଚନା କରିଛି । ପୁରୀର ପୃଥିବୀ ପ୍ରସିଦ୍ଧ ରଥଯାତ୍ରାରେ ଶରଧାବାଲିରେ ରଥ ଯିବା ସମୟରେ ଅର୍ଥାତ୍ ପିଚୁରାସ୍ତା ତିଆରି ପୂର୍ବରୁ ବାଲିରାସ୍ତାରେ ରଥ ଯାଇପାରୁ ନ ଥିବା ସମୟରେ ଗଜପତି ରାଜାଙ୍କ ହାତୀମାନେ ଆସି ରଥଟଣା କାର୍ଯ୍ୟରେ ନିୟୋଜିତ ହୋଇ ରଥଟଣା ସମ୍ପନ୍ନ କରୁଥିଲେ । ଏପରିକି ରଥ ତିଆରି ନିମିତ୍ତ ଆବଶ୍ୟକ କାଠଗଣ୍ଡିଗୁଡ଼ିକୁ ଏହି ହାତୀମାନେ ବୋହି ଆଣିବାରେ ସାହାଯ୍ୟ କରୁଥିଲେ ବୋଲି ଶୁଣାଯାଏ । ଏବେବି ଜଙ୍ଗଲରୁ ହାତୀ ଆଣି ପ୍ରଶିକ୍ଷଣ ମାଧ୍ୟମରେ ବିଭିନ୍ନ କାର୍ଯ୍ୟରେ ଲଗାଯାଉଛି ।

ଅତୀତରେ ହାତୀ ଯୁଦ୍ଧ ଓ ରାଜକୀୟ ଅନୁଷ୍ଠାନମାନଙ୍କରେ ବାହନ ରୂପେ ବ୍ୟବହୃତ ହେଉଥିଲେ । ପ୍ରାଚୀନ ଓଡ଼ିଶାରେ ରାଜା ସନ୍ତାନହୀନ ହୋଇ ମରିଗଲେ ହାତୀ ସୁନା କଳସ ଧରି ଯାହା ମୁଣ୍ଡରେ ପାଣି ଢାଳୁଥିଲା ସେ ରାଜପଦରେ ଅଭିଷିକ୍ତ ହେଉଥିଲା । ଅର୍ଥାତ୍ ହାତୀ ରାଜା ନିର୍ବାଚନ କରୁଥିଲା । ଆସାମର କାଜିରଙ୍ଗା ଅଭୟାରଣ୍ୟରେ ଆକବର ନାମକ ଏକ ପୋଷା ହାତୀ ଥିଲା । ଏହା ଅତ୍ୟନ୍ତ ଧୀର, ସାହସୀ ଓ ଚତୁର ବୋଲି ଖ୍ୟାତି ଲାଭ କରିଥିଲା । ଏ ହାତୀଟି ତା ଜୀବନକାଳ ମଧ୍ୟରେ ତିନୋଟି ଲୋକଙ୍କୁ ମାରିଥିଲା ଏବଂ ମାରିବାର କାରଣ ଥିଲା ସେ ଲୋକଙ୍କର ଚୌର୍ଯ୍ୟବୃତ୍ତି । ତେଣୁ ଏଥିରୁ ଜଣାଯାଏ ଯେ ହାତୀମାନେ ବେଶ୍ ବୁଦ୍ଧିମାନ । ଏହା ଏକ ଧୀର, ନମ୍ର ଓ ଭଦ୍ର ପ୍ରାଣୀ ଭାବରେ ପରିଗଣିତ ।

ହାତୀ ସହ ମନୁଷ୍ୟର ସମ୍ପର୍କ ଏତିକିରେ ମଧ୍ୟ ପୂର୍ଣ୍ଣଚ୍ଛେଦ ପଡ଼ି ନାହିଁ । ସମୟ ଥିଲା ଯେତେବେଳେ ହାତୀମାନଙ୍କ ସଂଖ୍ୟା ବେଶ୍ ଅଧିକ ଥିଲା ସେତେବେଳେ ଦନ୍ତାହାତୀ ମରିଗଲେ ରାଜା ମହାରାଜା ତଥା ଧନୀକ ଶ୍ରେଣୀର ଲୋକମାନେ ହାତୀଦାନ୍ତ (Tusk) ବ୍ୟବହାର କରିଥିଲେ ପଲଙ୍କ ପ୍ରସ୍ତୁତିରେ । ଆଉ ଏ ପଲଙ୍କର ନାମ ଥିଲା ଗଜଦନ୍ତ ପଲଙ୍କ । ହାତୀ ପୋଷା ଜୀବମାନଙ୍କ ମଧ୍ୟରେ ଏପରି ପୋଷା ମାନିବା ଜୀବ ଯେ ବିଶ୍ୱାସ କରିହେବ ନାହିଁ । ନନ୍ଦନକାନନ ବା ସେପରି ଅଭୟାରଣ୍ୟଗୁଡ଼ିକରେ ମଣିଷର କଥାମାନି ଅନେକ କାର୍ଯ୍ୟ କରିଚାଲନ୍ତି । ଏପରିକି ପର୍ଯ୍ୟଟକମାନେ ହାତୀ ଦେଖି ତାକୁ ଟଙ୍କା ପଇସା ଦେଲେ ପାଖରେ ଥିବା ମାହୁନ୍ତକୁ ଶୁଣ୍ଢରେ ପଇସା ଆଣି ଦେଇଦିଅନ୍ତି । ସତରେ ମାହୁନ୍ତ ପ୍ରତି ଏ ହାତୀର କି ଦୟା ଓ ସାହାଯ୍ୟ ! ସର୍କସରେ ପଛ ଗୋଡ଼ରେ ଚାଲିବା, ଛୋଟିଆ ଚୌକି ଉପରେ ବସିବା, ଶୁଣ୍ଢରେ ଠାକୁରଙ୍କୁ ଫୁଲମାଳ ପ୍ରଦାନ କରିବା, ଫୁଟବଲକୁ ଗୋଡ଼ରେ ମାରିବା ଓ ଶୁଣ୍ଢରେ ଘଣ୍ଟି ବଜାଇବା ପରି କାର୍ଯ୍ୟ କରିବା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ଯେ ଏତେ ବଡ଼ ପ୍ରାଣୀ କିପରି ମଣିଷର କଥା ମାନି ନିର୍ଦ୍ୱନ୍ଦ୍ୱରେ ଏତେ କାର୍ଯ୍ୟ କରିପାରୁଛି ବୋଲି । ଏହାହିଁ ନିର୍ଦ୍ଦେଶ କରେ ମନୁଷ୍ୟ ସହ ହାତୀର ନିବିଡ଼ ସମ୍ପର୍କ ଓ ମୁନିବ ପ୍ରତି ସେବା ଓ ଶ୍ରଦ୍ଧା ।

ହାତୀର ଝୁଲିବା ସ୍ୱଭାବ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ । ଏପରି ଭାବକୁ ନେଇ କଥାରେ କୁହାଯାଏ ମଦମତ୍ତ ଠାଣି । ସ୍ତ୍ରୀ ବା ଝିଅମାନଙ୍କର ଧୀର ଚାଲିକୁ ନେଇ ଗଜଚାଲି ସହ ତୁଳନା କରି କୁହାଯାଏ ଗଜଗାମିନୀ । ଢଗରେ କୁହାଯାଏ 'ହାତୀ ବଂଚିଲେ ଲକ୍ଷେ ଓ ମଲେ ଲକ୍ଷେ ।' ଝିଅ ବା ପୁଅ ବାହାଘର ପରେ ବାପାମାଆଙ୍କ ଠାରୁ ଚାଲିଗଲେ ଲୋକକଥାରେ କୁହାଯାଏ 'ହାତୀ ବନସ୍ତରେ ଥିଲେ ବି ରାଜାଙ୍କର' । ହାତୀର ରୀତି ବି ସ୍ୱଭାବ ଓ ପ୍ରକୃତିକୁ ନେଇ ଏପରି ଉକ୍ତି ଆଦି ମନୁଷ୍ୟର ଜୀବନ ସହ ସଂପୃକ୍ତିର ସୂଚନା ପ୍ରଦାନ କରେ ।

## ହାତୀର ଶାରୀରିକ ବୈଶିଷ୍ଟ୍ୟ

ସ୍ଥଳଚର ଅତିକାୟ ପ୍ରାଣୀ ହିସାବରେ ହାତୀର ନିମ୍ନଲିଖିତ ଶାରୀରିକ ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ ।

(୧) ହାତୀ ହିଁ ଗାଈ, ଘୋଡ଼ା, ସିଂହ, ବାଘ, ହରିଣ ଆଦି ପ୍ରାଣୀମାନଙ୍କ ପରି ଏକ ସ୍ତନ୍ୟପାୟୀ ପ୍ରାଣୀ । ମାତ୍ର ତାର ମାଂସପେଶୀୟ ଶୁଣ୍ଢ ରହିଥାଏ ଯାହାକି ଅନ୍ୟ ପ୍ରାଣୀଙ୍କ ଠାରେ ଦେଖାଯାଏ ନାହିଁ । ଏହା ତା'ର ହାତ ପରି କାର୍ଯ୍ୟ କରେ ବୋଲି ହାତୀର ଅନ୍ୟନାମ କରୀ । ଏହା ଉପରପାଟି ଓ ନାକର ମିଶ୍ରିତ ଆକାର ।

(୨) ହାତୀ ଶୁଣ୍ଢ ସାହାଯ୍ୟରେ ଖାଇବା, ପାଣିପିଇବା, ଧୂଳି ପକେଇବା, ଶୁଙ୍ଘିବା, ସ୍ପର୍ଶ କରିବା, ଶବ୍ଦ ସୃଷ୍ଟି କରିବା, ଯୋଗାଯୋଗ ସ୍ଥାପନ କରିବା, ପ୍ରତିରକ୍ଷା

ଦିଗରେ ବ୍ୟବହାର କରିବା ଆଦି ପ୍ରତ୍ୟେକ କାର୍ଯ୍ୟ ସମ୍ପନ୍ନ କରିପାରେ ।

(୩) ହାତୀର ପାଟିରେ ଦୁଇଟି ବଡ଼ ଦାନ୍ତ (Tusk) ବାହାରି ଥାଏ । ଏହା ଅଣ୍ଡିରା ହାତୀମାନଙ୍କଠାରେ ଥାଏ । ମାଈ ହାତୀ ଠାରେ ଏ ପ୍ରକାର ଦାନ୍ତ ନ ଥାଏ ବା ଥିଲେ ବହୁତ ସାନ ଆକାରରେ ଥାଏ । ଆଫ୍ରିକୀୟ ହାତୀର ଉଭୟ ମାଈ ଓ ଅଣ୍ଡିରା ହାତୀର ପାଟିରେ ବଡ଼ ଦାନ୍ତ ଦେଖାଯାଏ ।

(୪) ହାତୀର ଆଖି ଶରୀର ତୁଳନାରେ ବହୁତ ସାନ । ତା'ର ମୁଣ୍ଡର ସମ୍ମୁଖ ଅଂଶ ସ୍ଫୀତ ହେତୁ ଏହା ସିଧାରେ ଆଗକୁ ଦେଖିପାରେ ନାହିଁ ।

(୫) ସାଧାରଣତଃ ଭାରତୀୟ ଅଣ୍ଡିରା ହାତୀ ୮-୯ ଫୁଟ ଓ ମାଈ ହାତୀ ୬-୮ ଫୁଟ ଉଚ୍ଚ ହୁଅନ୍ତି ।

(୬) ଭାରତୀୟ ହାତୀର କାନ ବଡ଼ ଓ କୁଲାପରି ହେଲେ ହେଁ ଆଫ୍ରିକୀୟ ହାତୀର କାନ ଆହୁରି ବଡ଼ ଓ ପିଠି ଖାଲୁଆ ।

(୭) ଭାରତୀୟ ହାତୀର ପଛଗୋଡ଼ରେ ଚାରିଟି କରି ନଖ, ମାତ୍ର ଆଫ୍ରିକୀୟ ହାତୀର ପଛଗୋଡ଼ରେ ନଖ ତିନୋଟି ।

(୮) ଭାରତୀୟ ହାତୀର ମୁଣ୍ଡ ବଡ଼ ବେଳେ ଆଫ୍ରିକୀୟ ହାତୀର କାନ ବଡ଼ ।

(୯) ଭାରତୀୟ ହାତୀର ଶୁଣ୍ଢ ଆଗରେ ଗୋଟିଏ ଓଠ ଥିଲାବେଳେ ଆଫ୍ରିକୀୟ ହାତୀର ଶୁଣ୍ଢ ଆଗରେ ଓଠ ଦୁଇଟିକିଆ ଥାଏ ।

(୧୦) ଭାରତୀୟ ହାତୀ ତୁଳନାରେ ଆଫ୍ରିକୀୟ ହାତୀର ଶୁଣ୍ଢ ଛୋଟ, ମାତ୍ର ଦାନ୍ତ ଅପେକ୍ଷାକୃତ ବଡ଼ ଓ ଉପର ଆଡ଼କୁ ବଙ୍କା । କେତେକ ଅଣ୍ଡିରା ଭାରତୀୟ ହାତୀର ଦାନ୍ତ ନ ଥାଏ । ସେମାନଙ୍କୁ ମାଖିନା କୁହାଯାଏ । ମାଖିନା ହାତୀ ସାଧାରଣତଃ ବୃହଦାକାର ଓ ସେମାନଙ୍କର ଶୁଣ୍ଢ ଅତି ବଡ଼ ହୋଇଥାଏ । ମାଖନା ହାତୀ ବେଶ୍ ବଳୁଆ ଓ ଅନେକ ସମୟରେ ଦଳର ଦଳପତି ହୋଇଥିବାର ଦେଖାଯାଏ ।

## ହାତୀ ମଣିଷ ଲଢ଼େଇ

ପୃଥିବୀପୃଷ୍ଠରେ ଏକ ପୁରାତନ ଜୀବ ବିଶାଳ ବପୁବନ୍ତ, ନିରୀହ ତଥା ବୁଦ୍ଧିମାନ ପ୍ରାଣୀ ହାତୀ ଓ ଏହି ଧରାପୃଷ୍ଠର ସବୁଠାରୁ ବିଚାରବନ୍ତ, ଚାଲାକ ଶ୍ରେଷ୍ଠ ସାମାଜିକଜୀବ ମଣିଷ ମଧ୍ୟରେ ସଂଘର୍ଷ ଏବେ ପ୍ରାୟ ଶୁଣାଯାଉଛି ଓ ପ୍ରକାଶ ପାଉଛି । କେଉଁ ଆଦିମ କାଳରୁ ବଣ ଜଙ୍ଗଲରେ ରହୁଥିବା ଜଙ୍ଗଲୀ ଅତିକାୟ ଜୀବ ଆଜି ରାଜରାସ୍ତାରେ ମଣିଷ ସହିତ ଲଢ଼େଇ କରୁଛି କାହିଁକି ? ହାତୀଙ୍କୁ ପୂଜା କରୁଥିବା ମଣିଷ ଏବେ କେତେକ ସ୍ଥଳରେ ହାତୀଙ୍କୁ ମାରିବାକୁ ଉଦ୍ୟମ କରୁଥିବା ନିଶ୍ଚୟ ଭାବେ ଉଦ୍‌ବେଗଜନକ, ଆଶ୍ଚର୍ଯ୍ୟଜନକ ଓ ଦୁର୍ଭାଗ୍ୟଜନକ । ଏବେ ଦେଖିବା ହାତୀ ମଣିଷ ସଂଘର୍ଷର ସମ୍ଭାବ୍ୟ କାରଣଗୁଡ଼ିକ କ'ଣ ?

(୧) ଆଜିର ସ୍ୱାର୍ଥାନ୍ଧ ମଣିଷକୁ ସର୍ବଗ୍ରାସୀ ଲୋଭ ଗ୍ରାସ କରିବାରୁ ସେ ଜଳ, ସ୍ଥଳ ଏବଂ ଗଗନ ସୀମାକୁ ଅଧିକାର, ଖିନ୍‌ଭିନ୍ ତଥା ନଷ୍ଟଭ୍ରଷ୍ଟ କରିବା ପାଇଁ ଚକ୍ରାନ୍ତ ଚଳାଇଛି । ଫଳରେ ପରିବେଶ ପର୍ଯ୍ୟାବରଣ ଆଜି ରୁଗ୍ଣ ଓ କ୍ଷୀଣକାୟ ।

(୨) ରାସ୍ତାଘାଟ, ବନ୍ଧବାଡ଼ ଆଦି ପ୍ରାକୃତିକ ପରିବେଶକୁ ବିପର୍ଯ୍ୟସ୍ତ କରି ନିର୍ମାଣକାର୍ଯ୍ୟରେ ଆଗେଇ ଆସିଛି ।

(୩) ସହରାଞ୍ଚଳରେ ପ୍ରସାରଣ ଫଳରେ ହାତୀ ତଥା ଅନ୍ୟାନ୍ୟ ପ୍ରାଣୀମାନଙ୍କର ଆବାସସ୍ଥଳୀ ଉପରେ ଚାପ ପଡ଼ିଛି ଓ ସଙ୍କୁଚିତ ତଥା ଅବରୁଦ୍ଧ ହୋଇପଡ଼ିଛି ।

(୪) କଳକାରଖାନା ପାଇଁ ପ୍ରାକୃତିକ ଜଙ୍ଗଲ, ପାହାଡ଼, ଝରଣା ଆଦି ଦଖଲ କରି ପ୍ରାକୃତିକ ଆବାସସ୍ଥଳୀ, ଯାତାୟତ ପଥ ଆଦିକୁ ନିଜ ଅକ୍ତିଆରକୁ ନେଇ ଆସୁଛି ।

(୫) ହାତୀର ଖାଦ୍ୟ ଓ ପାନୀୟର ଅଭାବ ହେତୁ ବଞ୍ଚିବା ଆଶାରେ ଖାଦ୍ୟ ଯେଉଁଠି ପାଉଛି ବା ପାଇବା ଆଶାରେ ମନୁଷ୍ୟ ବସତି ସ୍ଥାନକୁ ମାଡ଼ି ଆସିବା ସ୍ୱଭାବ ହୋଇଛି ।

(୬) ପଇସା ଲୋଭରେ ହାତୀର ହାତୀଦାନ୍ତ ସଂଗ୍ରହ କରିବା ଲକ୍ଷ୍ୟରେ ଶିକାରୀଗଣ ଶିକାର ପାଇଁ ଲୁଚିଛପି ମାରିବା ପାଇଁ ନୃଶଂସ ହୋଇପଡ଼ିଛନ୍ତି ।

(୭) ହାତୀ ଶିକାର କରିବା, ସେମାନଙ୍କର ଅପମୃତ୍ୟୁ ଘଟାଇବା, ବିନା ମାଲିକାନାପତ୍ରରେ ହାତୀ ପୋଷିବା, ହାତୀର ବିଭିନ୍ନ ମୂଲ୍ୟବାନ ଜିନିଷ ସଂଗ୍ରହ କରିବା, ମହଜୁଦ ରଖିବା, ବିକ୍ରୟ କରିବା, ହାତୀଦାନ୍ତ ନିର୍ମିତ ବିଭିନ୍ନ ପଦାର୍ଥ

ବିନାନୁମତିରେ ରଖିବା ବା କାହାକୁ ହସ୍ତାନ୍ତର କରିବା ଧର୍ତ୍ତବ୍ୟ ଅପରାଧ ହେଲେହେଁ ଏହା ଜାଣି ଅଜଣା ଭଳି ଏ ମଣିଷ ଏ ସବୁରେ ସିଦ୍ଧହସ୍ତ ।

(୮) ହାତୀର ଆବାସସ୍ଥଳୀକୁ ବା ସଂରକ୍ଷିତ ଜଙ୍ଗଲଜମିଗୁଡ଼ିକୁ ଲୋକଙ୍କୁ ବିକ୍ରୟ କରାଯିବା ହିଁ ହାତୀର ସୁରକ୍ଷା ବା ବଞ୍ଚିବା ପାଇଁ ଏକ ପ୍ରଶ୍ନବାଚୀ ।

(୯) କେତେକ ସ୍ଥାନରେ ହାତୀକୁ ମାରିବା ପାଇଁ ମଣିଷ ଜାଣିଶୁଣି ବିଦ୍ୟୁତ ସଂଯୋଗ ବ୍ୟବସ୍ଥା କରୁଥିବା ବେଳେ ଅନ୍ୟ କେଉଁଠି ବିଦ୍ୟୁତ୍ ବିଭାଗ ବା ଘରୋଇ ବିଦ୍ୟୁତ୍ କମ୍ପାନୀର ଖାମଖିଆଲ ମନୋଭାବ ଓ ଅବହେଳା ହିଁ ହାତୀ ମୃତ୍ୟୁର ଅନ୍ୟ ଏକ ମୁଖ୍ୟ କାରଣ ।

(୧୦) ଲାଇଟ୍ ଓ ଶବ୍ଦ ହିଁ ହାତୀ ଅସ୍ତବ୍ୟସ୍ତର ଆଉ ଏକ କାରଣ ।

ସାରଣୀ ଦଶନ୍ଧି ମଧ୍ୟରେ ହାତୀ ମୃତ୍ୟୁ ସଂଖ୍ୟା (କେଉଁଝର ବନ୍ୟ ବିଭାଗରେ)

| କ୍ରମିକ ସଂଖ୍ୟା | ବର୍ଷ | ମୃତ୍ୟୁ | ବିଦ୍ୟୁତ୍ ତାରଜନିତ ମୃତ୍ୟୁ |
|---|---|---|---|
| ୧. | ୨୦୦୧–୦୨ | ୦୮ | ୦୪ |
| ୨. | ୨୦୦୨–୦୩ | ୧୨ | ୦୪ |
| ୩. | ୨୦୦୩–୦୪ | ୦୪ | ୦୧ |
| ୪. | ୨୦୦୪–୦୫ | ୧୨ | ୦୪ |
| ୫. | ୨୦୦୫–୦୬ | ୦୩ | ୦୧ |
| ୬. | ୨୦୦୬–୦୭ | ୦୬ | ୦୧ |
| ୭. | ୨୦୦୭–୦୮ | ୦୬ | ୦୨ |
| ୮. | ୨୦୦୮–୦୯ | ୦୭ | ୦୧ |
| ୯. | ୨୦୦୯–୧୦ | ୦୪ | ୦୧ |
| ୧୦. | ୨୦୧୦– | ୦୪ | ୦୩ |
| ସମୁଦାୟ | ଦଶବର୍ଷ– | ୬୬ | ୨୨ |

ଉତ୍ସ : ଦୈନିକ ସମ୍ବାଦପତ୍ର (The Times of India) ତା.୦୨.୦୮.୨୦୧୦ରେ ପ୍ରକାଶିତ ।

## ହାତୀ ଉପଦ୍ରବ, ରକ୍ଷା ପାଇଁ ସତର୍କତା ଓ ନିୟମାବଳୀ

ପ୍ରକୃତିକୁ ବିକୃତି କରି ସେଠାରେ ଥିବା ଆଦିବାସୀ ଏ ପଶୁପକ୍ଷୀ ଆଦିଙ୍କୁ ବିସ୍ଥାପନ କରିବାରୁ ପ୍ରକୃତି କ୍ରୋଡ଼ରୁ ତଡ଼ାଖାଇ ମଣିଷ ପରି ସପକ୍ଷବାଦୀ ଏବଂ ବିପକ୍ଷବାଦୀ ଭାବରେ ଭାଗ ନ ହୋଇ ସଙ୍ଗଠିତ ଭାବରେ ଏକ ହୋଇ ରାଜରାସ୍ତାକୁ ଆସି ହାତୀମାନେ ଧନଜୀବନ ହାନିର କାରଣ ହେଉଛନ୍ତି । ପ୍ରାଚୀନ କାଳରୁ ହାତୀମାନଙ୍କ ବିଷୟରେ ପ୍ରଚଳିତ କଥିତ ଓ ଚର୍ଚ୍ଚିତ ଢଗଢମାଳି ଆଦି ଯେପରି ଲୁପ୍ତ ଓ ସୁପ୍ତ ତଥା ଅବାଞ୍ଛିତ ହୋଇପଡ଼ିଛି, ସେହିପରି ଏହି ଅନୁପମ ସ୍ଥଳଚର ଜୀବଟିର ସ୍ଥିତି ମଧ୍ୟ ବିପନ୍ନ ହୋଇପଡ଼ିଛି । ଉଭୟ ପ୍ରାକୃତିକ ଓ ମନୁଷ୍ୟକୃତ ଦିଗରୁ ହାତୀ ଆଜି ଷଣ୍ଢଆସି ଆକ୍ରମଣର ସମ୍ମୁଖୀନ । ହାତୀ ବଣୁଆ ହୋଇପାରେ, ମାତ୍ର ହିଂସ୍ର ନୁହେଁ । ସେ ବଣବୁଦାରେ ଲୁଚିରହିବା ଭଳି ପ୍ରାଣୀଟିଏ ମଧ୍ୟ ନୁହେଁ । ହାତୀ ହିଁ ମନ କା ରାଜା । ସ୍ୱାଭାବିକ ପରିସ୍ଥିତିରେ ଉପଯୁକ୍ତ ଆବାସସ୍ଥଳୀ ପରିସରରେ ଗୋଟିଏ ପ୍ରାପ୍ତ ବୟସ୍କ ତଥା ସୁସ୍ଥ ସବଳ ହାତୀର ପ୍ରାକୃତିକ ଶତ୍ରୁ କେହି ବାସ୍ତବିକ ନାହାନ୍ତି । ଅନ୍ୟାନ୍ୟ ଜୀବଜନ୍ତୁଙ୍କ ତରଫରୁ ଏହି ଅତିକାୟ ଜୀବ ଉପରେ ଆକ୍ରମଣର ସମ୍ଭାବନା କ୍ଷୀଣ, କିନ୍ତୁ ଅଧିକାଂଶ ସ୍ଥଳରେ ହାତୀମାନଙ୍କର ଅସ୍ୱାଭାବିକ ମୃତ୍ୟୁ ପାଇଁ ଏହି ମଣିଷର ଅମଣିଷପଣିଆ ହିଁ ପ୍ରତ୍ୟକ୍ଷ ବା ପରୋକ୍ଷରେ ଦାୟୀ ।

ଚାରିଆଡ଼େ ଶବ୍ଦ ପ୍ରଦୂଷଣର ବିସ୍ଫୋରଣ, ଭାରୀ ଯାନର ଚଳପ୍ରଚଳ, ବିଭିନ୍ନ ଗୁଳିଗୋଳା ଶବ୍ଦ, ଦିପାବଳୀର ବାଣ ଆବାଜ, ବିବାହବ୍ରତ ତଥା ବିଭିନ୍ନ ଉତ୍ସବଗୁଡ଼ିକରେ ଆତସବାଜିର ଶବ୍ଦ ପ୍ରାକୃତିକ ଖାଦ୍ୟଭଣ୍ଡାରର ଅଭାବ, ନିର୍ଭୟ ବିଚରଣର ସ୍ଥାନାଭାବ ତଥା ସେମାନଙ୍କ ସ୍ଥାନକୁ ଅନ୍ୟମାନେ ଅଳଙ୍କୃତ କରିବା କାରଣଗୁଡ଼ିକ ମଣିଷ ସହିତ ଲଢ଼େଇର କାରଣ । ହାତୀର ମୁକ୍ତ ବିଚରଣ ସ୍ଥାନ ତଥା ବାସସ୍ଥାନ ସଙ୍କୁଚିତ ହେବା କାରଣରୁ ହାତୀ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ବନ୍ଦୀ ହୋଇଯାଇ ଉପଯୁକ୍ତ ଖାଦ୍ୟପାନୀୟରୁ ବଞ୍ଚିତ ହୋଇ କଷଣ ଭୋଗୁଛି ଏବଂ ଶାରୀରିକ ମିଳନରୁ ବଞ୍ଚିତ ହୋଇ ଉପଦ୍ରବ ଆରମ୍ଭ କରୁଛି । ପୁନଶ୍ଚ ପଣସ, ଆମ୍ବ, ପାଚିଲା କଦଳୀ ଆଦି ହାତୀର ପ୍ରିୟ ଖାଦ୍ୟ । ଆଜିକାଲି ଅନେକ ଜାଗାରେ ଜଙ୍ଗଲ କାଟି ଏପରି ଅର୍ଥକରୀ ଫସଲ ଅମଳ ହେଉଥିବାରୁ ଖାଦ୍ୟ ଲୋଭରେ ହାତୀମାନେ ସେ ସବୁ ଖାଇବାକୁ ଆସୁଛନ୍ତି । ବିଶେଷକରି ଶୀତଋତୁର ଧାନପରି ଶସ୍ୟ ଅମଳ ସମୟରେ ଘରେ ଗଦା ହୋଇଥିବା ଧାନ ବା ଖଳା ଗଦାରେ ଗଦା ମାରିଥବା ଧାନ ତଥା ଶସ୍ୟ କ୍ଷେତ୍ରର ପାଚିଲା ଧାନ ଆଦିର ବାସନାରେ ସେମାନେ ଖାଇବା ସହ ଶସ୍ୟାଦିକୁ

କୁଦିତକଟି ନଷ୍ଟ କରି ପକାଉଛନ୍ତି । ଫଳରେ ସେସବୁ କ୍ଷେତ୍ରରେ ଫସଲ ନଷ୍ଟ ହେବା ସହ ମଣିଷ-ହାତୀ ସମ୍ପର୍କ ତିକ୍ତ ହେଉଛି । ଲଢ଼େଇ ହେଉଛି ଓ ହାତୀ ମରିଯାଉଛି ।

ପରିସ୍ଥିତି ଏପରି ହେଉଛି ଯେ ମଣିଷ ଓ ହାତୀ ସାମନାସାମନି ହେବା ସ୍ୱାଭାବିକ୍ କଥା । ସେପରି ପରିସ୍ଥିତିରେ କି ପ୍ରକାର ସତର୍କତା ଅବଲମ୍ବନ କରାଯାଇପାରେ ଏବେ ଆଲୋଚନା କରିବା ।

(୧) ହାତୀମାନେ ରାତି ବା ଦିନରେ ଜନବସତିକୁ ଆସିଲେ, ୧୦ ବା ୧୨ଜଣ ବ୍ୟକ୍ତି ଏକାଠି ହୋଇ ବାଜା ବା ଟିଣପିଟି ହାତୀମାନଙ୍କୁ ଘଉଡ଼ାଇବାକୁ ଚେଷ୍ଟା କରିବା ଉଚିତ୍ । ଏହି ସମୟରେ ହାତୀ ନିକଟକୁ ଆସିବା ଅନୁଚିତ୍ ।

(୨) ହାତୀ ଉପଦ୍ରବ ସମୟରେ ଗାଁ ବା ସହରାଞ୍ଚଳରେ ରାତି ସମୟରେ ଦଳବାନ୍ଧି ମଶାଲ ଜଳାଇ ନିୟମିତ କିଛିଦିନ ପହରାଦେବା ଉଚିତ୍ ।

(୩) ଚାଷଜମିର ସୁରକ୍ଷା ଚାହିଁଲେ ଗୋଟିଏ ମଞ୍ଚା ତିଆରି କରିବା ଦରକାର ଏକ ଉଚ୍ଚ ଗଛ ଉପରେ ଏବଂ ମଞ୍ଚା ତଳେ ନିଆଁ ଜଳାଇରଖିବା ଆବଶ୍ୟକ ।

(୪) ହାତୀର ମୁହାଁମୁହିଁ ହେଲେ ତାକୁ ଯଥାଶୀଘ୍ର ରାସ୍ତା ଛାଡ଼ିଦେବା ଉଚିତ୍ । ପାହାଡ଼ିଆ ବା ଅତ୍ୟୁଚ୍ଚ ସ୍ଥାନରେ ସାମନାସାମନି ହେଲେ ତାହାହେଲେ ପାହାଡ଼ର ଗଡ଼ାଣିଆ ସ୍ଥାନକୁ ଦୌଡ଼ିବା ଦରକାର । ଉପରଆଡ଼କୁ ନ ଦୌଡ଼ିବା ଉଚିତ୍ । କିଛି ସମୟ ଦୌଡ଼ିବା ପରେ ପିନ୍ଧିଥିବା ଗାମୁଛା, ଟୋପି, ପଗଡ଼ି ବା ବସ୍ତ୍ର ଆଦି ତା ଆଡ଼କୁ ଫୋପାଡ଼ିବା ଦରକାର । ହାତୀ କିଛି ସମୟ ପାଇଁ ସେଥିରେ ମଜିଯିବ । ଆଉ ଏହି ସମୟରେ ସୁରକ୍ଷିତ ସ୍ଥାନକୁ ଯିବାପାଇଁ ସୁଯୋଗ ମିଳିଯାଇ ପାରିବ ।

(୫) ହାତୀ ଆସିଲେ ନିକଟସ୍ଥ ବନକର୍ମଚାରୀଙ୍କୁ ଯଥାଶୀଘ୍ର ସୂଚନା ଦେବା ଉଚିତ୍ ।

(୬) ହାତୀ ତା'ର କାନ ଠିଆକରିବା ଓ ଶୁଣ୍ଢ ଉଠାଇ ଶବ୍ଦ କରିବା ଅର୍ଥ ସେ ଆପଣଙ୍କ ବା ନିକଟସ୍ଥ ମନୁଷ୍ୟ ଉପରକୁ ଆକ୍ରମଣ କରିବା ପାଇଁ ପ୍ରୟାସ କରୁଛି । ଏହି ସମୟରେ ଯଥାଶୀଘ୍ର ସୁରକ୍ଷିତ ସ୍ଥାନକୁ ଚାଲିଯିବା ଉଚିତ୍ ।

(୭) ହାତୀ ଆସିଲେ ତାକୁ ବିରକ୍ତ କରିବା ବା ଉତ୍ୟକ୍ତ କରିବା ବା ଚିଡ଼େଇବା ଅନୁଚିତ୍ । ବିଶେଷକରି ପଥର, ତୀର କିମ୍ବା ଜଳୁଥିବା ଟାୟାର ଟ୍ୟୁବ୍ ନିଆଁ ଆଦି ତା ଉପରକୁ ଫୋପାଡ଼ିବା ଠିକ୍ ନୁହେଁ । ଏଥିରେ ହାତୀ ଆହତ ହେଲେ ସେ ଉଗ୍ରରୂପ ଧାରଣ କରି ବହୁ ପରିମାଣର କ୍ଷୟକ୍ଷତି ଘଟାଇପାରେ ।

(୮) ହାତୀ ଯେଉଁ ଜଙ୍ଗଲରେ ରହୁଛନ୍ତି, ସେହି ଜଙ୍ଗଲରୁ କାଠପତ୍ର ଆଦି ସଂଗ୍ରହ କରିବା ଆଦୌ ଠିକ୍ ନୁହେଁ । ହାତୀ ଆକ୍ରମଣର ସମ୍ଭାବନା ଅଧିକ ଥାଏ ।

(୯) ହାତୀମାନଙ୍କୁ ଶସ୍ୟ କିମ୍ବା ଅନ୍ୟାନ୍ୟ ପଦାର୍ଥ ଦେବା ଠିକ୍ ନୁହେଁ । କାରଣ ଏହା ଦ୍ୱାରା ତାଙ୍କର ଖାଦ୍ୟ ପ୍ରତି ଆଗ୍ରହ ବା ଲାଳସା ବଢ଼ିବ । ସେମାନେ ଖାଦ୍ୟ ପାଇଁ ଘରଦ୍ୱାର ଭାଙ୍ଗି ଦେଇଥାଆନ୍ତି ।

(୧୦) ହାତୀର ଚାରିପାଖରେ କୌତୁହଳବଶତଃ ଭିଡ଼ ଜମେଇବା ଅନୁଚିତ୍ । ଏମାନଙ୍କ ଚାଲିବା ଓ ଦୌଡ଼ିବାର ବେଗ ଘଣ୍ଟାପ୍ରତି ୩୦ରୁ ୪୦ କିଲୋମିଟର । ଏଣୁ ହାତୀଠାରୁ ଦୂରତା ଅନ୍ତତଃ ୩୦୦ ଗଜ ରହିବା ଉଚିତ୍ । ଛୋଟ ପିଲା, ସ୍ତ୍ରୀଲୋକ ତଥା ବୃଦ୍ଧବୃଦ୍ଧାଗଣ ହାତୀ ପାଖକୁ ଯିବା ଆଦୌ ଉଚିତ୍ ନୁହେଁ ।

(୧୧) ହାତୀକୁ ଦେଖି ପୂଜାପାଠ ଉଦ୍ଦେଶ୍ୟରେ ତା ନିକଟକୁ ଯିବା ଦରକାର ନୁହେଁ ।

## ହାତୀ ଉପଦ୍ରବର ନିରାକରଣ

ଦେଖାଯାଏ ଯେ ହାତୀ ଅନୁଶାସନକୁ ମାନି ସଦାସର୍ବଦା ପ୍ରାକୃତିକ ନିୟମକୁ ସମ୍ମାନ ଦେଖାଇ ନିଷ୍ଠାରେ ତା'ର ନିଜ କାର୍ଯ୍ୟ କରିଚାଲିଥାଏ । ମଣିଷ ଓ ହାତୀ ପରସ୍ପରକୁ ଏପରି ସହଯୋଗ ଓ ଶ୍ରଦ୍ଧା ତଥା ସମ୍ମାନ କରୁଥିବା ବେଳେ ହଠାତ୍ କାହିଁକି ହାତୀ ମଣିଷ ପ୍ରତି ଏତେ ବେଶି ବୀତସ୍ପୃହ ହୋଇ ଉଠିଲା ? ପର୍ଯ୍ୟବେକ୍ଷଣ ତଥା ଅନୁସନ୍ଧାନରୁ ଜଣାଯାଏ ଯେ ହାତୀ ଜୀବନରେ ଅଶାନ୍ତି ଅଥବା ଅସନ୍ତୁଳନ ନିମିତ୍ତ ତିନୋଟି ମୁଖ୍ୟ କାରଣ ହେଉଛି (୧) ଉପଯୁକ୍ତ ପରିମାଣର (୨୦୦ରୁ ୨୫୦ କି.ଗ୍ରା. ଓଜନର ଡାଳପତ୍ର ଓ ଶୁଷ୍କ ଘାସ ବା ୧୫୦ କି.ଗ୍ରା. ଓଜନର ଆର୍ଦ୍ର ଖାଦ୍ୟ ସହ ୧୦୦ ଲିଟର ପାଣି) ଖାଦ୍ୟପାନୀୟର ସ୍ୱଳ୍ପତା ବା ଅଭାବ, (୨) ମୁକ୍ତ ବିଚରଣର ବାଧା (ପ୍ରତିଦିନ ପ୍ରାୟ ୧୦ କି.ମି. ଅଞ୍ଚଳ ବିଚରଣ କରିଥାଏ) ଓ (୩) ସ୍ୱଚ୍ଛନ୍ଦରେ ଠିକ୍ ସମୟରେ ମିଳନ । ମୋଟାମୋଟି ନିମ୍ନ ପ୍ରସ୍ତାବମାନ ସରକାର କାର୍ଯ୍ୟକାରୀ

କରିପାରିଲେ ସହଜରେ ଫସଲ ସୁରକ୍ଷା, ହାତୀ ରକ୍ଷା ଓ ଚାଷୀମାନଙ୍କର ଫସଲ ସହ ଜୀବନ ଏବଂ ତାଙ୍କର ଘରଦ୍ୱାର ସୁରକ୍ଷିତ ହୋଇପାରିବ ।

(୧) ହାତୀ ଆବାସସ୍ଥଳୀ ତଥା ସାଧାରଣ ଜଙ୍ଗଲର କାଠ ମାଫିଆମାନଙ୍କୁ ଜାତୀୟ ନିରାପତ୍ତା ଆଇନ୍ ଅନୁଯାୟୀ ଦଣ୍ଡବିଧାନ ବିଧେୟ । ଜଣାଯାଏ ଯେ ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ୩୦.୧୧.୨୦୦୪ ରାଜ୍ୟ ବନ୍ୟପ୍ରାଣୀ ବୋର୍ଡ଼ (State Board for Wildlife) ବୈଠକରେ ଉକ୍ତ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ଏହାକୁ ସୁଦୃଢ଼ କରିବା ବାଞ୍ଛନୀୟ ।

(୨) ଜଙ୍ଗଲ ଆଇନ୍ ବା ସୁରକ୍ଷା ଭଂଗା ବା ଅମାନ୍ୟ ଦର୍ଶାଇବା ପୁରସ୍କାର ନିୟମ (Orissa Reward for Detection of Forest Offence Rule, 2004) ଅନୁସାରେ ଚୋରାକାଠ ଚାଲାଣକାରୀଙ୍କ ସମ୍ପର୍କରେ ଖବର ଦେଉଥିବା ବ୍ୟକ୍ତିକୁ ସ୍ୱଳ୍ପ ପୁରସ୍କାର (ଚୋରାକାଠ ମୂଲ୍ୟର ୧୨ ଶତକଡ଼ା) ଥିବାରୁ ଉକ୍ତ ଆଇନ୍ ବିଶେଷ ଫଳପ୍ରଦ ହେଉନଥିବା ମନେହୁଏ । ଏହାକୁ ସଂଶୋଧନ କରାଯାଇ ଚୋରାକାଠର ଅଧିକ ଶତକଡ଼ା ଖବରଦାତା ଓ ଆଉ କିଛି ଶତକଡ଼ା ଧରିବାକୁ ପାଉଥିବା ବନ କର୍ମଚାରୀଙ୍କୁ ପୁରସ୍କାର ଆକାରରେ ଦିଆଗଲେ ଉଦ୍ଦେଶ୍ୟ ସାଧିତ ହୋଇପାରିବ ବୋଲି ବିଶ୍ୱାସ କରାଯାଏ ।

(୩) ଜଙ୍ଗଲ ମାଫିଆମାନଙ୍କ ସହ ସମ୍ପର୍କ ରଖି ସେମାନଙ୍କଠାରୁ ଅର୍ଥ ସଂଗ୍ରହ କରୁଥିବା ଅଧିକାରୀ ଓ କର୍ମଚାରୀଙ୍କୁ ବେଆଇନ୍ ଗଛକଟା ପ୍ରମାଣ ହେଲେ ବାଧ୍ୟତାମୂଳକ ଅବସର ଦିଆଯାଉ । ନିଷ୍ଠାପର ଓ କର୍ତ୍ତବ୍ୟପରାୟଣ କର୍ମଚାରୀମାନଙ୍କୁ ଉପଯୁକ୍ତ ସମୟରେ ପଦୋନ୍ନତି, ଆର୍ଥିକ ପୁରସ୍କାର ତଥା ପ୍ରଶଂସାପତ୍ର ଦିଆଯାଇ ସର୍ବ ସାଧାରଣ ଓ କର୍ମଚାରୀମାନଙ୍କ ସମ୍ମୁଖରେ ସମ୍ମାନିତ କରାଯାଉ ।

(୪) ସମସ୍ତ ଖାଲି ଥିବା ବନ କର୍ମଚାରୀ ପଦବୀଗୁଡ଼ିକ ଓ ଗ୍ରାମ୍ୟ ଜଙ୍ଗଲ ସୁରକ୍ଷା ଦେଇଥିବା ନିଷ୍ଠାବାନ୍ କର୍ମଚାରୀମାନଙ୍କୁ ନିଯୁକ୍ତି ପ୍ରଦାନ କରାଯାଉ ।

(୫) ସମସ୍ତ ବନ ଅଧିକାରୀ ଓ କର୍ମଚାରୀମାନଙ୍କୁ ପୋଲିସ୍ କ୍ଷମତା ସହ ବନ୍ଧୁକ ପରି ଅସ୍ତ୍ର ସୁରକ୍ଷା ନିମିତ୍ତ ଯୋଗାଇ ଦିଆଯାଉ । ଏହା ମନୋବଳ ବଢ଼ାଇବାରେ ସହାୟକ ହେବ ।

(୬) ହାତୀମାନଙ୍କ ଦ୍ୱାରା କ୍ଷତିଗ୍ରସ୍ତ ହେବାକୁ ଅନୁମାନ କରାଯାଉଥିବା ଗ୍ରାମଗୁଡ଼ିକୁ ତାଲିକାଭୁକ୍ତ କରି ଖାତଖୋଳା (Trench) ସହ ସୌର ବିଦ୍ୟୁତ୍‌କରଣ କରାଯାଉ ।

(୭) ହାତୀମାନଙ୍କ ଦ୍ୱାରା କ୍ଷତି ହେଉଥିବା ଫସଲ କ୍ଷତି ଅନୁଯାୟୀ ଠିକ୍ ମୂଲ୍ୟାୟନ କରାଯାଇ କ୍ଷତିପୂରଣ ଦିଆଯିବାର ବ୍ୟବସ୍ଥା ହେଉ । ଅବଶ୍ୟ ବର୍ତ୍ତମାନ ହାତୀ ଆକ୍ରମଣର ମୃତ୍ୟୁ ହେଲେ ମୃତକଙ୍କ ପରିବାରକୁ ସରକାର ଏକଲକ୍ଷ ଟଙ୍କା ସହାୟତା ପ୍ରଦାନ କରୁଥିବା ବେଳେ ଫସଲ ହାନି ହେଲେ ଏକର ପ୍ରତି ଏକହଜାର ଟଙ୍କା ଏବଂ ଆଂଶିକ ଭାଙ୍ଗିଲେ (ଘର ଭାଙ୍ଗିଲେ) ଦୁଇହଜାର ଟଙ୍କା ଓ ସମ୍ପୂର୍ଣ୍ଣ ଘର ଭାଙ୍ଗିଲେ ମାତ୍ର ୩୫୦୦ ଟଙ୍କା ଯୋଗାଇ ଦେଉଛନ୍ତି । ତେବେ ଏ କ୍ଷେତ୍ରରେ ଥାନାର ରିପୋର୍ଟ ଶବ ବ୍ୟବଚ୍ଛେଦ ରିପୋର୍ଟ ପ୍ରଦାନର ବିଧି ଥିବାରୁ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଏହା ସବୁ ସମୟରେ ସମ୍ଭବ ହେଉ ନାହିଁ । ଫଳରେ ସହାୟତା କେଉଁ ଠାରେ ମିଳେ ନାହିଁ ତ କେଉଠି ମିଳିଲେ ବର୍ଷାଧିକ ସମୟ ଲାଗିଯାଏ ।

(୮) ପ୍ରତି ଡି.ଏଫ୍. ଓ. (D.F.O.)ଙ୍କ ଅଧୀନରେ ଥିବା ବନାଞ୍ଚଳ ମଧ୍ୟରେ ବାର୍ଷିକ ଏକହଜାର ଏକର ଜମିରେ ହାତୀମାନଙ୍କ ଖାଦ୍ୟ ପାଇଁ ବାଉଁଶ ଓ ବାଉଁଶ ଜାତୀୟ ବୃକ୍ଷରୋପଣ କରାଯାଉ । ସରକାରୀ କର୍ମଚାରୀ ତଥା ଘରୋଇ ସଂସ୍ଥା (N.G.O.) ମାନଙ୍କ ଜରିଆରେ ବୃକ୍ଷରୋପଣ ଏକ ନିର୍ଦ୍ଦିଷ୍ଟ ନୀତି ମଧ୍ୟରେ କରାଯାଉ ।

(୯) ପ୍ରତ୍ୟେକ ଡି.ଏଫ୍.ଓ. ଙ୍କ ଅଧୀନରେ ହାତୀ ଓ ବନ୍ୟଜନ୍ତୁ ସୁରକ୍ଷା ପାଇଁ ସ୍ୱତନ୍ତ୍ର ଭ୍ରାମ୍ୟମାଣ ଦଳ (Mobile squad) ଗଠନ କରାଯାଉ । ହାତୀ ତଥା ସୁରକ୍ଷିତ ବନ୍ୟପ୍ରାଣୀଙ୍କୁ ହତ୍ୟା ଓ ଶିକାର କରିବା ଉଦ୍ଦେଶ୍ୟରେ ଜଙ୍ଗଲରେ ଅସ୍ତ୍ର ଧରି ପ୍ରବେଶ କରିବା ସମୟରେ କିମ୍ବା ବନ୍ୟପ୍ରାଣୀ ହତ୍ୟା କରିବା ଶିକାରୀଙ୍କ ସମ୍ପର୍କରେ ଖବର ଦେବା ବ୍ୟକ୍ତିକୁ ନାମ ଗୁପ୍ତ ରଖି କିଛି ପ୍ରୋତ୍ସାହନ ବା ପୁରସ୍କାର ଦେବାର ବ୍ୟବସ୍ଥା ହେଉ ।

(୧୦) ମୂଲ୍ୟବାନ ଶାଳ, ପିଆଶାଳ ଓ ଶାଗୁଆନ ଆଦି କାଠ ଉପକରଣ ବା ଆସବାବପତ୍ର ବ୍ୟବହାର ଉଦ୍ଦେଶ୍ୟରେ ବୃକ୍ଷ ବେଶି ପରିମାଣରେ ନଷ୍ଟ ହେଉଛି । ଏପରି କାଠ ଉପକରଣ ବ୍ୟବହାର ଓ ପ୍ରସ୍ତୁତି ନିଷେଧ ପାଇଁ ଖୁବ୍

କଠୋର ଦଣ୍ଡ, ଅର୍ଥଦଣ୍ଡ ବା ଉଭୟର ଆଇନ୍ ପ୍ରଣୟନ କରାଯାଉ । ଆଇନ୍ ଉଲ୍ଲଙ୍ଘନକାରୀଙ୍କ ଠାରୁ ଆଦାୟ ଅର୍ଥର ଅର୍ଦ୍ଧେକ ଖବରଦାତାଙ୍କୁ ନାମ ଗୁପ୍ତ ରଖି ଓ ଧରିବାକୁ ଯାଇଥିବା ବା ସହାୟତା କରିଥିବା କର୍ମଚାରୀଙ୍କୁ ପୁରସ୍କାର ଆକାରରେ ପ୍ରଦାନ କରଯାଉ । ଖୁସିର କଥା ଯେ ଘରମାନଙ୍କରେ ଅଣକାଠ ଉପକରଣ ବ୍ୟବହାରକୁ ଉତ୍ସାହିତ କରିବା ଲାଗି ଓଡ଼ିଶା ବନ ବିଭାଗ ଦୃଷ୍ଟି (Orissa Forest Sector Vision, 2020)ରେ ବ୍ୟବସ୍ଥା କରାଯାଇଛି ।

(୧୧) ବେସରକାରୀ ବା ଘରୋଇ ଜମିରେ ଜଙ୍ଗଲ ସୃଷ୍ଟିକୁ ତ୍ୱରାନ୍ୱିତ ଓ ଉତ୍ସାହିତ କରିବା ଲାଗି ବାଣିଜ୍ୟିକ ଉଦ୍ଦେଶ୍ୟରେ ସ୍ୱତନ୍ତ୍ର ପ୍ରକାର ବୃକ୍ଷରୋପଣ (Afforestation) ନୀତି ପ୍ରଣୟନ କରାଯାଉ । ଏପରିକି ସରକାରୀ ଜମିରେ ଆବଶ୍ୟକ ବୃକ୍ଷରୋପଣ କରାଯିବାର ବ୍ୟବସ୍ଥା ହେଉ । ବେସରକାରୀ ବ୍ୟକ୍ତି ବା ସରକାରୀ କର୍ମଚାରୀ ଘରୋଇଭାବେ ବୃକ୍ଷରୋପଣ କରି ଫଳପ୍ରଦ ହେଲେ ପ୍ରୋତ୍ସାହନର ବ୍ୟବସ୍ଥା ହେଉ ।

(୧୨) ଘରୋଇ ଜମିରେ ବୃକ୍ଷ କଟାଯିବା ଓ ପରିବହନ ପାଇଁ ଅନୁମତି ଦିଗରେ କୋହଳ କରାଯାଉ ବା ଉଠାଇ ଦିଆଯାଉ । ଏଥିପାଇଁ ଏକ ପରିଚୟପତ୍ର ପ୍ରଚଳନ କରାଯାଉ ।

(୧୩) ବିଦେଶରେ ହାତୀମାନଙ୍କ ଶରୀରରେ ମାଇକ୍ରୋଚିପ୍ (Microchip) ଲଗାଯାଇ ଯେପରି ବିଭାଗୀୟ କର୍ମକର୍ତ୍ତାଗଣ ସେମାନଙ୍କ ଗତିପଥ ତଥା ଅନ୍ୟାନ୍ୟ ତଥ୍ୟ ସଂଗ୍ରହ କରିପାରୁଛନ୍ତି ସେପରି ଗବେଷଣା କାର୍ଯ୍ୟ କରାଯାଉ । ଏହା କରିଡର ଓ ଆବାସସ୍ଥଳୀ ଜାଣିବାରେ ଅଧିକ ତଥ୍ୟ ସହ ଠିକ୍ ତଥ୍ୟ ପ୍ରଦାନ କରିପାରିବ ।

### ହାତୀର ଗତିପଥ :

ଭାରତରେ ୮୮ଟି ହାତୀ ବୁଲାଚଲା ପଥ (corridor) ରହିଥିବା ବେଳେ ଓଡ଼ିଶାରେ ୯ଟି ହାତୀ ପଥ ଚିହ୍ନିତ ହୋଇଥିଲା । ଓଡ଼ିଶାରେ ଏହି ହାତୀ ଚଲାବୁଲା ପଥ ବର୍ତ୍ତମାନ ଆଉ ନିର୍ଦ୍ଦିଷ୍ଟ ହୋଇ ରହିବାର ଦେଖାଯାଉ ନାହିଁ । ୮୮ଟି ପଥ ମଧ୍ୟରୁ ୩ଟି ପଶ୍ଚିମବଙ୍ଗ, ଝାଡ଼ଖଣ୍ଡ ଓ ଛତିଶଗଡ଼ରେ ୩ଟି ଆନ୍ତଃରାଜ୍ୟ ହାତି କରିଡର ରହିଥିବା ବେଳେ ଓଡ଼ିଶାରେ ଅଛି ୬ଟି ହାତୀ କରିଡର । ଓଡ଼ିଶାରେ ହାତୀ ମାନଙ୍କର ଆବାସସ୍ଥଳୀକୁ ସଂଯୁକ୍ତ କରିବା ପାଇଁ ପୂର୍ବରୁ ୯ଟି ପ୍ରାକୃତିକ ସଂଯୋଗ ପଥ ଚିହ୍ନଟ କରାଯାଇଥିଲା । ମାତ୍ର ସେଥି ମଧ୍ୟରୁ ଅନେକ ପଥ ଆଜି ବିଭିନ୍ନ କାରଣରୁ ଖଣ୍ଡ ବିଖଣ୍ଡିତ । କେନ୍ଦୁଝର ଜିଲ୍ଲା କାରୋ ଓ ସିଦ୍ଧମଠ ସଂରକ୍ଷିତ ଜଙ୍ଗଲକୁ ଝାଡ଼ଖଣ୍ଡ ରାଜ୍ୟର ସରଣ୍ଡା ଜଙ୍ଗଲକୁ ସଂଯୋଗ କରୁଥିବା ପ୍ରାକୃତିକ ସଂଯୋଗ ପଥ ଯୋଡ଼ା ବଡ଼ବିଲ ଆଦି ଖଣିଖାଦାନ ହେତୁ ବିଖଣ୍ଡିତ ଓ ବିପର୍ଯ୍ୟସ୍ତ । ମୟୂରଭଞ୍ଜ ଜିଲ୍ଲାର ବାଦାମ ପାହାଡ଼ ସଂରକ୍ଷିତ ଜଙ୍ଗଲ, ଝାଡ଼ଖଣ୍ଡ ରାଜ୍ୟର ଚାଇଁବାସା ଜନଖଣ୍ଡକୁ ସଂଯୋଗ କରୁଥିବା ବାଦାମ ପାହାଡ଼ ଓ ଧୋବାଧୋବିନ ସଂଯୋଗ ପଥ ଗୋରୁମହିଷାଣୀ ଏବଂ ସୁଲେଇପାଟ ଖଣି ଯୋଗୁ ବିଖଣ୍ଡିତ । ବଉଳା କ୍ରୋମାଇଟ ଖଣି ଯୋଗୁ ଶିମିଳିପାଳ, ହଦଗଡ଼, କୁଲଡିହା ମଧ୍ୟରେ କଟକ ସମ୍ବଲପୁର ରାଜ୍ୟ ରାଜପଥ ଏବଂ ରେଳଲାଇନ ପାଇଁ ସାତକୋଶିଆ, ଛେଣ୍ଡିପଦା, ପାଲଲହଡ଼ା ମଧ୍ୟରେ ଏବଂ ନରସିଂହପୁର ଢେଙ୍କାନାଳ, କପିଳାଶ ମଧ୍ୟରେ, ରେଙ୍ଗାଲି ଜଳ ଭଣ୍ଡାର ହେତୁ ଦେବଗଡ଼, କେନ୍ଦୁଝର ମଧ୍ୟରେ ପୂର୍ବରୁ ରହିଥବା ପ୍ରାକୃତିକ ସଂଯୋଗ ପଥ ବିଚ୍ଛିନ୍ନ ହୋଇ ଯାଇଛି । ଏବେ ପୁଣି ପାଞ୍ଚଟି ନୂତନ ସଂଯୋଗ ପଥ ରାଜ୍ୟ ବନବିଭାଗ ଚିହ୍ନଟ କରିଛନ୍ତି ।

ଅତୀତରେ ଓଡ଼ିଶାରେ ମାତ୍ର ୧୭ଟି ଜିଲ୍ଲାରେ ହାତୀ ଦେଖିବାକୁ ମିଳୁଥିଲେ । ମାତ୍ର ଏବେ ସେମାନେ ଦେଖାଯାଉଛନ୍ତି ୨୬ଟି ଜିଲ୍ଲାରେ । ରାଜ୍ୟରେ ୫୦ଟି ବନ ଓ ବନ୍ୟ ପ୍ରାଣୀ ଡିଭିଜନ ମଧ୍ୟରୁ ପ୍ରାୟ ୪୪ଟିରେ ହାତୀମାନେ ସେମାନଙ୍କର ଆବାସସ୍ଥଳୀ ତଥା ଚଲାବୁଲା ଜାହିର କଲେଣି । ଲୋକମାନେ ହାତୀର ପ୍ରାକୃତିକ ପାରମ୍ପରିକ ଆବାସସ୍ଥଳୀରେ ଅନଧିକାର ପ୍ରବେଶ କରି ତାକୁ ବେଘର କରିବାରେ ଆଗେଇ ଆସିଛନ୍ତି । ଏ ଦୃଷ୍ଟିରୁ ଦେଉଳି ଓ ଶୁଳିଆପଦା ଜଙ୍ଗଲରୁ ମୟୂରଭଞ୍ଜ ବାଲେଶ୍ୱର ଜିଲ୍ଲା ମଧ୍ୟରେ ପଶ୍ଚିମବଙ୍ଗ ପର୍ଯ୍ୟନ୍ତ, କେନ୍ଦୁଝର ଜିଲ୍ଲାର ତେଲକୋଇଠାରୁ ଅନୁଗୋଳ ଜିଲ୍ଲାର ପାଲଲହଡ଼ା ପର୍ଯ୍ୟନ୍ତ, ଢେଙ୍କାନାଳ ଜିଲ୍ଲାର ମଉଳାଭଞ୍ଜ, ଜିରାଡ଼ିମାଳ ଠାରୁ ଅନନ୍ତପୁର ପର୍ଯ୍ୟନ୍ତ ସଂଯୋଗ ପଥକୁ ପୁନରୁଦ୍ଧାର ତଥା ପୁନର୍ଜୀବିତ କରାଇବା ଜରୁରୀ ମନେହୁଏ । ପ୍ରାକୃତିକ ସାଧାରଣ ଯାତାୟତ ପଥ ବିଖଣ୍ଡିତ, ଅବରୋଧ ତଥା ଅନ୍ୟାନ୍ୟ ମଣିଷକୃତ କାର୍ଯ୍ୟକଳାପ ଯୋଗୁ ହାତୀ ବନାମ ମଣିଷ ମୁହାଁମୁହିଁ ବା ସଂଘର୍ଷର ସୂତ୍ରପାତ

ଦେଖାଦେଇଛି । ଆଉ ତାହାର ମାତ୍ରା ବୃଦ୍ଧିପାଇବା ସହ ଲଢ଼େଇରେ ହାତୀର ଜୟ ଓ ମଣିଷର ମୃତ୍ୟୁ ସଂଖ୍ୟା ବୃଦ୍ଧି ପାଇବା ସାର ହୋଇଛି ।

## ଜାତୀୟ ଐତିହ୍ୟ ପ୍ରାଣୀ ଭାବରେ ହାତୀ :

ହାତୀ ଓ ମଣିଷ ଏପରି ଭାବରେ ମୁହାଁମୁହିଁ ହୋଇଛନ୍ତି ଯେ ହାତୀର ଜୀବନ ବର୍ତ୍ତମାନ ବିପନ୍ନ । ବନ୍ୟପ୍ରାଣୀ ଆଇନରେ ହାତୀକୁ ପ୍ରଥମ ଅନୁସୂଚୀଭୁକ୍ତ ଅର୍ଥାତ୍ ବିପଦଗ୍ରସ୍ତ ବୋଲି ଚିହ୍ନଟ କରାଯାଇ ବିବରଣୀଭୁକ୍ତ କରାଯାଇଛି । ହାତୀ ଶିକାର କରିବାଠାରୁ ଆରମ୍ଭ କରି ହାତୀଦାନ୍ତ ପ୍ରସ୍ତୁତ ପଦାର୍ଥ ବିନାନୁମତିରେ ରଖିବା ବା ଦେବା ଧର୍ତ୍ତବ୍ୟ ଅପରାଧ । ହାତୀ ପରି ଏତେ ନମ୍ର, ଧୀରସ୍ଥିର ବିଶାଳ ବପୁଧାରୀ ପ୍ରାଣୀଙ୍କୁ କେବଳ ଆଇନ୍‌କାନୁନ୍ ମଧ୍ୟରେ ନିୟନ୍ତ୍ରଣ କରି ସୁରକ୍ଷା ବା ସଂରକ୍ଷଣ କରିବା ଯଥେଷ୍ଟ ନୁହେଁ । ଜନସାଧାରଣଙ୍କ ହାତୀ ପ୍ରତି ଶ୍ରଦ୍ଧା, ସ୍ନେହ ଓ ପ୍ରକୃତିର ଏକ ଅତି ଭଲ ପ୍ରାଣୀ ଭାବରେ ଆଦର କରିପାରିଲେ ସେ ନିଶ୍ଚୟ ରକ୍ଷାପାଇପାରିବ । ହାତୀ–ମଣିଷର ସଂଘର୍ଷ ଅନ୍ତ କେବେ ତାହା ଏବେ ପ୍ରଶ୍ନବାଚୀ ସୃଷ୍ଟି କରିଛି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଉଛି ୨୦୧୦ ମସିହା ଅକ୍ଟୋବର ମାସ ୨୨ ତାରିଖରେ ଭାରତ ସରକାର ହାତୀକୁ ଜାତୀୟ ଐତିହ୍ୟ ପ୍ରାଣୀ (National Heritage Animal) ଭାବରେ ଘୋଷଣା କରିଛନ୍ତି । ତଥାପି ତା ପରେ ପରେ ଏହା ମଧ୍ୟରେ ଅନେକ ଅକାଳରେ ଅଯଥାରେ ସେମାନଙ୍କର ଭୁଲ ନ ଥାଇ ମୃତ୍ୟୁମୁଖରେ ପଡ଼ିଛନ୍ତି ଓ ପଡୁଛନ୍ତି ମଧ୍ୟ । ଆମର ଐତିହ୍ୟ ଓ ପରମ୍ପରା ସହିତ ହାତୀମାନେ ଓତପ୍ରୋତ ଭାବରେ ସଂଶ୍ଳିଷ୍ଟ ଥିଲେ ବୋଲି ଚେତାଇ ଦେବା ସହ ହାତୀ ଦ୍ୱାରା କ୍ଷତିଗ୍ରସ୍ତ ଓ ଆତଙ୍କିତ ଲୋକମାନଙ୍କ ମଧ୍ୟରେ ଥିବା ବିରୋଧାଭାବକୁ ପ୍ରଶମିତ କରିବା ଲକ୍ଷ୍ୟରେ ଭାରତ ସରକାର ଜାତୀୟ ଐତିହ୍ୟ ପ୍ରାଣୀର ମାନ୍ୟତା ପ୍ରଦାନ କରିଛନ୍ତି । ଏହାର ଉଦ୍ଦେଶ୍ୟ ଓ ଆଭିମୁଖ୍ୟ ହେଉଛି ଜାତୀୟ ପ୍ରାଣୀଙ୍କ ପରି ଏ ପ୍ରାଣୀକୁ ସୁରକ୍ଷା ଦେବା ସହ ସଂରକ୍ଷଣ ଦିଗରେ ସଚେତନ କରିବା । ସୁରକ୍ଷା ଦିଗରେ ଅବଦାନ ସମ୍ପର୍କରେ ସଚେତନ ନ ହେଲେ ହାତୀ–ମଣିଷ ଲଢ଼େଇରେ ହୁଏତ ମଣିଷ ସହ ସମକକ୍ଷ ନ ହୋଇ ହାତୀ କ୍ରମେ ନିଃଶେଷ ହୋଇଯିବ । ଲଢ଼େଇରେ ମୃତ୍ୟୁ ତଥା ଅବିରତ ଶିକାର ହିଁ ଏ ଜୀବକୁ ବିଲୁପ୍ତି ଆଡ଼କୁ ଠେଲି ନେବ । ବିଲୁପ୍ତି ଆଡ଼କୁ ମୁହାଁଇଥିବା ଏହି ପ୍ରାଣୀର ସୁରକ୍ଷା ସମ୍ପର୍କରେ ଚିନ୍ତା ନ କଲେ ବା ସରକାର ଜଂଗଲ ସଂପ୍ରସାରଣ ଓ ଅଧିକ ସଂଖ୍ୟାରେ ଅଭୟାରଣ୍ୟ ପ୍ରତିଷ୍ଠା ଉପରେ ଧ୍ୟାନ ନ ଦେଲେ ଦିନେ ହୁଏତ ପିଲାଙ୍କୁ ଛବି ଦେଖାଇ କହିବାକୁ ପଡ଼ିବ ହାତୀ ନାଁରେ ଏଭଳି ଏକ ଜୀବ ଥିଲା, ଠିକ୍ ଯେପରି ଡାଇନୋସର ଛବି କାହାଣୀ ପଢୁଛନ୍ତି ଶୁଣୁଛନ୍ତି ଓ ଦେଖୁଛନ୍ତି ।

ସତରେ ହାତୀ ଏକ ସଂବେଦନଶୀଳ ବିଷୟ ଓ ଘଟଣା । ଏହି ବିତର୍କ ଓ ବିସ୍ମୟକର ବିଷୟକୁ ଗୁରୁତ୍ୱର ସହିତ ବିଚାର କରି ପଶୁପ୍ରେମୀ, ସ୍ୱେଚ୍ଛାସେବୀ ଓ ନ୍ୟାୟବାଦୀ ନିରପେକ୍ଷ ମଣିଷମାନେ ସହଯୋଗ ଦେଇ ଆନ୍ଦୋଳନକୁ ସଫଳ କଲେ ହାତୀମାନେ ପ୍ରକୃତି କ୍ରୋଡ଼କୁ ଫେରିଯିବେ । ଆଉ ପ୍ରକୃତିର ପ୍ରାକୃତିକ ପରିବେଶକୁ ଚାଲିଯିବା ପାଇଁ ଓଡ଼ିଶା ରାଜ୍ୟ ସରକାର ହାତୀ ଯାତାୟାତ ପଥ ବା କରିଡରର ବିକାଶ ଉପରେ ବର୍ତ୍ତମାନ ଗୁରୁତ୍ୱାରୋପ କରିଛନ୍ତି । କରିଡର ପୁନରୁଦ୍ଧାର ପାଇଁ ଏକ ସ୍ୱତନ୍ତ୍ର ପାଣ୍ଠି ଗଠନ ଉପରେ ପରାମର୍ଶ ପ୍ରଦାନ କରିଛନ୍ତି । ଆଶା ବିଲୋପ ବା ବିଲୁପ୍ତି ପୂର୍ବରୁ ଐତିହ୍ୟ ପ୍ରାଣୀ ହାତୀ ସତରେ ଇତିହାସ ସୃଷ୍ଟି କରି ଆମ ପରିବେଶରେ ରହିପାରିବ, ସୁରକ୍ଷିତ ହୋଇପାରିବ ଓ ଗଜରାଜ ସ୍ଥାନ ଅଳଙ୍କୃତ କରିପାରିବ ।



ସ୍ନାତକୋତ୍ତର ପ୍ରାଣୀ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀ ବିହାର, ଭୁବନେଶ୍ୱର

# ଉତ୍କଳରେ ଭୌମକର ରାଜତ୍ୱରେ ନିର୍ମିତ ଶୈବଶାକ୍ତ ପୀଠ

ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ

ପ୍ରବୀଣ ଐତିହାସିକ ସ୍ୱର୍ଗତ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ରଚିତ (Chronology of the Bhoumakaras and the Somavansis of Orissa) ପ୍ରବନ୍ଧ ଅନୁସାରେ ଭୌମକର ବଂଶର ରାଜତ୍ୱ କାଳ ହେଲା ଖ୍ରୀ.୭୩୬ରୁ ୧୯୫ ବର୍ଷ ଅର୍ଥାତ୍ ଖ୍ରୀ. ୯୩୧ ପର୍ଯ୍ୟନ୍ତ (Bhouma introduced their Era being 736 A.D.-OHRJ, Vol.-1, P.-204)

ଏହି ସମୟ ମଧ୍ୟରେ ଭୌମକର ବଂଶର ୧୮ ଜଣ ରାଜାରାଣୀ ପ୍ରାଚୀନ ଓଡ଼ିଶାର ଉଡ୍ର, ଉତ୍କଳ, ତୋଷଳ, (ଉତ୍ତର-ଦକ୍ଷିଣ) କଂଗୋଦ ଅଞ୍ଚଳ ଜୟ କରି ସିଂହାସନାରୂଢ଼ ହେବା ସହିତ ବହୁ ମନ୍ଦିର-ମୂର୍ତ୍ତି ପ୍ରତିଷ୍ଠା କରି ଏବଂ ତାହାର ପରିପୋଷଣ ଓ ପୃଷ୍ଠପୋଷକତା କରି ଯଶ ଅର୍ଜନ କରିଥିଲେ । ଇତିହାସରୁ ଜଣାଯାଏ ଯେ ଭୌମମାନେ ପ୍ରଥମେ ବୌଦ୍ଧ ଏବଂ ପରବର୍ତ୍ତୀ କାଳରେ ଶୈବ-ଶାକ୍ତ -ବୈଷ୍ଣବ ଧର୍ମର ମଧ୍ୟ ପୃଷ୍ଠପୋଷକତା କରି କୀର୍ତ୍ତି ରଖି ଯାଇଅଛନ୍ତି । ସେମାନେ ବ୍ରାହ୍ମଣ, ଶ୍ରମଣ, ପଣ୍ଡିତ, ପୂଜକ, ସାଧକ ତଥା ମଠ ମନ୍ଦିର ବୌଦ୍ଧବିହାରକୁ ଭୂମି ଦାନ କରିବାର କୀର୍ତ୍ତିବତ୍ତା ସେମାନଙ୍କ ଦାନଫଳକରୁ ପ୍ରମାଣିତ ହୁଏ । ଭୌମରାଣୀମାନଙ୍କର ମଧ୍ୟ ଉଦାରତା ଓ ଦାନଶୀଳତାର ପଟାନ୍ତର ନ ଥିଲା ।

ଭୌମ ରାଜତ୍ୱରେ କ୍ରମାନ୍ୱୟରେ ଶାସନଭାର ଗ୍ରହଣ କରିଥିବା ଅଠର ଜଣ ରାଜପୁରୁଷ-ପଟ୍ଟମହିଷୀ ମଧ୍ୟରୁ ଛ ଜଣ କେବଳ ଥିଲେ ରାଜବଂଶୀୟ । ରମଣୀ, ଯେଉଁମାନେ ସିଂହାସନାରୂଢ଼ା ହେବା ପରେ ନିଜର ଶାସନଗତ ଦକ୍ଷତାର ପ୍ରମାଣ ଦେଇଥିଲେ । ସେମାନେ ଅଷ୍ଟାଦଶ ମଣ୍ଡଳାଧୀଶ ଭାବରେ ପରିଚିତ ଥିଲେ । ଇତିହାସବେତ୍ତାଙ୍କ ମତରେ ଭୌମମାନେ ଆସାମର ଦୁର୍ଗୀ ପାର୍ବତ୍ୟ ଅଞ୍ଚଳର ଆର୍ଯେତର ଜାତି ଥିଲେ । ମାତ୍ର ପରବର୍ତ୍ତୀ କାଳରେ ସେମାନେ ସଂଗ୍ରାମ କରି ଦିଗବିଜୟରେ ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ସମୟକ୍ରମେ ନାଗ, ଗଙ୍ଗ, ସୋମବଂଶରୁ କନ୍ୟାଗ୍ରହଣ କରି ତଥା ଦିଗବିଜୟରୁ ସଂଗୃହୀତ ଧନକୁ ମଠ, ମନ୍ଦିର, ବିହାର ନିର୍ମାଣ, ବ୍ରାହ୍ମଣ ଶ୍ରମଣମାନଙ୍କୁ ଭୂମିଦାନ କରି ନିଜକୁ ସମୁନ୍ନତ ଶାସକଗୋଷ୍ଠୀ ଭାବରେ ନିଜକୁ ପ୍ରତିଷ୍ଠିତ କଲେ ।

ନେପାଳସ୍ଥିତ ପଶୁପତି ମନ୍ଦିରର ଏକ ଶିଳାଲେଖରୁ ଜଣାଯାଏ ଯେ, ନେପାଳର ରାଜା ଜୟଦେବ (ଖ୍ରୀ.୭୧୪-୭୫୨)ଙ୍କ ପଟ୍ଟମହିଷୀ ରାଜମତୀ ଥିଲେ ସମକାଳୀନ ଆସାମର ରାଜା ହର୍ଷଦେବଙ୍କର କନ୍ୟା । ରାଜମତୀ ନିଜକୁ ଭଗଦତ୍ତ ରାଜକୁଳଜା, ଭାବରେ ସର୍ବଦା ଅଭିହିତ କରୁଥିଲେ । ସେହିପରି ଭୌମକର ଶାସକମାନେ ମଧ୍ୟ ନିଜକୁ 'ଭଗଦତ୍ତକୁଳ ସମ୍ଭବ' ବୋଲି ଦାବି କରନ୍ତି । ହର୍ଷଦେବ ଗୌଡ଼, ଉଡ୍ର, କଳିଙ୍ଗ ବିଜୟ କରିବା ଫଳରେ ଓଡ଼ିଶାରେ ଭୌମରାଜତ୍ୱ ଖ୍ରୀ.୭୩୬ରୁ ଆରମ୍ଭ ହେଲା । ଉଲ୍ଲେଖଯୋଗ୍ୟ ଯେ ଏହି ଭୌମକର ବଂଶର ପ୍ରଥମ ତିନିଜଣ ନରପତି ଥିଲେ, ବୌଦ୍ଧଧର୍ମାବଲମ୍ବୀ । ସେମାନେ ନିଜକୁ (୧) ପରମୋପାସକ, (୨) ପରମ ତଥାଗତ, (୩) ପରମସୌଗତ ଭାବରେ ଅଭିହିତ କରିଥିଲେ । ପରବର୍ତ୍ତୀ କାଳରେ ସେମାନେ ଶୈବ ଓ ବୈଷ୍ଣବ ଧର୍ମର ପୃଷ୍ଠପୋଷକତା କରିଥିଲେ ।

ତିବ୍ବତୀୟ ପରଂପରା ଅନୁସାରେ ଲୁଇପା (ମତ୍ସେନ୍ଦ୍ରନାଥ) ଜଣେ ଭୌମରାଜାଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରିଥିଲେ । ତେବେ ଆସାମର (କାମରୂପ) କାମାକ୍ଷୀପୀଠ ଏବଂ ଉଡୀୟାନ (ଉଡ୍ରାଖ୍ୟଂ ପ୍ରଥମଂ ପୀଠଂ) ବା ଉଡ୍ରଦେଶର ଉଡ୍ରପୀଠ, ତାନ୍ତ୍ରିକ ବୌଦ୍ଧ ଧର୍ମର ପ୍ରସିଦ୍ଧ ପୀଠ ହୋଇ ସାରିଥିଲା । ଏଣୁ ଆସାମ ଓ ଓଡ଼ିଶା ମଧ୍ୟରେ ଧର୍ମ କ୍ଷେତ୍ରରେ ସଂପର୍କ ଏହି ସମୟରୁ ସ୍ଥାପିତ ହୋଇଥିଲା । ଏହାର ୭୦୦ ବର୍ଷ ପରେ ଆସାମରୁ ଶ୍ରୀଶଙ୍କର ଦେବ, ଶ୍ରୀକ୍ଷେତ୍ର ଆସି ବୈଷ୍ଣବ ଧର୍ମର ବାର୍ତ୍ତାକୁ ନିଜ ରାଜ୍ୟରେ ପ୍ରଚାର କରି ଓଡ଼ିଶାର ପୁରପଲ୍ଲୀରେ 'ଭାଗବତ ଘର' ପରି ଆସାମରେ 'ନାମଘର' ପ୍ରତିଷ୍ଠା କରିଥିଲେ ।

**(୨) ରାଜଧାନୀ ଗୁହଶିବପାଟକ** - ହର୍ଷଦେବଙ୍କ ଦ୍ୱାରା ନିଯୁକ୍ତ କ୍ଷେମଙ୍କର ଦେବ ଥିଲେ ଓଡ଼ିଶାର ଭୌମକର ବଂଶ ଶାସନର ପ୍ରଥମ ନୃପତି । ତାଂକର ରାଜଧାନୀ ଥିଲା ଅବିଭକ୍ତ କଟକ ଜିଲ୍ଲାର ଯାଜପୁର ସବ୍‌ଡିଭିଜନ୍‌ର ଗୁହଶିବପାଟକ ବା ଗୁହେଶ୍ୱରପାଟକ । ଏହା ଯାଜପୁର ଟାଉନ୍ ଠାରୁ ପାଞ୍ଚକିଲୋମିଟର ଦୂରରେ ଅବସ୍ଥିତ ଗୋହିରା ଟିକିରା କୁ ଚିହ୍ନଟ କରାଯାଇଛି । ସନ୍ନିକଟସ୍ଥ ବୌଦ୍ଧ କୀର୍ତ୍ତି ସମାକୁଳ ଖଡ଼ିପଦା ଅଞ୍ଚଳରୁ ଭୂତତ୍ତ୍ୱ ଖନନରୁ ପ୍ରାପ୍ତ ବୌଦ୍ଧ ଅବଲୋକିତେଶ୍ୱର ମୂର୍ତ୍ତିରେ ଭୌମରାଜ ଶୁଭକର ଦେବ ୧ମ ଏବଂ ରାହୁଳଭଦ୍ର (ରାଉଳଗୁଚିନା-ସରହପା) ନାମ ଖୋଦିତ ହୋଇଛି । ଏଣୁ ଭୌମରାଜାରାଣୀମାନେ, ଗୁହଶିବ ପାଟକରେ ନିଜର ରାଜଧାନୀ ସ୍ଥାପନ କରି ଉତ୍କଳ ତୋଷଳକୁ ଶାସନ କରୁଥିଲେ । ମହାଭାରତ ଏବଂ ଅନ୍ୟାନ୍ୟ ପୁରାଣରେ ବର୍ଣ୍ଣିତ ଗୁହକ ବୃତ୍ତାନ୍ତ ସହିତ ଗୁହଶିବ ପାଟକର ସାମଞ୍ଜସ୍ୟ ଅଣାଯାଇପାରେ । ଗୁହକମାନେ ଏକଦା କଳିଙ୍ଗ-ମହିଷ (ମେଦିନୀପୁର) ମହେନ୍ଦ୍ର ଅଞ୍ଚଳ ଅଧିକାର କରି ଶାସନ କରୁଥିଲେ । ଦଣ୍ଡୀ ମହାଦେବୀଙ୍କର (ଖ୍ରୀ.୯୨୬ରେ ପ୍ରଦତ୍ତ) ପତଲିଙ୍ଗ ତାମ୍ରଶାସନରେ ଗୁହଶିବପାଟକର ବର୍ଣ୍ଣନା ରହିଛି ।

ଭୌମକର ବଂଶର ରାଜାରାଣୀମାନେ ଉତ୍ତର ତୋଷାଳୀ (ଏବର ବାଲେଶ୍ୱର-ଯାଜପୁର-ମେଦିନୀପୁର (ପ.ବଙ୍ଗ), ଦକ୍ଷିଣ ତୋଷାଳୀ (ଗଞ୍ଜାମ-ପୁରୀ-ଭୁବନେଶ୍ୱର-କଟକର ଦକ୍ଷିଣାଞ୍ଚଳ)କୁ ଜୟ କରି ଶାସନ କଲେ । ଏହି ବଂଶର କ୍ଷେମଙ୍କର ଦେବଙ୍କ ପୁତ୍ର ଶିବକରଦେବ -୧ମ (ଉନ୍‌ମତ୍ତ କେଶରୀ) କଙ୍ଗୋଦ ଓ କଳିଙ୍ଗର ଉତ୍ତରାଞ୍ଚଳକୁ ଜୟ କରି ସାମ୍ରାଜ୍ୟ ବୃଦ୍ଧି କଲେ । ସେ ରାଢ଼ (ରାଧା) ଜୟ କରି ରାଜକନ୍ୟା ଜୟାବଳୀଙ୍କୁ ବଳପୂର୍ବକ ବିବାହ କଲେ ।

**(୩) ଭୌମକର ରାଜତ୍ୱର ୧୮ ଶାସକ/ଶାସିକା**

ଭାରତୀୟ ବିଦ୍ୟାଭବନ ଦ୍ୱାରା ପ୍ରକାଶିତ ପୁସ୍ତକ-(The History and Culture of Indian people, Vol.-1(v)) ଅନୁସାରେ ଭୌମକର ବଂଶର ନିମ୍ନୋକ୍ତ ରାଜପୁରୁଷ/ ରାଜମହିଷୀଗଣ କ୍ରମାନ୍ୱୟରେ ରାଜ୍ୟ ଶାସନ କରିଥିଲେ-

(୧) କ୍ଷେମଙ୍କରଦେବ (ଖ୍ରୀ.୭୩୬), (୨) ଶିବକର ଦେବ-୧ମ ବା ଉନ୍ମତ୍ତ କେଶରୀ (୭୫୬-୭୮୬), (୩) ଶୁଭକର ଦେବ (୧ମ) (୭୯୦), (୪) ଶିବକର ଦେବ (୨ୟ) (୮୦୯), (୫) ଶାନ୍ତିକର ଦେବ -୧ମ ବା ଲଳିତହର (ପିତା- ଶିବକର-୧ମ) (୮୨୯), (୬) ଶୁଭକରଦେବ (୨ୟ) (୮୩୬), (୭) ଶୁଭକର ଦେବ(୩ୟ) ବା ସିଂହକେତୁ କୁସୁମହର-୧ମ (୮୩୯), (୮) ତ୍ରିଭୁବନ ମହାଦେବୀ-୧ମ (ନାଗୋଭବ କୁଳ ରାଜଜେମା ତଥା ଶାନ୍ତିକରଦେବ-୧ମଙ୍କ ରାଣୀ (୮୪୬), (୯) ଶାନ୍ତିକର ଦେବ-୨ୟ, (Gayada-II) (୧୦) ଶୁଭକର ଦେବ-୪ର୍ଥ ବା କୁସୁମହର-୨ୟ (ତାଙ୍କ ରାଣୀ ପୃଥ୍ୱୀ ଓରଫ୍ ତ୍ରିଭୁବନ ମହାଦେବୀ-୨ୟ) (୮୮୧), (୧୧) ଶିବକର ଦେବ-୩ୟ ବା ଲଳିତହର-୨ୟ (୮୮୫), (୧୨) ତ୍ରିଭୁବନ ମହାଦେବୀ-୨ୟ (୮୯୪), (୧୩) ଶାନ୍ତିକର ଦେବ-୩ୟ (ପତ୍ନୀ-ଧର୍ମ ମହାଦେବୀ) ସମାନ୍ତରାଳ ଶାସନ, (୧୪) ଶୁଭକର ଦେବ-୫ମ, (୧୫) ଗୌରୀଦେବୀ (ଶୁଭକର ଦେବ-୫ମଙ୍କ ପତ୍ନୀ), (୧୬) ଦଣ୍ଡୀ ମହାଦେବୀ (୯୧୬-୯୨୩), (୧୭) ବକୁଳ ମହାଦେବୀ, (୧୮) ଧର୍ମମହାଦେବୀ (ଶାନ୍ତିକର ଦେବ-୩ୟଙ୍କ ପତ୍ନୀ) (୯୪୫) ।

ତେବେ ତ୍ରିଭୁବନ ମହାଦେବୀ-୨ୟ ତଥା ଶାନ୍ତିକର ଦେବ-୩ୟ ସମାନ୍ତରାଳ ଶାସନ କିଛିକାଳ ଚଳାଇଥିଲେ ।

**(୪) ଭୌମରାଜତ୍ୱରେ ମନ୍ଦିର ଗଢ଼ା**

ବୌଦ୍ଧତନ୍ତ୍ରଯାନ ସହିତ କାଳକ୍ରମେ ହିନ୍ଦୁଧର୍ମ ଧାରାର ମିଶ୍ରଣ ଘଟିବା ଫଳରେ ବହୁ ବୌଦ୍ଧ ଦେବଦେବୀ ମୂର୍ତ୍ତି, ହିନ୍ଦୁ ଦେବୀ ଦେବତାଙ୍କର ପରିଣତ ହୋଇ ପୂଜିତ ହେବାକୁ ଲାଗିଲା । ବୌଦ୍ଧମାନେ ମଧ୍ୟ ହିନ୍ଦୁ ଦେବଦେବୀମୂର୍ତ୍ତିକୁ ଗ୍ରହଣ କରି ନେଇଥିଲେ । ଏହି ସମନ୍ୱୟ ବିଚାରଧାରାକୁ ସମକାଳୀନ ରାଜତନ୍ତ୍ର ଗ୍ରହଣ କରି ନେଇଥିଲା । ରାଜନୈତିକ ପୃଷ୍ଠପୋଷକତା ଲାଭକରି ନିର୍ଦ୍ଦିଷ୍ଟ ଧର୍ମ, ସମାଜରେ ଛତ୍ରଛାୟା ବିସ୍ତାର କରିଥିଲା । ରାଜା ଯେଉଁ ଆଡ଼େ ପ୍ରଜା ସେହିଆଡ଼େ । ଭୌମକର ରାଜତ୍ୱରେ ଶୈବ ଓ ଶାକ୍ତ ଧର୍ମର ପ୍ରାଧାନ୍ୟ ବୃଦ୍ଧି ହେତୁ, ଭୌମରାଜାରାଣୀମାନେ ନାଭିକ୍ଷେତ୍ର ଯାଜପୁର ଅଞ୍ଚଳରେ ଅନେକ ଶିବମନ୍ଦିର ଗଢ଼ିଥିଲେ । ସେଥିମଧ୍ୟରୁ କେତେଗୋଟିର ଦୃଷ୍ଟାନ୍ତ ଦିଆଗଲା-

୧- ମାଧବେଶ୍ୱର ମନ୍ଦିର- ନିର୍ମାତା- ଭୌମରାଜ ଶୁଭକରଦେବ-୧ମଙ୍କ ରାଣୀ ମାଧବୀ ଦେବୀ ।

୨- ପୁଳିନ୍ଦେଶ୍ୱରାୟତନ-ତତ୍ରୈବ- ଶୁଭକର ଦେବ-୪ର୍ଥଙ୍କ ସାମନ୍ତ ରାଜା ପୁଳିନ୍ଦରାଜ । ମୁଖ ଦେବତା- ବୈଦ୍ୟନାଥ ଭଟ୍ଟାରକ ।

୩- ଲଳିତେଶ୍ୱର- ତତ୍ରୈବ- ଲଳିତହର (ଶାନ୍ତିକର ଦେବ-୧ମ)

୪- କୁସୁମେଶ୍ୱର- ତତ୍ରୈବ- କୁସୁମହର- ୧ମ (ଶୁଭକରଦେବ-୩ୟ)

୫- ଦଣ୍ଡୀଶ୍ୱର- ତତ୍ରୈବ- ଦଣ୍ଡୀମହାଦେବୀ (ଦଣ୍ଡଭୁକ୍ତି ଅଞ୍ଚଳରେ)

୬- ମାଧବେଶ୍ୱର- ତତ୍ରୈବ- ଶୁଭକରଦେବ-୧ମ ପତ୍ନୀ ମାଧବୀ ଦେବୀ (ହଂସେଶ୍ୱର ଶିଳାଲେଖ ଅନୁସାରେ)

ସେହି ଭୌମରାଣୀମାନେ ଏକାମ୍ରକ୍ଷେତ୍ର (ଭୁବନେଶ୍ୱର)ଠାରେ ନିଜ ନାମରେ ଶକ୍ତିପୀଠମାନ ସ୍ଥାପନ କରିଥିଲେ । ପୃଥ୍ୱୀମହାଦେବୀ (ତ୍ରିଭୁବନ ମହାଦେବୀ-୨ୟ) ଏକାମ୍ର କ୍ଷେତ୍ରରେ କାପାଳିନୀ ମନ୍ଦିର, ଗୌରୀ ମହାଦେବୀ- ଗୌରୀମନ୍ଦିର, ହୀରାଦେବୀ- ହୀରାପୁର ଶାସନ (ଭୁବନେଶ୍ୱର) ଓ ୬୪ ଯୋଗିନୀପୀଠ (ଗ୍ରାମ୍ୟ ଉପକଣ୍ଠରେ ମୁଗୁନିପଥରରେ ଖୋଦିତ ସୁଦୃଶ୍ୟ ୬୪ ଯୋଗିନୀ ମୂର୍ତ୍ତି) ନିର୍ମାଣ କଲେ । ଦଣ୍ଡୀ ମହାଦେବୀ- ଦଣ୍ଡୀଶ୍ୱର ମନ୍ଦିର ନିର୍ମାଣ କଲେ ।

ଭୌମରାଜ କ୍ଷେମକରଙ୍କ ପାଟରାଣୀ ବସ୍ତାଦେବୀ ଯାଜପୁର ଅଞ୍ଚଳରେ ଚାମୁଣ୍ଡାପୂଜା ପ୍ରଚଳନ କଲେ । ଭୌମରାଜତ୍ୱରେ ପୂଜିତା ବହୁସଂଖ୍ୟକ ମାତୃକାମୂର୍ତ୍ତି, ବୌଦ୍ଧଦେବୀମୂର୍ତ୍ତି ଯାଜପୁର ଓ ପ୍ରାଚୀ ଉପତ୍ୟକାରୁ ମିଳିଛି । ବସ୍ତାଦେବୀଙ୍କ ପରି ଦଣ୍ଡୀମହାଦେବୀ, ଦଣ୍ଡଭୁକ୍ତି ଅଞ୍ଚଳରେ ଚାମୁଣ୍ଡାପୂଜାର ପୃଷ୍ଠପୋଷକତା କରିଥିଲେ ।

**(୫) ଭୌମରାଣୀମାନଙ୍କ ବଂଶାଭିଜାତ୍ୟ-** ଭୌମରାଣୀ/ପାଟମହିଷୀମାନେ ଉଚ୍ଚକୁଳ (ଗଙ୍ଗ-ସୋମ-ନାଗ)ସମ୍ଭବା ଥିଲେ । ଏଣୁ ସେମାନଙ୍କ ଦେହରେ କ୍ଷାତ୍ର ଶୋଣିତ ପ୍ରବାହିତ ହେଉଥିଲା । ସେମାନେ ବଜ୍ରଯାନୀ ପନ୍ଥାର ସାଧିକା ଥିବାରୁ ଶାସନଗାଦୀରେ ବସିବା ବେଳେ ନିଜକୁ ଶକ୍ତିସାଧିକା ଶକ୍ତିସ୍ୱରୂପିଣୀ ବୋଲି ଦୃଢ଼ ଓ ଅବିଚଳ ରହୁଥିଲେ । ଓଡ଼ିଶାର ରାଜନୈତିକ ଇତିହାସରେ ଏହି ରାଣୀମାନଙ୍କ ଶାସନଦକ୍ଷତାର ଗୌରବମୟ ଅଧ୍ୟାୟ ରହିଛି । ଭୌମରାଣୀ ତ୍ରିଭୁବନ ମହାଦେବୀ-୧ମ ଥିଲେ ଗଙ୍ଗବଂଶୀ ରାଜମଲ୍ଲ-୧ମ (୮୧୨-୮୫୩)ଙ୍କ ସୁଯୋଗ୍ୟା କନ୍ୟା । ସେ ଦୁଇଦୁଇଥର ସିଂହାସନାରୂଢ଼ା ହୋଇ ଶାସନଭାର ଦୃଢ଼ତାର ସହିତ ସମ୍ଭାଳି ସାମ୍ରାଜ୍ୟ ପ୍ରତିରକ୍ଷା କ୍ଷେତ୍ରରେ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ । ଢେଙ୍କାନାଳରୁ ପ୍ରାପ୍ତ ତାଙ୍କର ଏକ ତାମ୍ର ଫଳକରେ ସେ ନିଜକୁ (୧) ଗୋସ୍ୱାମିନୀ, (୨) ପରମଭଟ୍ଟାରିକା, (୩) ପରମବୈଷ୍ଣବୀ, (୪)ପରମାମହେଶ୍ୱର ଏବଂ ଅନ୍ୟତ୍ର ସେ କାତ୍ୟାୟିନୀ ଭାବରେ ନିଜକୁ ଅଭିହିତ କରିଛନ୍ତି । ସେ କାତ୍ୟାୟିନୀ ତୁଲ୍ୟା ସିଂହାସନାରୂଢ଼ା ହୋଇଛନ୍ତି । ରାଜପରିଷଦଗଣ ତାଙ୍କର ପଦଯୁଗଳ ସ୍ପର୍ଶ କରୁଛନ୍ତି । ତାଙ୍କର ତାମ୍ରଫଳକରେ ଶେଷନାଗ ସହିତ ତାଙ୍କୁ ତୁଳନା କରାଯାଇଛି । ଅର୍ଥାତ୍ ପୃଥ୍ୱୀ ଭାର ବହନ କରିବା ସହିତ ଶତ୍ରୁଦମନ ଏବଂ ସାମାଜିକ ସଦ୍‌ଭାବନା ପ୍ରତିଷ୍ଠାର ଭାବକୁ ନିର୍ଦ୍ଦେଶ କରୁଛି । ଏପରିକି ଆରବୀ ଏବଂ ପାର୍ଶୀ ନଥିପତ୍ରରେ ତାଙ୍କୁ ରାଇନା କୁହାଯାଇ, ଭୌମଶାସନ କ୍ଷେତ୍ରରେ ତାଙ୍କ ଦକ୍ଷତାକୁ ପ୍ରଶଂସା କରାଯାଇଛି ।

ସେହିପରି ପୃଥ୍ୱୀ ମହାଦେବୀ (ତ୍ରିଭୁବନ ମହାଦେବୀ-୨ୟ) ଥିଲେ, ସୋମତିଳକ କୋଶଳରାଜ ଜନ୍ମେଜୟ (ସ୍ୱଭାବତୁଙ୍ଗ)ଙ୍କ କନ୍ୟା ମହାବିକ୍ରମୀ ଯଯାତି-୧ମ ଭଗ୍ନୀ ତଥା ଶୁଭକର ଦେବ-୪ର୍ଥଙ୍କ ପତ୍ନୀ । ପତିଙ୍କ ମୃତ୍ୟୁ ପରେ ଭ୍ରାତା ଯଯାତିଙ୍କ ସହାୟତାରେ ଦେବରଙ୍କୁ ସିଂହାସନଚ୍ୟୁତ କରି ରାଜଗାଦି ଦଖଲ କଲେ । ପୂର୍ବରୁ ସ୍ଥାପିତ ଉମାମହେଶ୍ୱରଙ୍କ ପୂଜାର୍ଚ୍ଚନା ପାଇଁ ସେ ବଉଦର କୋଟପୁର ଗ୍ରାମଟି ଦାନ କରିଥିଲେ (ବଉଦ ଦାନଫଳକ) । ଏହାବାଦ୍ ମନ୍ଦିରର ମରାମତି, ଠାକୁରଙ୍କ ନିତ୍ୟ ନୈମିତ୍ତିକ ପୂଜାବିଧାନ, ସେବକ ବ୍ରାହ୍ମଣ ଅତିଥି, ଭିକ୍ଷୁଙ୍କ ଭରଣପୋଷଣ ପାଇଁ ବ୍ୟବସ୍ଥା କରିଥିଲେ । ପରବର୍ତ୍ତୀ କାଳରେ ଏହି ମନ୍ଦିରଟି ତାଙ୍କ ପିତାଙ୍କ ସ୍ମୃତିରେ ନୀନେଶ୍ୱର ନାମରେ ପରିଚିତ ହେଲା ।

ଭୌମରାଣୀ ଦଣ୍ଡୀମହାଦେବୀ ଉଭୟ ଉତ୍ତର ଦକ୍ଷିଣ ତୋଷାଳୀରେ ସର୍ବାଧିକ ଦାନଫଳକ ପ୍ରଦାନ କରିଛନ୍ତି । ଗଞ୍ଜାମ, ଅନୁଗୁଳ-ତାଳଚେର ଯମଗର୍ତ୍ତମଣ୍ଡଳ, କୁମୁରଙ୍ଗା

ତାମ୍ରଫଳକରୁ ତାଙ୍କର ଆଶ୍ରିତ କରଦରାଜାଙ୍କ ସଂପର୍କରେ ସୂଚନା ମିଳିଥାଏ ।

ଭୌମମହିଷୀ ଗୌରୀମହାଦେବୀ ଓ ବକୁଳ ମହାଦେବୀ ଉଭୟ ଭଞ୍ଜବଂଶୀୟା ଅଟନ୍ତି । ଶାନ୍ତିକର ଦେବ-୨ୟଙ୍କ ପତ୍ନୀ ହୀରାଦେବୀ ଥିଲେ ସିଂହମାନ (ମାନଭୂମି) ରାଜଜେମା । ସେ ମଧ୍ୟ ଦାନଫଳକ ମାନଙ୍କରେ ନିଜକୁ ପରମ ଭଟ୍ଟାରିକା - ପରମ ମାହେଶ୍ୱରୀ ଭାବରେ ଉଦ୍‌ଘୋଷଣା କରିଛନ୍ତି । ଏଥିରୁ ସ୍ପଷ୍ଟ ହୁଏ ଯେ ଭୌମରାଜତ୍ୱର ଶେଷଆଡ଼କୁ ବୌଦ୍ଧତନ୍ତ୍ରଯାନର ଅବକ୍ଷୟ ଘଟି ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମର ପ୍ରାଧାନ୍ୟ ବୃଦ୍ଧି ପାଇଥିଲା । ଭୌମରାଜତ୍ୱର ଶେଷ ଶାସିକା ଥିଲେ ଧର୍ମ ମହାଦେବୀ । ତାଙ୍କ ଦାନଫଳକମାନଙ୍କରେ ସେ ପରମାମାହେଶ୍ୱରୀ, ପରମଭଟ୍ଟାରିକା, ନନ୍ଦନବନର ଦେବୀ ଲକ୍ଷ୍ମୀ (ତଳତଳି ତାମ୍ରଫଳକ) ଆଦି ଉପାଧିରେ ଭୂଷିତ ଥିଲେ ।

ଭୌମରାଣୀଙ୍କ ମଧ୍ୟରେ ମାଧବୀ ଦେବୀ, ଜୟାଦେବୀ, ବସ୍ତାଦେବୀ ବହୁ ନଗର ହାଟ, ମଠ, ଧର୍ମଶାଳା ଜନହିତାର୍ଥେ ପ୍ରତିଷ୍ଠା କରିଥିବାର ଜଣାଯାଏ । ଏଣୁ ଓଜତେଜସଂପନ୍ନା ଏହି ରାଜମହିଷୀଗଣ ଧର୍ମସଂସ୍ଥାପନା, ସାମାଜିକ ସହନଶୀଳତା ତଥା ପ୍ରଜାନୁରଞ୍ଜନ କାର୍ଯ୍ୟ କ୍ଷେତ୍ରରେ ଉଦାର ଓ ଯଥାର୍ଥ ନୀତି ଅବଲମ୍ୱନ କରି ସ୍ମରଣୀୟ ହୋଇ ରହିଛନ୍ତି ।

**(୬) ଉପସଂହାର-** ଉତ୍କଳ-ତୋଷଳରୁ ଭୌମକରଙ୍କୁ ପରାସ୍ତ କରି ସୋମବଂଶୀ ରାଜା ଚଣ୍ଡୀହର (ଯଯାତି-୨ୟ, ବ୍ରହ୍ମେଶ୍ୱର ଶିଳାଲେଖ) ଭୌମରାଜଧାନୀ ଗୁହଶିବପାଟକ ଦଖଲ କଲେ । ଏହା ପରେ ଯାଜପୁରଠାରେ ଯଯାତିନଗର ପ୍ରତିଷ୍ଠା କରି ସମଗ୍ର ଉଡ୍ର-ଉତ୍କଳ-ତୋଷଳରେ ଶାସନ ଚଳାଇଲେ । ଉତ୍କଳରେ ସୋମବଂଶୀଙ୍କ ଉଦୟ ଫଳରେ ଭୌମବଂଶର ପତନ ହେଲେ ମଧ୍ୟ ଭୌମକର ରାଜରାଣୀଗଣ ନିଜର ଗୌରବମୟ ଇତିହାସରେ ସ୍ପଷ୍ଟ ପଦାଙ୍କ ଛାଡ଼ି ଯାଇଛନ୍ତି ।



ଅଭିନନ୍ଦନ
୩୫, ବସନ୍ତ ବିହାର,
ବ୍ରହ୍ମେଶ୍ୱର ମାର୍ଗ, ଭୁବନେଶ୍ୱର-୧୮

# ଉତ୍କଳ ସରଗ ମୋର ଜନ୍ମସ୍ଥାନ

**ଶହୀଦ ଦିବାକର ପରିଡ଼ା**

ଉତ୍କଳ ସରଗ ମୋର ଜନ୍ମସ୍ଥାନ
ନୀଳାଚଳ ସମ ପୁଣ୍ୟ ତୀର୍ଥଧାମ
କୋରାପୁଟ, ପୁରୀ, ଗଞ୍ଜାମ ଶୀର୍ଷକ
ସମ୍ବଲପୁର ବାଲେଶ୍ୱର, କଟକ
ଏ ଷଷ୍ଠ ଜିଲ୍ଲାରେ ସୁଶୋଭିତ ମାତ
ଚିଲିକାକୁ ନେଇ ଯେତେ ଗଡ଼ଜାତ
ଋଷିକୂଲ୍ୟା ମହାନଦୀ ସ୍ୱଚ୍ଛ ନୀରା
ନାନାବିଧ ଶସ୍ୟଶ୍ୟାମଳା ଶରୀରା
ଯା'ର ଇତିହାସ କହେ ଖଣ୍ଡଗିରି
ବାରବାଟୀ ଦୁର୍ଗେ ପରାସ୍ତ ବଇରୀ
ପୂର୍ବଦିଗେ ଯାର ବଙ୍ଗୋପସାଗର
ନାମ ଘୋଷେ ନିତ୍ୟ ଜଗନ୍ନାଥଙ୍କର
ସରିଥାନ୍ତା ହେଲେ ସେହି ସ୍ଥାନେ ଦିନ
କାରାଗାରେ ସିନା ବିଅର୍ଥ ଜୀବନ
ସେହେତୁ ମରଣେ ନାହିଁ ମୋର ଡର
ବଳିଦାନ ପାଇଁ ହେଲି ଅଗ୍ରସର
ମଲେ ହେଲେ ପରା ସେ ସ୍ଥାନେ ମିଳିବି
ପୁଣି ନୀଳାଚଳ ନାଥଙ୍କୁ ଦେଖିବି
ନାହିଁ ଯେବେ ମୃତ୍ୟୁ ଏ ମହାସମରେ
ପ୍ରବେଶିବି ନିଶ୍ଚେ ଆପଣା ଦେଶରେ
ଦୁଃଖୀ ଦରିଦ୍ରଙ୍କ ମଙ୍ଗଳ ନିମନ୍ତେ
ଆନ୍ଦୋଳନ କରିବାକୁ ହେବ କେତେ
ପାଇବି ଯାହାକୁ ସଙ୍ଗେ ଘେନିଯିବି
ଦରିଦ୍ରତା ନାଶ ବାର୍ତ୍ତା ପ୍ରଚାରିବି
କହିବି ହେ ଭାଇ ଛାଡ଼ ଜାତିଭେଦ
ସ୍ୱାଧୀନତା ହେଲେ ଦୂର ହେବ ଖେଦ
ଚରଖା ପ୍ରସାର ଗ୍ରାମମାନଙ୍କରେ
ମହାତ୍ମାଙ୍କ ଆଶା ପୂର୍ଣ୍ଣ ହେଉ ଥରେ
ନ ଆସିବ ଆଉ କେବେ କିଛି କଷ୍ଟ
ଆମ ସୁଖେ ଆମେ ହୋଇବା ବଳିଷ୍ଠ
ପ୍ରାଚୀନ ସଂସ୍କୃତି ଫେରିବ ସହଜେ
ନବୀନ ଆଲୋକ ରାଜିବ ସମାଜେ
କୁଳବଧୂମାନେ ହେବେ ପତିବ୍ରତା
ବୀର ପ୍ରସବିନୀ ହେବେ ତେବେ ମାତା
କେତେ ରାମଚନ୍ଦ୍ର କେତେ କୃଷ୍ଣଚନ୍ଦ୍ର
କେତେ କେତେ ଜନ୍ମ ହେବେ ବୀରବୃନ୍ଦ
ସ୍ୱାଧୀନ ରଖିବେ ଜନମ ଭୂଇଁକି
ଚିରଦିନ ପାଇଁ ତ୍ରିରଙ୍ଗାକୁ ଟେକି
ପୂର୍ଣ୍ଣ ହେବ ସତେ ଦିବାକର ଆଶା
ସୁଜଳା ସୁଫଳା ସମୃଦ୍ଧ ଓଡ଼ିଶା ।

(ରଣପୁର ପ୍ରଜା ଆନ୍ଦୋଳନର ଅମର ସୂତ୍ରଧର ବିଦ୍ରୋହୀ ନେତା ଶହୀଦ ଦିବାକର ପରିଡ଼ା ବ୍ରିଟିଶ୍ ପଲିଟିକାଲ ଏଜେଣ୍ଟ ମେଜର ବେଜେଲଗେଟ୍ ହତ୍ୟା ଅପରାଧରେ ଅଭିଯୁକ୍ତ ହୋଇ କାରାରୁଦ୍ଧ ଅବସ୍ଥାରେ ଉପରୋକ୍ତ କବିତାଟିକୁ ରଚନା କରିଥିଲେ । କବିତା ରଚନା ସମୟକୁ ତାଙ୍କୁ ଫାଶୀ ଦଣ୍ଡ ଦିଆଯିବ ବୋଲି ରାୟ ଦିଆସରିଥିଲା । କବିତା ରଚନା ବେଳେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇସାରିଥିଲା ଏବଂ ମୋଟରେ ୬ଟି ଜିଲ୍ଲା ଓ ୨୬ଟି ଗଡ଼ଜାତ ରହିଥିଲା ।)



# ଗଣତନ୍ତ୍ର ଓ ରାଷ୍ଟ୍ରଧର୍ମ

ଡକ୍ଟର ତ୍ରିନାଥ ପଟ୍ଟନାୟକ

ପ୍ରାଚୀନ ଭାରତରେ ନାଗରିକମାନେ ହିଁ ଗଣରାଜ୍ୟ ସୃଷ୍ଟି କରିଥିଲେ । ଭାରତୀୟ ପ୍ରାଚୀନଶାସ୍ତ୍ର ଅଧ୍ୟୟନ କଲେ ଜାଣିବାକୁ ମିଳେ, ସେତେବେଳେ 'ରାଜା' ବୋଲି ଶବ୍ଦ ନଥିଲା । ପ୍ରଜା ପ୍ରତିନିଧି ଗଣରାଜ୍ୟମାନଙ୍କରେ ମୁଖ୍ୟ ହୋଇ ରାଜ୍ୟର ଭଲମନ୍ଦ କଥା ବୁଝୁଥିଲେ । କେବଳ ଉତ୍ତମ ନାଗରିକମାନେ ଏ ରାଷ୍ଟ୍ରରେ ଥିଲେ । ସେମାନେ ମାତୃଭୂମି ପ୍ରେମୀ ଓ ସତ୍ ଚରିତ୍ରର ଥିଲେ । ଉତ୍ତମ ବୁଝାମଣା, ଭ୍ରାତୃଭାବ, ପରସ୍ପର ସହଯୋଗରେ ସଂସାର ଚାଲିଥିଲା । ଅନ୍ୟର ମଂଗଳ, ରାଷ୍ଟ୍ରର ଉନ୍ନତିକୁ ସେମାନେ ଧର୍ମ ବୋଲି ଭାବୁଥିଲେ । ମାନବିକତା, ଜୀବେଦୟା ହିଁ ଧର୍ମଥିଲା । ସେଥିପାଇଁ କୁହାଯାଉଥିଲା – ''ଧର୍ମେଣ ବିଧୃତା ପ୍ରଜାଃ'' ।

ଯେତେବେଳେ ମାନବିକତାରେ ସନ୍ଦେହ ଆସିଲା, ରାଜ୍ୟ ସୁଶାସନ ବିପର୍ଯ୍ୟୟ ଆଡ଼କୁ ଗତିକଲା, ସ୍ୱେଚ୍ଛାଚାରିତା ବଢ଼ିଲା, ସେତେବେଳେ ସମାଜ ଚାହିଁଲା ଜଣେ ପ୍ରତାପଶାଳୀ ପ୍ରତିନିଧି ରାଜ୍ୟ ଶାସନ କରୁ । ସେହି ବ୍ୟକ୍ତିକୁ 'ରାଜା' ବୋଲି କୁହାଗଲା । ସେଇଠୁ ସୃଷ୍ଟିହେଲା ରାଜା ଉପାଧି ।ସେମାନେ ହେଲେ ରାଜ୍ୟପାଳ । ରାଜ୍ୟ ଶାସନ ପାଇଁ ଯେଉଁ ନିୟମ ରଖାଗଲା ତାହା ହେଲା ରାଜନୀତି । ମାତ୍ର ରାଜାର ଅର୍ଥ ଥିଲା ପ୍ରଜାନୁରଂଜନ । ପ୍ରଜା ପୀଡ଼ନ ନୁହେଁ ।

ଏହି ନୀତି ଅନୁସାରେ ପ୍ରାଚୀନ ଭାରତରେ ପ୍ରଥମେ ଜଣେ ରାଜା ସୃଷ୍ଟି ହେଲେ, ସେ ହେଉଛନ୍ତି ରାଜ ପ୍ରତିନିଧି ବେନଙ୍କ ପୁତ୍ର ପୃଥୁ । ପୃଥୁ ରାଜା ହେବା ପରେ ପ୍ରଜାମାନଙ୍କୁ ସୁଖ ଶାନ୍ତି ପ୍ରଦାନ କଲେ ।

ରଜିତାଶ୍ଚ ପ୍ରଜାଃ ସର୍ବେସ୍ତେନ ରାଜଜତି ଶବ୍ଦ୍ୟତେ ।
(ମହାଭାରତ ଶାନ୍ତିପର୍ବ)

ରାଜା ପ୍ରଜାରଂଜନ କରିବ । ପ୍ରଜାରଂଜନ ଅର୍ଥ ହେଲା ରାଷ୍ଟ୍ରର ସମସ୍ତ ନାଗରିକଙ୍କୁ ଜାତି ଧର୍ମ ଗୁଣ କାର୍ଯ୍ୟ ନିର୍ବିଶେଷରେ ସୁଖଶାନ୍ତିରେ ରଖିବ ଓ ସମସ୍ତେ ଯେପରି ସ୍ୱଚ୍ଛଳ ଭାବେ ନିର୍ଭୟରେ ଜୀବନ ବଞ୍ଚି ପାରିବେ ସେଥିପ୍ରତି ସର୍ବଦା ତତ୍ପର ରହିବେ ଓ ଧ୍ୟାନ ଦେବେ । ନାଗରିକ ସର୍ବଦା ସ୍ୱାଧୀନ ରହିବ କାହାଦ୍ୱାରା ଉତ୍ପୀଡ଼ିତ ହେବ ନାହିଁ । ଧନ ଜୀବନ ସୁରକ୍ଷିତ ଥିବ । ନାଗରିକ ମଧ୍ୟ ସର୍ବଦା ସତ୍ୟବାଦୀ, କର୍ମ ତତ୍ପର, ଦୟାଳୁ ବୁଦ୍ଧିମାନ ହେବା ସହିତ ରାଷ୍ଟ୍ରପ୍ରତି ଅନୁରକ୍ତ ରହିବା ଉଚିତ । ନାଗରିକ ରାଷ୍ଟ୍ରପ୍ରତି ସ୍ନେହଶୀଳ ନ ହେଲେ ରାଷ୍ଟ୍ରର ଉନ୍ନତି ଅସମ୍ଭବ । ନାଗରିକ ସ୍ୱେଚ୍ଛାଚାରୀ, ସ୍ୱାର୍ଥପର ହୋଇଯିବା ଫଳରେ ତାର ଚିନ୍ତାଚେତନା ସଂକୀର୍ଣ୍ଣ ହୋଇଯାଏ । ମିଥ୍ୟା, ଧୋକାବାଜ, ଚୋରି ଆଦି କର୍ମରେ ଲିପ୍ତରହିବା ଫଳରେ ଅଭ୍ୟାସ ବଶତଃ ଅଧର୍ମ ଜନକ ଯେକୌଣସି କାର୍ଯ୍ୟ କରିବା ନିମନ୍ତେ କୁଣ୍ଠିତ ହୁଏ ନାହିଁ । ଦୁର୍ନୀତି ବଢ଼ିଯାଏ ଭ୍ରଷ୍ଟାଚାର ସୃଷ୍ଟି ହୁଏ । ରାଷ୍ଟ୍ରବିରୋଧୀ କର୍ମ କରି ସୁଦ୍ଧା ପଶ୍ଚାତ୍ତାପ କରେ ନାହିଁ, ଶାସକର କର୍ତ୍ତବ୍ୟ କେବଳ ଦଣ୍ଡ ପ୍ରଦାନ ନୁହେଁ, ଅପରାଧ ସୃଷ୍ଟି ନକରିବା ପାଇଁ କାର୍ଯ୍ୟାବଳୀ । ଶାସକ ପ୍ରଜାମନରେ ଧର୍ମ ଭାବ, ସ୍ୱାଧୀନଚିନ୍ତା, ପରୋପକାର ପ୍ରଭୃତି ଚିନ୍ତା ସୃଷ୍ଟି କରିପାରିଲେ ହିଁ ରାଷ୍ଟ୍ରରେ ଗଣତନ୍ତ୍ର ତିଷ୍ଠି ରହିବ ।

ପ୍ରାଚୀନ ଭାରତରେ ଏସବୁ ସମ୍ଭବ ଥିଲା, ପରବର୍ତ୍ତୀ ସମୟରେ ଭାରତବର୍ଷର ବୈଶାଳୀ, ଲିଚ୍ଛାବୀ ପ୍ରଭୃତି ଅନେକ ସାଧାରଣତନ୍ତ୍ର ପରିଚାଳିତ ଗଣରାଜ୍ୟ ସୃଷ୍ଟି ହୋଇ ପାରିଥିଲା । ଏତ ଗଲା ଇତିହାସର କଥା ।

ଯେତେବେଳେ ଶ୍ରୀରାମଚନ୍ଦ୍ର, ଯୁଧିଷ୍ଠିର ପ୍ରଭୃତି ରାଜାମାନେ ଶାସନ କରୁଥିଲେ, ସେମାନେ ମଧ୍ୟ ପ୍ରଜାମାନଙ୍କୁ ଅଖଣ୍ଡ ସ୍ୱାଧୀନତା ପ୍ରଦାନ କରିଥିଲେ । ପ୍ରଜାଗଣଙ୍କ ମତ ଓ ପରାମର୍ଶରେ ପରିଚାଳିତ ହେଉଥିଲେ । ଶାସନ ଏତେ ସୁଖକର ଥିଲା ଯେ ସେହିକଥା ପଢ଼ି ଜାଣି ଏବେ ଆମେ ରାମ-ରାଜ୍ୟର ଉଦାହରଣ ଦେଉଛେ । ରାଷ୍ଟ୍ରରେ ଦୁର୍ଭିକ୍ଷ, ବ୍ୟାଧି, ଅକାଳ ମୃତ୍ୟୁ ପରପୀଡ଼ନ ଚୋରି ହିଂସା ଆଦି ପ୍ରାୟତଃ ନିୟନ୍ତ୍ରଣ ମଧ୍ୟରେ ଥିଲା । ଯାହା ସମସ୍ୟା ଦେଖା ଯାଉଥିଲା ତତ୍କାଳ ଶାସକମାନେ ଦ୍ରୁତ ପଦକ୍ଷେପ ନେଉଥିଲେ ।

ପ୍ରାଚୀନ ଭାରତରେ ରାଷ୍ଟ୍ରମୁଖ୍ୟ ବିଭିନ୍ନ ବିଭାଗରେ ସଚିବ ନିଯୁକ୍ତି କରିଥିଲେ । ସେମାନେ ଧାର୍ମିକ ହେବା ସହିତ ପୁଣ୍ୟାତ୍ମା ଥିଲେ । ରାଜା ମନ୍ତ୍ରୀମାନଙ୍କର ଚରିତ୍ର ପ୍ରତି ସଜାଗ

ରହିବା ସହିତ ପ୍ରଜା ସ୍ୱାର୍ଥରକ୍ଷାରେ ସହାୟକ ହେବା ନିମନ୍ତେ ଉପଦେଶ ଦେଉଥିଲେ ।

ଆଉ ଗୋଟିଏ କଥା ହେଉଛି ରାଷ୍ଟ୍ରର ପରିଚାଳନା ଓ ସୁରକ୍ଷା ନିମନ୍ତେ ଅର୍ଥର ଆବଶ୍ୟକତା ଅଛି । ସେଥିନିମନ୍ତେ ସବୁ କାଳରେ ପ୍ରଜାଙ୍କଠାରୁ କର ଆଦାୟର ବ୍ୟବସ୍ଥା ରହିଆସିଛି । ଆଜିର ସାଧାରଣତନ୍ତ୍ରର ରାଷ୍ଟ୍ରରେ ମଧ୍ୟ ସେ ବ୍ୟବସ୍ଥା ରହିବ । ମାତ୍ର ସର୍ବଦା ଶାସକ ଭାବିବା ଉଚିତ ଯେ ପ୍ରଜାଯେପରି କର ଭାରରେ ପୀଡ଼ିତ ନ ହେଉ । ସେଥିପାଇଁ ରାଜନୀତି ପଣ୍ଡିତମାନେ କହିଛନ୍ତି ଶାସକ ଜଣେ ମାଳିର ଭୂମିକା ଗ୍ରହଣ କରୁ । ତାହାକୁ ମାଳାକାର ବୃତ୍ତି କୁହାଯାଏ । ଅର୍ଥାତ୍ ମାଳି ଯେପରି ବୃକ୍ଷ ଲଗାଇ ପାଳନ କରେ, ବୃକ୍ଷକୁ ପୀଡ଼ା ନ ଦେଇ, ନଷ୍ଟ ନକରି ପୁଷ୍ପ ଚୟନ କରେ ସେହିଭଳି ପ୍ରଜାଙ୍କୁ କଷ୍ଟ ନଦେଇ ରାଜା କର ଆଦାୟ କରିବା ଉଚିତ । ଶାସନର ଅନ୍ୟ ଏକ ଗୁଣ ହେଉଛି ସୂର୍ଯ୍ୟ ଯେପରି ଆକର୍ଷଣ କରି ଧରାପୃଷ୍ଠରୁ ଜଳୀୟ ଅଂଶ ଟାଣିନିଏ ଓ ନିଜ ପ୍ରକ୍ରିୟାରେ ମେଘ ସୃଷ୍ଟି କରି ଜଳଧାରା ରୂପେ ଶସ୍ୟ ଉତ୍ପାଦନ ନିମନ୍ତେ ଧରା ଉପରେ ସିଞ୍ଚନ କରେ, ରାଷ୍ଟ୍ର ମଧ୍ୟ ସେହିଭଳି ରାଜସ୍ୱ ଗ୍ରହଣ କରି ପ୍ରଜାମାନଙ୍କ ହିତାର୍ଥେ ବ୍ୟୟ କରିବା ଉଚିତ ।

ପ୍ରାଚୀନ ଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି– ଦଣ୍ଡଃ ସଂରକ୍ଷତେ ଧର୍ମମ୍ । ଦୃଢ଼ଶାସନ ନିମନ୍ତେ ଦଣ୍ଡର ଆବଶ୍ୟକତା ଅଛି । ଦଣ୍ଡ ବିଧାନ ପାଇଁ ନୀତି ବା କାନୁନ୍ ଆବଶ୍ୟକ । ରାଷ୍ଟ୍ର ପ୍ରଜାପ୍ରତିନିଧି ତଥା ଅନୁଭବ ବିଜ୍ଞ ବ୍ୟକ୍ତିମାନଙ୍କ ସହାୟତାରେ ଗ୍ରହଣ ଯୋଗ୍ୟ ଦଣ୍ଡ ସଂହିତା ପ୍ରସ୍ତୁତ କରିବା ଉଚିତ୍ । ସମୟାନୁସାରେ ତାର ସଂଶୋଧନ, ବ୍ୟାଜ୍ୟାପ୍ତି ଓ ସଂଯୋଗର ଆବଶ୍ୟକତା ପଡ଼ିଥାଏ । ତାହା କରିବାକୁ ପଡ଼ିବ । ପ୍ରାଚୀନ କାଳରେ– ବୃହସ୍ପତିନୀତି ଓ ଶୁକ୍ରନୀତି ଅନୁସାରେ ଶାସନ ଚାଲିଥିଲା, ତାପରେ ମନୁସ୍ମୃତିର ଆବଶ୍ୟକତା ପଡ଼ିଲା । ସେଥିରେ ଧିଶକ୍ତି, ଅର୍ଥଦଣ୍ଡ, କାୟଦଣ୍ଡ ତଥା ଏପରିକି ପ୍ରାଣଦଣ୍ଡର ବ୍ୟବସ୍ଥା ଥିଲା ମାତ୍ର ଅଧୁନା ଗଣତନ୍ତ୍ର ପ୍ରତିଷ୍ଠିତ ରାଷ୍ଟ୍ରମାନଙ୍କରେ ରାଷ୍ଟ୍ରର ସଂବିଧାନ ହିଁ ସର୍ବମୁଖ୍ୟ ଶାସନ ସଂହିତା ।

ରାଷ୍ଟ୍ରର ସୁପରିଚାଳନା ନିମନ୍ତେ ରାଷ୍ଟ୍ରନୀତିଜ୍ଞମାନେ ଧର୍ମପରାୟଣ କର୍ତ୍ତବ୍ୟନିଷ୍ଠ ହେବା ଆବଶ୍ୟକ । ନିଜେ ନିର୍ଭୀକ, ସତ୍ୟବାଦୀ, ସତ୍ୟପରାୟଣ ଓ ପରୋପକାରୀ ହୋଇ ପାରିଲେ, ସେମାନେ ପ୍ରଜାମାନଙ୍କ ନିକଟରେ ଦୃଷ୍ଟାନ୍ତ ହୋଇ ରହିବେ । ତାପରେ ପ୍ରଜାସମୁଦାୟକୁ ସେମାନେ ପଥ ପ୍ରଦର୍ଶନ କରିବେ ଓ ପ୍ରଜାମାନେ ସେହି ପଥକୁ ଅନୁସରଣ କରିବେ । ରାଷ୍ଟ୍ରପ୍ରତି ଏସବୁ ସୁଖକର ହେବ, ଗଣତନ୍ତ୍ର ବହୁଦିନ ତିଷ୍ଠିରହିବ । ଏକଛତ୍ରବାଦ ପ୍ରବେଶ କରି ପାରିବ ନାହିଁ । ସେଥିପାଇଁ କୁହାଯାଇଛି–

ଯଦ୍ୟଦାଚରତି ଶ୍ରେଷ୍ଠସ୍ତତ୍ତ ଦେବେତରୋ ଜନଃ

ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ।

(ଗୀତା)

ଭାରତର ସେହି ସ୍ୱର୍ଣ୍ଣାଭ ଯୁଗର ଅବସାନ ବିଦେଶୀମାନଙ୍କର ଭାରତ ପ୍ରବେଶ ପରେ ହିଁ ହୋଇଥିଲା । ଗୁପ୍ତଯୁଗର ସୁବର୍ଣ୍ଣ ସକାଳ କେଉଁଆଡ଼େ ଉଭେଇଗଲା, ଲୁଣ୍ଠନକାରୀ ବିଦେଶୀ ଭାରତବର୍ଷକୁ ଲୁଣ୍ଠନ କଲେ । ଅନ୍ୟାନ୍ୟ ଧର୍ମଧାରାକୁ ନେଇ ଶାସନ ଲଦି ଦିଆଗଲା । ଶାସ୍ତ୍ରମାର୍ଗ ପରିବର୍ତ୍ତେ ଶସ୍ତ୍ରମାର୍ଗରେ ଶାସନ ଚାଲିଲା । ଆର୍ଯ୍ୟଭୂମି ଭାରତ ପରାଧୀନ ହେବା ପରେ ନାଗରିକ ବହୁ ଦୁଃଖ ଦୁର୍ଦ୍ଦଶାରେ କାଳାତିପାତ କଲେ । ସେମାନେ ଭାରତକୁ ଖଣ୍ଡ ବିଖଣ୍ଡିତ କଲେ । ଏକଛତ୍ରବାଦ ଶାସନ ଭିତରେ ଶାସିତ ହୋଇ ଭାରତବର୍ଷ ନିଜର ମୌଳିକତା ଓ ନୈତିକତା ହରାଇ ବସିଲା ।

ରାଜତନ୍ତ୍ର ଛାୟାରେ ଗଣତନ୍ତ୍ରର ପ୍ରତିଷ୍ଠା ଓ ବିକାଶ ସାରା ପୃଥିବୀରେ କେବଳ ଭାରତବର୍ଷରେ ହିଁ ସମ୍ଭବ ହୋଇ ପାରିଥିଲା । ଦୁଃଖର ସମୟ ଏବେ ଭାରତବର୍ଷରେ ନାହିଁ । ଆମେ ସ୍ୱାଧୀନ । ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ଆମେ ଗଣତନ୍ତ୍ର ଶାସନର ସୁଫଳ ଭୋଗି ଆସିଲେଣି । ପ୍ରାଚୀନ ଭାରତର ସୁଶାସନକୁ ସ୍ମରଣ କରି ଆଜିର ନାଗରିକ ଯେତିକି ସଜାଗହେବ, ଗଣତନ୍ତ୍ରର ସୁଶାସନ ସେତିକି ତିଷ୍ଠି ରହିବ । ସେଥିପାଇଁ ଭାରତର ପ୍ରତ୍ୟେକ ନାଗରିକ ଯତ୍ନବାନ ହେବା ଉଚିତ୍ ।



ଆଲୋକ ନଗର
ନିଆଳି–୭୫୪୦୦୪
ଜି.– କଟକ

# ଗୋଁଡ଼ ସଂସ୍କୃତିରେ ପ୍ରଭୁ ଶ୍ରୀ ଜଙ୍ଘାବଡ଼ଦେଓଙ୍କ ଶାମ୍ବଦଶମୀ ପୂଜା

**ବାବା ଜଳଧର**

''ଗୋଁଡ଼ ସଂସ୍କୃତିରେ ପ୍ରଭୁ ଶ୍ରୀ ଜଙ୍ଘାବଡ଼ଦେଓ ହେଉଛନ୍ତି ଗୋଁଡ଼ ସମାଜର ଆରାଧ୍ୟ ଦେବତା– ଦ୍ୱାପର ଯୁଗ ପରେ ଏ କଳି ଯୁଗରେ ପରମାତ୍ମା ପରମେଶ୍ୱର ବ୍ରହ୍ମଲୋକରୁ ଆସି ସେ ଏ ଧରାପୃଷ୍ଠରେ ଜଙ୍ଘ ସ୍ୱରୂପ ଦାରୁବ୍ରହ୍ମ ଭାବରେ ଏକ ଅଙ୍ଗ ଦେବତା ପାଲଟି ଯାଇଛନ୍ତି । ତେଣୁ ଗୋଁଡ଼ ସଂସ୍କୃତିରେ ଜଙ୍ଘା ବଡ଼ଦେଓ ଆଦିଦେବ ଭାବରେ ସର୍ବପରିଚିତ । ସେ ହେଉଛନ୍ତି ବେଦାନ୍ତରେ ବର୍ଣ୍ଣିତ ନିରାକାର ବ୍ରହ୍ମ, ଗୀତାର ବିଶ୍ୱରୂପଧାରୀ ମୁଖ୍ୟ ନାୟକ ଶ୍ରୀକୃଷ୍ଣ, ଜଗତର ପିତା ଶ୍ରୀଜଗନ୍ନାଥ । ତେଣୁ ଜଙ୍ଘାଦେବ ହେଉଛନ୍ତି ଗୋଁଡ଼ ଜାତିର ପରମାତ୍ମା ଏବଂ ଜଙ୍ଘା ଦେବ ସଂସ୍କୃତି ହେଉଛି ଗୋଁଡ଼ ଜାତିର ଆତ୍ମା । ଶ୍ରୀଜଗନ୍ନାଥଙ୍କ ଅମୃତମୟ ଚେତନା ସର୍ବଧର୍ମର ପ୍ରତୀକ, ଗୋଁଡ଼ୱାନା ସଂସ୍କୃତିରେ ଶ୍ରୀଜଗନ୍ନାଥ ମହାପ୍ରଭୁ, ଶ୍ରୀ ଜଙ୍ଘାଂ ବଡ଼ଦେଓ ଭାବରେ ସୁପରିଚିତ ହୋଇଛନ୍ତି । ତେଣୁ ଗୋଁଡ଼ ସମାଜ ଲୋକମାନଙ୍କର ବିଶ୍ୱାସ ଶ୍ରୀକୃଷ୍ଣଙ୍କ କଟିଦେଶ ଠାରୁ ଉପରିଭାଗ ଶ୍ରୀକ୍ଷେତ୍ରରେ ପୂର୍ଣ୍ଣବ୍ରହ୍ମ ଶ୍ରୀଜଗନ୍ନାଥ (ଦାରୁବ୍ରହ୍ମ) ରୂପେ ପୂଜା ପାଉଥିବା ବେଳେ ତାଙ୍କର କଟିଠାରୁ ତଳଭାଗ ଜଙ୍ଘଂ ସଦୃଶ ଜଙ୍ଘାଂ ଦେବତା ଭାବରେ ଦୁଇଗୋଟି ଅଧାଗଢ଼ା କାଷ୍ଠ ବିଗ୍ରହକୁ ନିଜର ଇଷ୍ଟଦେବତା ରୂପେ ଆପଣେଇ ନେଇଛନ୍ତି ।

ସର୍ବଶାସ୍ତ୍ର କହେ ଇଶ୍ୱର ଏକ । ଯୁଗାନୁଯାୟୀ ଏକ ଇଶ୍ୱର ଭିନ୍ନଭିନ୍ନ ରୂପରେ ଧରାବତରଣ କରିଥାନ୍ତି । ଯେତେ ମତ ସେତେ ପଥ–

ଯା ଲୀଳା ଦେବେ ଅଗୋଚର

କେ ବର୍ଣ୍ଣିପାରେ ଲୀଳା ତାର

ଜଙ୍ଘାଂ ଦେବ ହେଉଛନ୍ତି ଭିନ୍ନ ଏକ ରହସ୍ୟମୟ ଦାରୁଦେବତା, ଯାହାକି କୃଷ୍ଣସ୍ତୁ ଭଗବାନ ସ୍ୱୟମ୍' ପୁରାଣ ଯୁଗରୁ ଏହି ଦିବ୍ୟଦାରୁ ଉପାସନାରେ ପରମ ଲୋକ ପ୍ରାପ୍ତି ହୋଇଥାଏ ବୋଲି ବିଶ୍ୱାସ ରହିଛି । ତେଣୁ ଭକ୍ତ ପକ୍ଷରେ ଭକ୍ତର ଭାବ ବିଶୁଦ୍ଧ ପ୍ରେମର ରସାପ୍ଳୁତ ହୋଇଥିବାରୁ ଏ ହେଉଛନ୍ତି ସକଳ ଗୋଁଡ଼ ଜାତି ସମୂହର ବଂଦନୀୟ ପ୍ରାଣର ଠାକୁର ।

''ଶିଆଳୀ ଲଟାରେ ବନ୍ଧା ପ୍ରଭୁ ଜଙ୍ଘାଂଦେବ

ଜଙ୍ଘଂରୂପେ ଦୁଇକାଠ ମଧ୍ୟେ ପ୍ରେମ ଭାବ''

ଜୀବ ସୃଷ୍ଟିର ମୂଳାଧାର ଓ ସକଳ ଶକ୍ତିର ଆଧାର ସୂର୍ଯ୍ୟ, ଓଁକାର ସ୍ୱରୂପ ସୂର୍ଯ୍ୟଙ୍କଠାରୁ ଜୀବଜଗତ ସୃଷ୍ଟି । ରଜଃ, ସତ୍ତ୍ୱ ଓ ତମ ତ୍ରିଗୁଣର ପ୍ରତୀକ ଓ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ପ୍ରତୀକ । ସୂର୍ଯ୍ୟ କିରଣରେ ଜୀବ ଜଗତ ଜୀବନୀ ଶକ୍ତି ଲାଭକରେ । ମନୁଷ୍ୟର ସମସ୍ତ ରୋଗ ବିନାଶ ହୁଏ । ତେଣୁ ମନୁଷ୍ୟମାନେ ପ୍ରତ୍ୟହ ପ୍ରାତଃ କାଳରେ ସ୍ନାନ ପୂର୍ବକ ସୂର୍ଯ୍ୟଙ୍କୁ ଜଳ ଆଂଜୁଳି ଅର୍ପଣ କରି ନମସ୍କାର କରିଥାନ୍ତି, ସୂର୍ଯ୍ୟ ନାରାୟଣଙ୍କର ଶ୍ରେଷ୍ଠପର୍ବ (ପୌଷ ପର୍ବ) ପୌଷମାସ ଶୁକ୍ଳପକ୍ଷ ଦଶମୀ ତିଥିରେ ପାଳନ କରାଯାଏ । ଆଲୋକର ଦେବତା ସୂର୍ଯ୍ୟ ଦେବତାଙ୍କ ପ୍ରତୀକ ସଦୃଶ ଜଙ୍ଘାଂଦେବଙ୍କୁ ପୂଜା ଅର୍ଚ୍ଚନା କରାଯାଏ । ଗୋଁଡ଼ ସମାଜରେ ଶାମ୍ବଦଶମୀ ତିଥିର ମହତ୍ତ୍ୱ ରହିଥିବାରୁ ସେହି ଦିନଟିକୁ ଜଙ୍ଘାଂ ଧାମରେ ପ୍ରଭୁ ଶ୍ରୀ ଜଙ୍ଘାବଡ଼ଦେଓଙ୍କର ବାର୍ଷିକ ମୁଖ୍ୟ ପୂଜା ହିସାବରେ ପୌଷମାସ ଶୁକ୍ଳ ଦଶମୀ ତିଥିରେ ବେଶ ଆଡ଼ମ୍ବର ସହକାରେ ପାଳନ କରାଯାଉଅଛି । ଏହି ତିଥିରେ ପ୍ରଭୁଙ୍କୁ ପୂଜା ଅର୍ଚ୍ଚନା କଲେ ଶରୀର ପୁଣ୍ୟମୟ ଏବଂ ସକଳ ପାପରୁ ମୁକ୍ତି ମିଳେ ବୋଲି ଲୋକମାନଙ୍କ ମନରେ ବିଶ୍ୱାସ ରହିଛି । ସୁନ୍ଦରଗଡ଼ ଜିଲ୍ଲା ମହାବୀର ପର୍ବତର ପାଦଦେଶରେ ଥିବା ଛୋଟ ଗାଁ ଭୋଇପାଲି, ମହାବୀର ପର୍ବତର ପ୍ରାକୃତିକ ପରିବେଶର ମନୋରମ ଶୋଭା ମନକୁ ପବିତ୍ର କରିଦିଏ । ଆଧ୍ୟାତ୍ମିକ ମତରେ ଜଙ୍ଘାଂ ଅର୍ଥ ଦୁଇ ମହାଶକ୍ତିର ସମନ୍ୱିତ ଦାରୁ ବିଗ୍ରହ । ଶିଆଳୀ ଲଟାର ଭାବରେ ଏହି ଦୁଇ ମହାଶକ୍ତି ଛନ୍ଦି ହୋଇ ଏ ସୃଷ୍ଟି ରହସ୍ୟର ପରମେଶ୍ୱରଙ୍କ ମହାଶକ୍ତି ଦ୍ୱୟର ପ୍ରତୀକ

ଭାବରେ ଏକ ଅର୍ଦ୍ଧ ନିର୍ମିତ ବିଗ୍ରହ ରୂପରେ କେଉଁ ଆବହମାନ କାଳରୁ ସେଠାରେ ସ୍ୱୟଂ ପୂଜାପାଇ ଆସୁଛନ୍ତି ।

ପୌଷମାସ ଶୁକ୍ଳଦଶମୀ ତିଥିରେ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ସୂର୍ଯ୍ୟାଲୋକରେ ସୂର୍ଯ୍ୟ ନାରାୟଣଙ୍କ ମୂର୍ତ୍ତି ପୂଜାର ପ୍ରଚଳନ କରାଇଥିବାର ପରମ୍ପରା ଏହି ତିଥିଟି ଶାମ୍ବଦଶମୀ ରୂପେ ପ୍ରଖ୍ୟାତ । ଶାମ୍ବ ପୁରାଣରେ ଉଲେଖ ଅଛି, ଶାମ୍ବ ଭାରତର ପୂର୍ବ ଉପକୂଳରେ ଚନ୍ଦ୍ରଭାଗା ନଦୀ କୂଳରେ ସୂର୍ଯ୍ୟ ଉପାସନା କରି ପିତୃ ଅଭିଶାପଜନିତ ଦୁଃସାଧ୍ୟ କୁଷ୍ଠ ରୋଗରୁ ମୁକ୍ତିଲାଭ କରିଥିଲେ । ସୂର୍ଯ୍ୟଦେବତା ଶାମ୍ବଙ୍କୁ ରୋଗ ମୁକ୍ତିର ବରପ୍ରଦାନ ସହିତ କହିଥିଲେ, ଆଜିଠାରୁ ମର୍ତ୍ତ୍ୟଲୋକରେ ଯେ ମୋ ପୂଜା ଅର୍ଚ୍ଚନା କରିବ ଏବଂ ମନ୍ଦିର ନିର୍ମାଣ କରି କ୍ଷେତ୍ର ସ୍ଥାପନ କରିବ ସେ ସନାତନ ଲୋକପ୍ରାପ୍ତ ହେବ । ସେହି ଦିନଠାରୁ ଶାମ୍ବ ଚନ୍ଦ୍ରଭାଗାତୀରରେ ଗୋଟିଏ ମନ୍ଦିର ନିର୍ମାଣ କରି ସେଥିରେ ସୂର୍ଯ୍ୟନାରାୟଣଙ୍କ ମଣି ବିଗ୍ରହ ପ୍ରତିଷ୍ଠା କରି ସୂର୍ଯ୍ୟ ପୂଜା ବିଧାନ ପ୍ରଚଳନ କରାଇଥିଲେ । ସେହି କିମ୍ବଦନ୍ତୀକୁ ଆଧାର କରି ପୂର୍ବ ପରମ୍ପରା କ୍ରମେ ଶୁକ୍ଳପକ୍ଷ ପୌଷ ଦଶମୀ ଦିନଟି ଶାମ୍ବଦଶମୀ ନାମରେ ପ୍ରସିଦ୍ଧି ଲାଭ କରିଆସିଛି । ତେଣୁ ଗୋଁଡ଼ ସମାଜରେ ଆରାଧ୍ୟ ଦେବତା ପ୍ରଭୁ ଜଙ୍ଘା ଦେବଙ୍କ ନିକଟରେ ଏ ପରମ୍ପରା କେଉଁ ଆବହମାନ କାଳରୁ ପ୍ରଚଳିତ ହୋଇ ଆସୁଥିବାରୁ ଏହି ଶାମ୍ବ ଦଶମୀ ଦିନ ଉପାସଧାରୀ ଭକ୍ତମାନଙ୍କ ଦ୍ୱାରା ସକଳ ନୀତିସାରି ପ୍ରଭୁଙ୍କ ଶ୍ରୀଅଙ୍ଗରେ ଜଡ଼ାତେଲ ଲାଗି ଚନ୍ଦନ ଲେପନ କରାଯାଏ । ଫୁଲମାଳରେ ସୁସଜ୍ଜିତ ବେଶ କରାଯାଏ । ଏକ ନୂଆ ଡାଲାରେ ସମସ୍ତ ପୂଜା ସାମଗ୍ରୀ ପ୍ରଭୁଙ୍କ ନିକଟେ ରଖି ନିଜ ସମ୍ପ୍ରଦାୟର ପୂଜକ (ଦେହୁରୀ)ଙ୍କ ଦ୍ୱାରା ନିର୍ମଳ ହୃଦୟର ଭାବକୁ ପ୍ରକାଶ କରି ସକଳ ସମାଜର ସୁଖ, ଶାନ୍ତି ଓ ନିରୋଗ କାମନା ତଥା ଦୀର୍ଘ ନିରାମୟ ଜୀବନ କାମନା କରି ପ୍ରଥମେ ସୂର୍ଯ୍ୟ ନାରାୟଣଙ୍କୁ ବାଳଧୂପଲାଗି ଦୀପ, ନୈବେଦ୍ୟ ଅର୍ପଣ କରି ପୂଜା ଅର୍ଚ୍ଚନା କରାଯାଏ । ତା'ପରେ ଗୋଁଡ଼ ସମାଜର ଅଗଣିତ ଭାଇଭଉଣୀ ତଥା ଭକ୍ତଗଣଙ୍କ ଶଙ୍ଖ, ହୁଳହୁଳି, ହରିବୋଲ, ଘଣ୍ଟ ଘଣ୍ଟା, କରତାଳ ଧ୍ୱନିରେ ପ୍ରଭୁ ଶ୍ରୀଜଘାଂ ଦେବଙ୍କ ମନ୍ତ୍ର ଉଚ୍ଚାରଣ ପୂର୍ବକ ଦେହୁରୀ ପୂଜାକାର୍ଯ୍ୟ ଆରମ୍ଭ କରିଥାନ୍ତି ।

**ମନ୍ତ୍ର**

ଓଁ ସର୍ବମଙ୍ଗଳ ମାଙ୍ଗଲ୍ୟଃ ବରେଣ୍ୟ ବରଦଂ ଶୁଭଂ

ନମସ୍ତେ ଗୌରୀ ନନ୍ଦନଂ ଲମ୍ବୋଦର କଳେବରଂ

ନମସ୍ତେ ଜଘାଂ ଦେବାୟ ସର୍ବସିଦ୍ଧି ପ୍ରଦାୟ କମ୍

ନମସ୍ତେ ଲିଙ୍ଗାଧିପତି ଚୁଡ଼ାଦେବ ନମୋନମଃ ।

ଓଁ ଅଗ୍ନିକୁ ଭୁଦେବ କିସ୍ୱତ, ଦକ୍ଷିଣେ ମଧୁସୂଦନ, ପଶ୍ଚିମେ ବାୟୁ, ନୈରୁତେ ଗରୁଡ଼ଧ୍ୱଜ, ଐଶାନେ ଶ୍ରୀହରି ମଧ୍ୟେ ଗୋବିନ୍ଦ, ଉର୍ଦ୍ଧ୍ୱରେ ଗିରିଧାରୀ ଅଙ୍ଗନ୍ୟାସ କରିବ, ସପ୍ତତୀର୍ଥର ଜଳ ବଡ଼ ଦେଓ ସ୍ୱାହା ନମଃ ଗନ୍ଧ ନମଃ, ପୁଷ୍ପ ନମଃ, ଦୀପ ନମଃ, ଧୂପ ନମଃ, କର୍ପୂର ଗୁଗୁଲମ ମିଶ୍ରିତଂ ସର୍ବଧୂପ ଦୀପାୟଂ ନୈବେଦ୍ୟ ସମର୍ପୟାମି ସ୍ଥ, ନିରାକାର, ନିରାବିଷ୍ଣୁ, ଅନ୍ତର୍ଯ୍ୟାମୀ, ଚତୁଃର୍ଦ୍ଧା ମୂରତି ପ୍ରଭୁ ଦୁଃଖ ଦୂର କର, ସଂସାର ସୁଖୀ ରଖ ପ୍ରଭୁ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ

ସର୍ବାରିଷ୍ଟ ସୁଶାନ୍ତିର ଭବନ୍ତୁ ।

ପ୍ରଭୁଙ୍କ ନିକଟରେ ବାଲ୍ୟ ଭୋଗ ଲାଗି ମଙ୍ଗଳ ଆଳତୀ ବନ୍ଦାପନା କାର୍ଯ୍ୟ ସରିବା ପରେ ଭକ୍ତମାନଙ୍କୁ ଦର୍ଶନ ଦେବା ପାଇଁ ଠାକୁର ମନ୍ଦିର ବାହାରକୁ ଆସିଥାନ୍ତି । ସବୁ ଧର୍ମ ସବୁ ମତବାଦକୁ ଖଣ୍ଡିଆ ହାତରେ ନିଜ ସହିତ ମିଶାଇ ଦେଇ ପବିତ୍ର ରଥଯାତ୍ରା ଅବସରରେ ଶ୍ରୀମନ୍ଦିର ଛାଡ଼ି ଭକ୍ତଗଣଙ୍କର ଆକୁଳ ପ୍ରାର୍ଥନାରେ ଦୟାର୍ଦ୍ର ଚିତ୍ତ ହୋଇ ପତିତମାନଙ୍କୁ ଉଦ୍ଧାର କରିବା ନିମନ୍ତେ ଧୂଳି ଧୂସରିତ ଜଗନ୍ନାଥ ବଡ଼ ଦାଣ୍ଡକୁ ଓହ୍ଲାଇ ଆସିଲା ପରି ଏହି ଶାମ୍ବ ଦଶମୀ ଦିନ ଜଘାଂ ବଡ଼ଦେଓ ଦୁଇଖଣ୍ଡ କାଠ ସଦୃଶ ଜଙ୍ଘାଧାମରେ ଆବିର୍ଭୁତ ହୋଇଯାଆନ୍ତି । ଭକ୍ତଙ୍କ ଆକୁଳ ନିବେଦନରେ ତରଳି ଯାଏ ତାଙ୍କର ବିଶାଳ ହୃଦୟ । ସେଥିପାଇଁ ଅଗଣିତ ଭକ୍ତଙ୍କ ସହ ତାଙ୍କର ଏହି ଅପୂର୍ବ ମିଳନ । ଯେତେବେଳେ ଝୁଲିଝୁଲି କଳାହାତୀ ପରି ମନ୍ଦିର ଭିତରୁ ବାହାରକୁ ବାହାରି ଶ୍ରଦ୍ଧାଳୁ ଭକ୍ତମାନଙ୍କ କାନ୍ଧରେ ବସି ନାଚ କରନ୍ତି, ଆନନ୍ଦରେ ଅଧିର ହୋଇ ଉଠନ୍ତି ଭକ୍ତଗଣ । ସେହିଦିନ ଭକ୍ତମାନେ ପ୍ରଭୁଙ୍କୁ ବୋହିବାର ସୁଯୋଗ ପାଇଥାନ୍ତି । ଏହା ଅତ୍ୟନ୍ତ କୌତୁହଳପୂର୍ଣ୍ଣ । ପ୍ରଭୁଙ୍କ ଶ୍ରୀଅଙ୍ଗରେ ଲାଗିଥିବା ମୟୂର ଚନ୍ଦ୍ରିକା ସେତେବେଳେ ଦେଖିବାକୁ ଅତି ମନମୁଗ୍ଧକର ହୋଇଥାଏ । ସମସ୍ତଙ୍କ ମନ ଭିତରେ ସୃଷ୍ଟିହୁଏ ଏକ ଅଦ୍ଭୁତ ଆଧ୍ୟାତ୍ମିକ ପରିବେଶ । ଭକ୍ତମାନଙ୍କ ସମୂହ ହରିବୋଲ, ହୁଳହୁଳି, ଶଙ୍ଖ, ଘଣ୍ଟଘଣ୍ଟା, କାହାଳୀ, ଘଣ୍ଟାତାଳରେ ଜୟଜଘାଂ ବଡ଼ଦେଓ ଧ୍ୱନିରେ ପ୍ରକମ୍ପିତ ହୋଇଉଠେ ସମଗ୍ର ଜଘାଂଧାମ । ଧିରେ ଧିରେ ଲୋକାରଣ୍ୟ ହୋଇଉଠେ ଭୋଇପାଲି ଗାଁ । ଓଡ଼ିଶାର କୋଣ, ଅନୁକୋଣରୁ ଏହି ମହୋତ୍ସବକୁ ଅଗଣିତ

ଭାଇଭଉଣୀ ତଥା ଭକ୍ତଗଣ ଛୁଟି ଆସନ୍ତି । ତାଙ୍କୁ ଥରେ ଦେଖିଲେ ମନରୁ ସବୁ ଦୁଃଖ, କଷ୍ଟ, କ୍ଲେଶ, ଆବିଳତା, ହିଂସା ଓ ଦୋଷ ନିମିଷକ ମଧ୍ୟରେ ଅପସରି ଯାଏ । ତାଙ୍କ ଶ୍ରୀଚରଣରେ ଆଶ୍ରିତ ହୋଇ ସମସ୍ତଙ୍କର ଗୋଟିଏ ମାତ୍ର ପ୍ରାର୍ଥନା- ହେ ପ୍ରଭୁ କୃପାକର, ତବ ଅପାର କରୁଣାରୁ ଢାଳିଦିଅ ଆମ ଉପରେ ଟିକିଏ ଅମୃତର ବାରି, ଧନ୍ୟ ହୋଇଯାଉ, ସାର୍ଥକ ହୋଇଯାଉ ଏ ଜନ୍ମ । ଜଘାଂଦେବଙ୍କ ପ୍ରେମରେ ବିମୋହିତ ହୋଇଉଠନ୍ତି ସମସ୍ତ ଭାଇଭଉଣୀମାନେ । ଜଘାଂଦେବଙ୍କୁ ଯିଏ ଥରେ କାନ୍ଧରେ ବୋହିଛି ସେ ତାଙ୍କ ନିର୍ଦ୍ଦେଶରେ ପରିଚାଳିତ ହୋଇ ତାଙ୍କର ମହିମା ଓ ଶକ୍ତି ଭିତରେ ନିଜର ସତ୍ତା ହଜାଇ ଦିଏ । ସତରେ ଭକ୍ତ ଓ ଭଗବାନଙ୍କ ମିଳନର ଏ ଯେଉଁ ବିରଳ ଦୃଶ୍ୟ ନିଜ ଆଖିରେ ନ ଦେଖିଲେ ତାହା ବିଶ୍ୱାସ କରିହୁଏ ନାହିଁ । ପ୍ରଭୁଙ୍କର ଭକ୍ତ ଉପରେ ଆଶୀର୍ବାଦ ଓ ସ୍ନେହ ବାଣ୍ଟିବାର ଏହା ଏକ ନିଆରା ପର୍ବ । ପବିତ୍ର ଧାମରେ ପ୍ରଭୁ ଜଘାଂଦେବଙ୍କ ଦର୍ଶନ କରି ମୁକ୍ତି ପାଇବାର ବିଶ୍ୱାସ ରଖି ଫେରିଥାନ୍ତି ଭକ୍ତମାନେ । ଗୋଁଡ଼ ସମାଜ ପ୍ରକୃତିର ସେବକ । ସେ ବର୍ଷର ବିଭିନ୍ନ ସମୟରେ ପ୍ରକୃତି ପୂଜା କରିଥାଏ । ବର୍ଷର ଶେଷ ସମୟକୁ ବିଦାୟ ଦେଇ ଏବଂ ନୂତନ ବର୍ଷର ଆଗମନକୁ ସମ୍ମାନ ଜଣାଇ ପ୍ରକୃତି କୂଳରେ ନିଜକୁ ହଜାଇ ଦିଏ ଏହି ଶାମ୍ବଦଶମୀ ପର୍ବ ମାଧ୍ୟମରେ । ତେଣୁ ଖାଲି ଓଡ଼ିଶା କାହିଁକି ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ଥିବା ପ୍ରଭୁ ଶ୍ରୀ ଜଘାଂଦେଓଙ୍କ ପୀଠରେ ମଧ୍ୟ ଏହି ଶାମ୍ବଦଶମୀ ପୂଜା ଏବଂ ଗଣମହୋତ୍ସବ ଗୋଁଡ଼ ଜାତି ପାଇଁ ଏକ ଗୌରବମୟ ଐତିହ୍ୟ ପୂର୍ଣ୍ଣ ପର୍ବର ଯାତ୍ରା ରୂପେ ପାଳନ କରାଯାଉଅଛି । ଏହି ପବିତ୍ର ଶାମ୍ବଦଶମୀ ଯାତ୍ରାରେ ଆବାଳ ବୃଦ୍ଧ ବନିତା ନରନାରୀଙ୍କ ପ୍ରତି ପ୍ରାଣରେ ଶୁଭ ସକାଳକୁ ନେଇ ଐକ୍ୟ ସଂହତିର ଅପୂର୍ବ ମିଳନ ଘଟାଇ ସମାଜକୁ କରିଛି ଶୃଙ୍ଖଳିତ । ଜୀବନକୁ କରିଛି ରସମୟ ଓ ସଂସ୍କୃତିକୁ କରିଛି ଋଦ୍ଧିମନ୍ତ । ସମ୍ପ୍ରଦାୟ ମଧ୍ୟରେ ଭ୍ରାତୃତ୍ୱଭାବ ଓ ବନ୍ଧୁତ୍ୱର ଗାରିମାକୁ ଶକ୍ତିଶାଳୀ କରି ଗଢ଼ିବା ଏବଂ ଜଣକୁ ଜଣଙ୍କର ହୃଦୟକୁ ଚିହ୍ନିବାର ମାଧ୍ୟମ ହେଉଛି ଏ ପର୍ବର ଏକ ଲମ୍ବା ଡୋରି ।

**ପ୍ରାର୍ଥନା**

ବନ୍ଦେ ଜଂଗା ବୁଢ଼ା ଦେବଂ ବିଶ୍ୱମୈତ୍ରୀ ବିଧାୟକମ୍
ବନ୍ଦେ ଲିଂଗା ପରମାନନ୍ଦଂ ସର୍ବପାପ ବିହରକମ୍
ବନ୍ଦେ ଗୌରୀ ଶକ୍ତି ମେକଂ ଯୋଗମାୟା ଅଣାକାରମ୍
ବନ୍ଦେ ନିତ୍ୟ ଶୋଭା ଶୁଭଂ ଦାରୁରୂପୀ ନାରାୟଣମ୍ ।



ଘର ନଂ-୨ ଆର.ଏ.-୧୦୭
ରୋଡ଼ ନଂ-୨, ୟୁନିଟ୍-୯
ଭୁବନେଶ୍ୱର